# ଶ୍ରୀମନ୍ଦିର ଲୁଣ୍ଠନର ଇତିହାସ

ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର





# ଶ୍ରୀମନ୍ଦିର ଲୁଣ୍ଠନର ଇତିହାସ




ଲେଖକ :

ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର

ଗବେଷଣା ଅଧିକାରୀ

ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ

ଶ୍ରୀବିହାର, ପୁରୀ - ୩



 ଏସ୍‌ବି ପବ୍ଲିକେଶନ୍‌ସ

ଭରତିଆ ଟାୱାର
ବାଦାମବାଡ଼ି, କଟକ - ୭୫୩ ୦୦୯

ବିନୋଦ ବିହାରୀ
କଟକ - ୭୫୩ ୦୦୨

ଶ୍ରୀମନ୍ଦିର ଲୁଣ୍ଠନର ଇତିହାସ

*ଲେଖକ :*

ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର
ଗବେଷଣା ଅଧିକାରୀ
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ଶ୍ରୀବିହାର, ପୁରୀ-୩

*ପ୍ରକାଶକ :*
ନଳିନୀ କାନ୍ତ ନନ୍ଦ
ଏସ୍‌ବି ପବ୍ଲିକେଶନ୍‌ସ
* ବିନୋଦ ବିହାରୀ, କଟକ - ୭୫୩୦୦୨
* ଭରତିଆ ଟାୱାର, ବାଦାମବାଡ଼ି, କଟକ - ୭୫୩୦୦୯

ପ୍ରଥମ ପ୍ରକାଶ - ୨୦୦୦ ମସିହା

**SRIMANDIRA LUNTHANARA ITIHASA**

*by :*
**Dr. Surendra Kumar Mishra**
Sri Jagannath Sanskruta Viswavidyalaya, Sri Vihar, Puri-3

*Published by :*
**Nalini Kanta Nanda**
**SB PUBLICATIONS**
Binod Behari, Cuttack - 753002
Bharatia Tower, Badambadi, Cuttack - 753009

**1st Edition - 2000**

Printed at - **Shyam Printers**.

**Price Rs. 80.00**
**ISBN 81 7404 O53 6**

ଲେଖକଙ୍କ ପକ୍ଷରୁ......

ଯିଏ ଓଡ଼ିଶାର ଐତିହ୍ୟ-ସଂସ୍କୃତି-କଳା-ଭାସ୍କର୍ଯ୍ୟ ଏବଂ ମହନୀୟ ଉଦାର ଭାବଧାରାକୁ ଜାତୀୟ ଏବଂ ଆନ୍ତର୍ଜାତୀୟ ସ୍ତରରେ ପହଞ୍ଚାଇବା ପାଇଁ ସତତ ଉଦ୍ୟମରତ, କଳାତ୍ମକ ଚଳଚ୍ଚିତ୍ର ମାଧମରେ ଓଡ଼ିଶାକୁ ଏକ ମର୍ଯ୍ୟାଦାଜନକ ସ୍ଥାନରେ ପହଞ୍ଚାଇ ପୁରସ୍କାର ଉପଢ଼ୌକନରେ ଓଡ଼ିଶାକୁ ଗୌରାବାନ୍ୱିତ କରି ଆସିଛନ୍ତି । ସେଇ ଚିନ୍ତାଶୀଳ ସମ୍ଭ୍ରାନ୍ତ ଚଳଚ୍ଚିତ୍ର ନିର୍ଦ୍ଦେଶକ **ଶ୍ରୀଯୁକ୍ତ ଶାନ୍ତନୁ ମିଶ୍ର**ଙ୍କୁ ସସମ୍ମାନ ସମର୍ପିତ ।

''ସୁରେନ୍ଦ୍ର''

## ନିଜ କଥା ........

ସୋମନାଥ ମନ୍ଦିର ସତର ଥର ଲୁଣ୍ଠନ ହେବାର ଇତିହାସ ମାନସିକ ସ୍ତରରେ ଯେଉଁ ଉଦ୍‌ବେଗ ସୃଷ୍ଟି କରିଥିଲା ସେଇ ଉଦ୍‌ବେଗରୁ ଯେ ଉଦ୍‌ଯୋଗର ଅୟମାରମ୍ଭ । ଓଡ଼ିଶା ଇତିହାସରୁ ସୂତ୍ରଧରି ମୋଗଲ ଇତିହାସ ପର୍ଯ୍ୟନ୍ତ ପହଞ୍ଚିଲା ବେଳକୁ ଉତ୍କଣ୍ଠାରେ ଚେତନା ବହୁଧା ବିଭକ୍ତ । ଅଠରଥର ବର୍ବର ଆକ୍ରମଣ ହେଇଛି ଯେ ଜାତିର ମହାର୍ଘ୍ୟ ମୂଲ୍ୟବୋଧ ଉପରେ । କିନ୍ତୁ ପନ୍ଦରଥର ଲୁଣ୍ଠନ ହେଇଛି ମେହନତୀ ମଣିଷର ଐତିହ୍ୟର ଐଶ୍ୱର୍ଯ୍ୟ । ଆଶ୍ଚର୍ଯ୍ୟ ଭାବରେ ବଞ୍ଚିଯାଇଛି ମୌନ ମହାଭୂଖଣ୍ଡର ମୁମୂର୍ଷୁ ମହାଜାତି । ବଞ୍ଚିଯାଇଛି ତାର ମନୋଜ୍ଞ ଶ୍ରୀମନ୍ଦିର । ଭାରତର ପ୍ରସିଦ୍ଧ ମନ୍ଦିର ଭୂଲୁଣ୍ଠିତ ହୋଇ ଯାଇଥିବା ବେଳେ ନତୁବା ମନ୍ଦିରର ସଂଜ୍ଞା ବଦଳି ଯାଇଥିବା ସ୍ଥଳେ ଅଥବା ମନ୍ଦିର ପାଖରେ ମସ୍‌ଜିଦ୍‌ଟିଏ ଗଢ଼ି ଉଠିଥିବା ବେଳେ ନାଁ ଯେ ମନ୍ଦିର ଭୂଲୁଣ୍ଠିତ ହୋଇଛି ନାଁ ସଜ୍ଞା ବଦଳିଛି ନାଁ ଯା ଦାଢ଼ରେ ଗଢ଼ିଉଠିଛି ମସ୍‌ଜିଦ୍ । କାହାପାଇଁ ? ଗଜପତିଙ୍କର ସର୍ବସ୍ୱ ତ୍ୟାଗ, କୂଟନୀତି ଯେଥିପାଇଁ ଯେତିକି ରହିଛି ଓଡ଼ିଆ ପାଇକ ବୀରର ଜୀବନ ଉତ୍ସର୍ଗ ତତୋଧିକ । ସେବାୟତମାନଙ୍କ ଭୂମିକାକୁ କ'ଣ ଆଡ଼େଇ ଦେଇ ହେବ ଯେ ଘଡ଼ିସନ୍ଧି ମୁହୂର୍ତ୍ତରେ ।

ଯାର ଲୁଣ୍ଠିତ ଦ୍ରବ୍ୟ ଅନ୍ୟାନ୍ୟ ମନ୍ଦିରର ଲୁଣ୍ଠିତ ଦ୍ରବ୍ୟଠାରୁ କିଛି କମ୍ ନୁହେଁ । ତାକୁ ତଉଲେଇଲା ବେଳେ ମନରେ ପ୍ରଶ୍ନ ଉଠିଛି ଯେ ଜାତି କ'ଣ ସତରେ ଦରିଦ୍ର ଥିଲା ? ଆକ୍ରମଣ ବେଳେ ଯେ ଜାତିର ଝିଅବୋହୂଙ୍କର ଯେଉଁ ଇଜ୍ଜତ ଲୁଣ୍ଠିତ ହୋଇଛି ତାର ଆକଳନ କଲେ ଆଖି କଣରୁ ଥପ୍ ଥପ୍ ଲୋତକବିନ୍ଦୁ ଝରିପଡ଼ିଛି । ବୁକୁଥରା କୋହ ଉଠିଛି । ଓଠ ଥରିଛି । ଓଠକୁ ଓଠ ଚାପିରଖି ନିଜକୁ ପଚାରିଛି କାହିଁକି ଯେପରି ଘଟଣାବଳୀ ସ୍ୱତନ୍ତ୍ର ରୂପେ ଆମର ଦୃଷ୍ଟି ପଥାରୁଢ଼ ହେଲାପରି ଉପସ୍ଥାପିତ ହୋଇନାହିଁ ?

ଯେମିତି ଏକ ପ୍ରଶ୍ନ ଦିନେ ଧଷେଇ ପଶିଆସି ଦାଢ଼ି ରଖିଥିବା ପତଳା ମଣିଷଟେ ମତେ ପଚାରିଥିଲା ମୋ କାର୍ଯ୍ୟାଳୟ କୋଠରୀରେ । ଅସ୍ତବ୍ୟସ୍ତ ଚୁଡ଼ିଦାର ପଂଜାବୀ । ଟାଆଁସିଆ ଦାଢ଼ି ନିଆଁଭଳି ଜଳୁଥିବା ଦିଟା ଆଖି । କହିଲା ପୁରୀର ଛ' ଜଣଙ୍କୁ ଭେଟିବା ପରେ ଆପଣଙ୍କୁ ପଚାରୁଛି....... । ସେ କିଏ ହୋଇଥିବେ ଜାଣି ପାରୁଛନ୍ତି ଆପଣ ?

ମୁଁ କିଛି ପଚାରିବା ଆଗରୁ ଦୃପ୍ତ କଣ୍ଠରେ ଶୁଭିଲା ମୁଁ ଶାନ୍ତନୁ ମିଶ୍ର... । ବାସ୍ ଆଉ ପରିଚୟ ଦରକାର ହେଲାନି । ମୁଁ କହିଲି ଓଃ ! କଳାତ୍ମକ ଚଳଚ୍ଚିତ୍ର ପଛରେ ଦଉଡୁଥିବା ଶାନ୍ତନୁ ମିଶ୍ର ତ ! ଯିଏ ଗୋଟାକ ପରେ ଗୋଟାଏ ପୁରସ୍କାର ଟାଣି ଆଣିଛନ୍ତି ଓଡ଼ିଶାକୁ...

ଗୋଟାଏ ଜାତିର ଅସ୍ଥିମଜ୍ଜାକୁ ଖୋଜୁଥିବା ପାଗଳ ପଛରେ ମୁଁ ପାଗଳ ହେବା ଆରମ୍ଭ କଲି ଦିନ ନୁହେଁ ରାତି ନୁହେଁ ଦିର୍ଘ ୬୪ ଦିନ । ମତେ ପାଗଳା କରି ବଡ଼ଦାଣ୍ଡରେ ଛାଡ଼ିଦେଇ ସେ ଚାଲିଗଲେ । ମୁଁ ସେଇ ପାଗଳାମିରେ ଦୁଇ ବର୍ଷ ବିତେଇଦେବା ପରେ ପୁଣି ଦିନେ ଆସି

ପଚାରିଲେ କେତେବାଟ ଗଲା । ଯେ ଗ୍ରନ୍ଥର ପାଣ୍ଡୁଲିପି ଦେଖି ନାଚିଗଲେ ବୁଢ଼େ, କୁଣ୍ଢେଇ ପକେଇଲେ । କହିଲେ ସତରେ ଗୋଟେ ଲୁଣ୍ଠନର ଇତିହାସ ହେଇଗଲା ! ମୁଁ କହିଲି ହେଇଗଲା ଯେ ୧୮ଥର ଲୁଣ୍ଠନର ଆଭାସ ମିଳିଲେ ମଧ୍ୟ ଉପାଦାନ ୧୫ ଥରର ପାଇଛି । ସେତିକିରେ ସାରିଦେଲି । ଆଉ ତିନିଥର ପାଇଁ ଉର୍ଦ୍ଦୁ ଇତିହାସ ଘାଣ୍ଟୁଛି । କହିଲେ ଛାପିଦିଅ ଯାକୁ । ଜଗନ୍ନାଥଙ୍କ ଉପରେ ତଥ୍ୟଭିତ୍ତିକ ବଡ଼ ଧାରାବାହିକଟିଏ କରିବା ଜାତୀୟ ଦୂରଦର୍ଶନ ପାଇଁ ।

ଯେ ଅବସରରେ ମୁଁ ତାଙ୍କୁ ଦଣ୍ଡବତ୍ ପ୍ରଣାମ ଜଣାଉଛି । ତାଙ୍କରି ହାତରେ ଯେ ବହିଟିକି ଟେକି ଦେଉଛି । ତାଙ୍କ ମୁଣ୍ଡରେ ମହାପ୍ରଭୁ ସବାର ହେବାର ମୁଁ ଅନୁଭବ କରିଛି । ସେ ମହାପ୍ରଭୁଙ୍କୁ ଟେକି ଦେବେ ଯାକୁ ।

ୟାପରେ ମୋ ପାଗଳାମିରେ ଯିଏ ଇନ୍ଧନ ଦେଇଛନ୍ତି ମୋ ଚେତନାକୁ ଶାଣିତ କରିଛନ୍ତି ସେ ହେଉଛନ୍ତି ମହାନ୍ ଦିଗଦ୍ରଷ୍ଟା ଦାର୍ଶନିକ ଡ଼ଃ କେଶବଚନ୍ଦ୍ର ଦାଶ । ତାଙ୍କୁ ମୋର ପ୍ରଣାମାଂଜଳି । ଶ୍ରୀମନ୍ଦିର ପତ୍ରିକାର ସହ-ସମ୍ପାଦକ ବନ୍ଧୁ ଭାସ୍କର ମିଶ୍ର ଜବରଦସ୍ତ ପ୍ରଥମ ଆକ୍ରମଣକାରୀ ରକ୍ତବାହୁର ପାଣ୍ଡୁଲିପି ନେଇ ଛାପି ନଥିଲେ ଯେ କାମ ଆଉରି ମନ୍ଥର ହେଇଥାନ୍ତା । ତାଙ୍କୁ ମୋର ସହସ୍ର ଧନ୍ୟବାଦ । ୟାର ପ୍ରଚ୍ଛଦ ପଟରେ ଆଉ ଜଣେ ବିନ୍ଧାଣୀ ରହିଗଲେ ଯିଏ କି ପ୍ରକାଶକ ବନ୍ଧୁ ଶ୍ରୀଯୁକ୍ତ ନଳିନୀକାନ୍ତ ନନ୍ଦ ଓ ମୋ ଭିତରେ ସେତୁ ବନ୍ଧଟିଏ ପ୍ରତିଷ୍ଠା କରି ଦିନକୁ ଦୁଇଥର ତାଗିଦ କଲେ ପାଣ୍ଡୁଲିପି ହେଲା ନାଁ ନାହିଁ;- ସେ ହେଉଛନ୍ତି ଅଗ୍ରଜ ରାଜକିଶୋର ମିଶ୍ର । ତାଙ୍କୁ କୃତଜ୍ଞତା ଜଣାଇବାକୁ ମୋର ଭାଷା ନାହିଁ ।

ଆଉ ଯେଉଁମାନଙ୍କୁ ମୁଁ ଯେ ଅବସରରେ କେବେ ବି ଭୁଲିଯାଇ ପାରିବିନାହିଁ ସିଏ ହେଲେ ଶ୍ରୀଜଗନ୍ନାଥ ଚେତନାର ଗବେଷକ, ଶ୍ରୀମନ୍ଦିର ପୁରୋହିତ, ମୋର ଗୁରୁ ପଣ୍ଡିତ ହରିହର ମହାପାତ୍ର, ଅବସରପ୍ରାପ୍ତ ପ୍ରଶାସକ ଶ୍ରୀଯୁକ୍ତ ଜଗବନ୍ଧୁ ପାଢ଼ୀ, ସଂସ୍କୃତ ବିଶ୍ୱବିଦ୍ୟାଳୟ ଗବେଷଣା କେନ୍ଦ୍ରର ନିର୍ଦ୍ଦେଶକ ପ୍ରଫେସର ହରେକୃଷ୍ଣ ଶତପଥୀ, ସହକର୍ମୀ ଡ଼ଃ ରବିଚରଣ ରଥ ଓ ଡ଼ଃ ନିରଂଜନ କର, ସାମ୍ବାଦିକ ବନ୍ଧୁ ଶ୍ରୀ ନାରାୟଣ ଦାଶ, ପ୍ରିୟପତ୍ରର ସଂପାଦକ ଆଡ୍‌ଭୋକେଟ୍ ବିପିନ୍‌ବିହାରୀ ଦଳାଇ ଏବଂ ଶ୍ରୀକ୍ଷେତ୍ର ଲେଖକ ସାମୁଖ୍ୟର ସଂପାଦକ ଅଧ୍ୟାପକ ସୁନୀଲ ରଥ ଏବଂ ବିଶିଷ୍ଟ ଅନୁବାଦକ ଶ୍ରୀଯୁକ୍ତ ଗୌର ଗୋପାଳ ପାଢ଼ୀ ।

ମୁଁ ପ୍ରକୃତିସ୍ଥ ହୋଇନାହିଁ । କାରଣ ମୋର ପାଗଳାମି ସରିନାହିଁ । ଅନେକ ସମ୍ଭାବନାର ଚିତ୍ରପଟ ଦୂରଦିଗ୍‌ବଳୟ ସେପଟେ ମୁଁ ଦେଖିପାରୁଛି । କେବଳ ପାଠକୀୟ ଶ୍ରଦ୍ଧାଟିକେ ଦରକାର । ଏଇ ଶ୍ରଦ୍ଧା ଟିକେ ପାଇବାରେ ମୁଁ ବହୁ କାର୍ପଣ୍ୟ ଅନୁଭବ କରିଛି । କିନ୍ତୁ ଦୁଃଖ କରିବାକୁ ଜଗନ୍ନାଥେ ସମୟ ଦେଇନାହାଁନ୍ତି । ତେବେ ବି ଆପଣମାନଙ୍କ ଠାରୁ ଦୂରେଇ ଯିବାର ସ୍ୱପ୍ନ ମୋର ନାହିଁ ।

ଜୟ ଜଗନ୍ନାଥ !

**ସୁରେନ୍ଦ୍ର କୁମାର ମିଶ୍ର**

# ବିଷୟ ସୂଚୀ

| ବିଷୟ | | ପୃଷ୍ଠା |
|---|---|---|

ବିଷୟ ପୃଷ୍ଠା





## — ପ୍ରଥମ ପରିଚ୍ଛେଦ —

# ଭାରତରେ ମୁସଲମାନ ଶାସନର ଅଭ୍ୟୁଦୟ

୬୩୬ ମସିହାରେ ସର୍ବପ୍ରଥମେ ଆରବ ବେପାରୀ ଏବଂ କିଛି 'ଫକୀର' ଭାରତ ବର୍ଷରେ ପ୍ରବେଶ କରିଥିଲେ । ସେମାନେ ପଶ୍ଚିମ ଭାରତରେ ବେପାର ଆରମ୍ଭ କରିବା ସହିତ ନିଜ ଧର୍ମଦ୍ୱାରା ଲୋକଙ୍କୁ ପ୍ରଭାବିତ କରିବାକୁ ଆରମ୍ଭ କରିଥିଲେ । ଯେ ସବୁ ଘଟିଥିଲା ଗୋଆରେ ।

୭୧୨ ଖ୍ରୀ.ରେ ମହମ୍ମଦ କାସିମ୍ ସିନ୍ଧୁ ପ୍ରଦେଶ ଆକ୍ରମଣ କରି ଜୟଲାଭ କଲାପରେ ମୁସଲମାନମାନଙ୍କର ଦ୍ୱିତୀୟ ରୂପ ଜଣାପଡ଼ିଲା । କିନ୍ତୁ ସେତେବେଳକୁ ଆରବ ବେପାରୀ ଓ ଫକୀରମାନେ ଅନ୍ୟତ୍ର ନିଜର ଆଡ୍‌ଡା ବିସ୍ତାର କରି ସାରିଥିଲେ ।

ଆରବ ଆକ୍ରମଣକାରୀ କେବଳ ଲୁଣ୍ଠନ ଉଦ୍ଦେଶ୍ୟରେ ଭାରତ [illegible]ିଥିଲେ । ସେମାନେ ରାସ୍ତାର ପଡୁଥିବା ଧାର୍ମିକ ସ୍ଥାନଗୁଡ଼ିକୁ ଧ୍ୱସ୍ତ ବିଧ୍ୱସ୍ତ କରିବା ସହିତ ସମ୍ପତ୍ତି ଲୁଣ୍ଠନ କରୁଥିଲେ ।

ଏହିପରି ସିନ୍ଧୁ ପ୍ରାନ୍ତ ଅଷ୍ଟମ ଶତାବ୍ଦୀରେ ପରାଭୂତ ହେଲାପରେ ୯୯୧ ଖ୍ରୀ. ରେ 'ପେଶାୱର' ମୁସଲମାନମାନେ କବଳିତ କରିଥିଲେ । ମହମ୍ମଦ ଗଜନବୀ ୯୯୭-୧୦୩୦ ଖ୍ରୀ. ମଧ୍ୟରେ ପଞ୍ଜାବକୁ ଜୟ କଲେ । ୧୨୭୫ ଖ୍ରୀ. ରେ 'ମୁଲତାନ' ମୁସଲମାନଙ୍କ ଅଧୀନ ହେଲା । ୧୦୨୨ ଖ୍ରୀ. ରେ ସୋମନାଥ ମନ୍ଦିର ଲୁଣ୍ଠନ ହେଲା ।

ଏହି ମନ୍ଦିରକୁ ରକ୍ଷା କରିବା ପାଇଁ ୫୦ ହଜାର ହିନ୍ଦୁ ଶହୀଦ ହୋଇଥିଲେ । ଦୁଇ କୋଟି ଟଙ୍କାର ସମ୍ପତ୍ତି ଲୁଣ୍ଠନ ହୋଇଥିଲା । ୧୧୯୨ରେ ମହମ୍ମଦ୍ ଘୋରୀ ଭାରତ ଉପରେ ପ୍ରଥମ ଆକ୍ରମଣ କରିଥିଲେ । ୧୧୯୩ରେ ଦିଲ୍ଲୀ ସଂପୂର୍ଣ୍ଣ ମୁସଲମାନମାନଙ୍କ କବଳିତ ହେଲା । ତାହାପରେ 'ଅଜମେର' ଏବଂ 'ବିହାର' ଇସଲାମ କବଳିତ ହେଲା । ଅତଏବ ଆମେ ଜାଣିଲେ ସ୍ଥାୟୀ ରୂପରେ ଭାରତ ଶାସନ ଭାଗ୍ୟ ଡ଼ୋର ବିଦେଶୀମାନଙ୍କ ହାତକୁ ପ୍ରଥମେ ୧୧୯୩ଖ୍ରୀ. ରେ ଗଲା । ଏହା ପୂର୍ବରୁ ଆକ୍ରମଣକାରୀମାନେ ଆକ୍ରମଣ କରି ଲୁଣ୍ଠନ କରୁଥିଲେ । ଆଉ ଯେଉଁମାନେ ଭାରତରେ ରହୁଥିଲେ ସେମାନେ ସ୍ଥାୟୀ ଶାସନ କରିପାରୁ ନଥିଲେ ।

ଇତିହାସ କହେ 'ଇସଲାମ' ଶବ୍ଦ ଆରବୀ ଭାଷାର 'ସଲାମ' ପଦରୁ ଆସିଛି । ଯାହାର ସ୍ଥାନ-କାଳ ଓ ବ୍ୟବହାର ବିଶେଷରେ ଅର୍ଥ ହେଲା ଶାନ୍ତି ବା ସମର୍ପଣ । ପ୍ରଭୁସତ୍ତାର ଅଧିକାରୀ ହେବାପରେ ଏହା 'ଶାନ୍ତି' ଅର୍ଥରୁ 'ସମର୍ପଣ' ଅର୍ଥକୁ ବଦଳି ଯିବାର ନଜିର ଦେଖାଯାଏ ଇତିହାସରେ ।

ମହମ୍ମଦ୍ ନିଜ ଜୀବନରେ ୨୪ ଥର ନିଜ ସେନାପତିତ୍ୱରେ ଯୁଦ୍ଧ କରିଥିବା ବେଳେ ୫/୬ ଥର ଅନ୍ୟ ଅଧୀନତାରେ ମଧ୍ୟ ଯୁଦ୍ଧ କରିଥିବାର ଜଣାଯାଏ । ମୋଟ ୧ ଲକ୍ଷ ୧୪ ହଜାର ସ୍ତ୍ରୀ-ପୁରୁଷଙ୍କୁ ସେ ମୁସଲମାନରେ ପରିବର୍ତ୍ତିତ କରିଥିଲେ ତାଙ୍କ ୬୩ ବର୍ଷ ଆୟୁ

କାଳ ମଧ୍ୟରେ । ତାଙ୍କର ଅନ୍ତିମ ତିଥି ଖ୍ରୀ ୬୩୨ । ମହମ୍ମଦଙ୍କ ପରେ ମାତ୍ର ୧୦୦ ବର୍ଷ ମଧ୍ୟରେ ବହୁଦେଶ ମୁସଲମାନ ହୋଇ ସାରିଥିଲେ । ଉଇଲ ଡୁରାଣ୍ଟଙ୍କ ମତରେ ମୁସଲମାନ--ମାନଙ୍କର ଭାରତ ଆକ୍ରମଣ ପୃଥିବୀ ଇତିହାସରେ ସବୁଠାରୁ ବଡ଼ ରକ୍ତରଂଜିତ ଘଟଣା ।

ଭାରତ ଉପରେ ଅନେକବାର ଆକ୍ରମଣ ହୋଇଥିଲେ ମଧ୍ୟ ଧନଲୋଭୀ ମହମ୍ମଦ ଗଜନବୀଙ୍କ ଆକ୍ରମଣ ସବୁଠାରୁ ସେତେବେଳେ ଲୋମହର୍ଷଣକାରୀ ଥିଲା । ସେ ମୋଟ ସତର ଥର ଭାରତ ଆକ୍ରମଣ କରିଥିଲେ । ତାଙ୍କର ଶେଷ ଆକ୍ରମଣ ଥିଲା ୧୦୨୫ ଖ୍ରୀଷ୍ଟାବ୍ଦରେ । ଏହି ଆକ୍ରମଣ କାଳରେ ସେ ସୋମନାଥ ମନ୍ଦିର ଲୁଣ୍ଠନ କରି କୋଟି କୋଟି ଟଙ୍କାର ସମ୍ପତ୍ତି ହସ୍ତଗତ କରିଥିଲେ । ଯେଥିରୁ ଅନୁମାନ କରିହେବ ତତ୍‌କାଳୀନ ଭାରତୀୟ ଶାସକମାନଙ୍କ ମଧ୍ୟରେ କିପରି ଏକତା ନ ଥିଲା ।

ଅଷ୍ଟମ ଶତାବ୍ଦୀଠାରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ମୁସଲମାନମାନେ ଅନୁକୂଳ ପରିସ୍ଥିତି ମନେ କରି ଆକ୍ରମଣ କରି ଚାଲିଥିଲେ । ଏଣେ ଭାରତରେ ଅନ୍ଧବିଶ୍ୱାସ ଏବଂ ଯୁଦ୍ଧରେ ବାରମ୍ବାର ପରାଜୟ ମନୋବଳ ଭାଙ୍ଗିଦେଲା । ସେଥିପାଇଁ ଅନେକ ଐତିହାସିକ ସ୍ୱୀକାର କରୁଛନ୍ତି ଯେ-ସେତେବେଳେ ଭାରତୀୟମାନଙ୍କର ଏହା ମଧ୍ୟ ବିଶ୍ୱାସ ହୋଇ ଯାଇଥିଲା ଯେ ଦେବ-ବିଗ୍ରହମାନେ ନିଜଶକ୍ତି ବଳରେ ମୁସଲମାନମାନଙ୍କୁ ପରାସ୍ତ କରି ପାରିଲେନି, ଓଲଟି ସେମାନଙ୍କ ଆଗରେ ପରାଜିତ ହୋଇଗଲେ । ନଷ୍ଟଭ୍ରଷ୍ଟ ହୋଇଗଲେ । ଅଥଚ ଆମେ କ'ଣ ସେମାନଙ୍କୁ ପରାଜିତ କରିବାରେ ସକ୍ଷମ ହେବୁ !

ସେତେବେଳକୁ ଭାରତୀୟମାନେ ଭୁଲି ସାରିଥିଲେ ବିଗ୍ରହ କେବଳ ଈଶ୍ୱରଙ୍କ ପ୍ରତିବିମ୍ବ । ତାଙ୍କୁ ସ୍ମରଣ ରଖିବାର ଏକ ସାହାରା । ବିଗ୍ରହ ନଷ୍ଟ ହୋଇଯିବାରେ ଈଶ୍ୱରଙ୍କର ଅପମାନ ହୁଏ ନାହିଁ । ଅପମାନ ହୁଏ ବିଗ୍ରହଙ୍କ ପ୍ରତିଷ୍ଠାତାର ଏବଂ ବିଗ୍ରହ ଉପାସକଗଣଙ୍କର ।

ମୂର୍ତ୍ତିପୂଜା ସମ୍ବନ୍ଧରେ ଅନ୍ଧବିଶ୍ୱାସ ଏପରି ସ୍ତରକୁ ଚାଲି ଯାଇଥିଲା ଯେ ମୂର୍ତ୍ତିରେ ଅଲୌକିକ ଚମତ୍କାରୀ ସାମର୍ଥ୍ୟ ରହିଥିବାର ବୁଝିଥିଲେ । ଉଦାହରଣସ୍ୱରୂପ ଦେଖନ୍ତୁ କନୌଜର ପ୍ରତିହାର ସମ୍ରାଟ ମୁଲତାନ ନେବାପାଇଁ ସମର୍ଥ ଥିଲେ, କିନ୍ତୁ ଯେତେଥର ମୁଲତାନ ନେବାପାଇଁ ଯାଇଛନ୍ତି, ସେତେଥର ସେଠାକାର ମୁସଲମାନ ଅଧିକାରୀମାନେ ତାଙ୍କୁ ଧମକ ଦେଲେ ଯେ, ଯଦି ତୁମେ ଅଗ୍ରସର ହେବ ତେବେ ଆମେ ଏଠାରେ ପ୍ରସିଦ୍ଧ ସୂର୍ଯ୍ୟ ବିଗ୍ରହଙ୍କୁ ଭାଙ୍ଗି ଦେବୁ । ପଛେଇ ଆସୁଥିଲେ ପ୍ରତିହାର ସମ୍ରାଟ ।

ମୁସଲମାନ ଆକ୍ରମଣକାରୀମାନେ ଜନସାଧାରଣଙ୍କୁ ଦେଖାଇ ଦେଇଥିଲେ ମନ୍ଦିର ଏବଂ ବିଗ୍ରହମାନଙ୍କ ଉପରେ ସୁନା, ରୁପା, ହୀରା, ନୀଳା, ମୋତି, ମାଣିକ୍ୟ ଚଢ଼େଇବା ପାଗଳାମି ଛଡ଼ା ଅନ୍ୟ କିଛି ନୁହେଁ । ଏହା ଚୋର, ଡାକୁ ଏବଂ ବିଧର୍ମିମାନଙ୍କୁ ଲୁଟି କରି ନେବାପାଇଁ ନିମନ୍ତ୍ରଣ ବ୍ୟତୀତ ଅନ୍ୟ କିଛି ନୁହେଁ । ଯେଉଁଠି ଏହି ସମ୍ପତ୍ତିର ଉପଯୋଗ ରାଜାମାନଙ୍କୁ ସେନାବାହିନୀ ବଢାଇବାରେ, ତତ୍‌କାଳୀନ ଅବସ୍ଥା ଦୃଷ୍ଟିରୁ ଗମନାଗମନର

ସୁବିଧା କରିବା ବ୍ୟବସ୍ଥାରେ ହୋଇ ପାରିଥାନ୍ତା ସେଠି ମନ୍ଦିରରେ ଠୁଳ ହେବା ଦ୍ୱାରା ଦୁଇ ଦିଗରୁ ରାଜ୍ୟର କ୍ଷତି ହେଲା ।

ଏକ - ମନ୍ଦିରର ସମ୍ପତ୍ତିରେ ଆକର୍ଷିତ ହୋଇ ବିଦେଶୀମାନେ ଆକ୍ରମଣ କଲେ । ମନ୍ଦିରକୁ ଧ୍ୱଂସ କରିବା ପାଇଁ ସେମାନଙ୍କର ସାହାସ ବଢ଼ିବା ସଙ୍ଗେ ସଙ୍ଗେ ରାଜ୍ୟଜୟ କରିବାର ସାହାସ ବି ବଢିଲା ଏବଂ କୋଟି କୋଟି ଟଙ୍କା ମୂଲ୍ୟର ସମ୍ପତ୍ତି ବାହାରକୁ ଚାଲିଗଲା ।

ଦୁଇ - ରାଜ୍ୟ ବଳହୀନ-ଲକ୍ଷ୍ମୀହୀନ ହୋଇଗଲା । ଆକ୍ରମଣକାରୀ ପୁନଃ ଆକ୍ରମଣ କରିବା ପାଇଁ ପ୍ରସ୍ତୁତ ହେବାକୁ ଅର୍ଥ ଯୋଗାଡ଼ କରିପାରିଲା । ଫଳରେ ନିର୍ବଳ ରାଜାକୁ ସହଜରେ ପରାହତ କରିପାରିଲା । ରାଜ୍ୟ ବିଦେଶୀ ଆକ୍ରମଣକାରୀଙ୍କ କବଳିତ ହୋଇଗଲା ।

ଏହି ଅବସ୍ଥା କେବଳ ଓଡ଼ିଶାରେ ସୃଷ୍ଟି ହୋଇ ନଥିଲା । ସମଗ୍ର ଭାରତବର୍ଷରେ ଯେ ଅବସ୍ଥା ସମାନ ଥିଲା ସେତେବେଳେ । ମୂର୍ତ୍ତିପୂଜା ବିରୋଧରେ କିଛି କହିବାର ନାହିଁ । ମୂର୍ତ୍ତିପୂଜା ଛାଡ଼ିବାର ଆବଶ୍ୟକତା ନାହିଁ । ଆବଶ୍ୟକତା ହେଉଛି ବିଗ୍ରହରେ ଅଦ୍ଭୁତ ଶକ୍ତି ସମାହିତ ହେବାର ଅନ୍ଧବିଶ୍ୱାସ । ବସ୍ତୁତଃ ଯେ ଅଦ୍ଭୁତ ଶକ୍ତି ବିଗ୍ରହରେ ନାହିଁ ଆମ ଭାବନାରେ ଅଛି । ସେଇଥିପାଇଁ ତ କାହିଁ କେଉଁ କାଳୁ ଲୋକୋକ୍ତି ରହିଛି ''ନିଜ ହାତ ଜଗନ୍ନାଥ'' । ଜଗନ୍ନାଥଙ୍କ ବିଖଣ୍ଡିତ ହାତର ଲୁକ୍କାୟିତ ଦାର୍ଶନିକ ଭାବଧାରା ତ ଏୟା !! ଯେ ବିଗ୍ରହର ନିର୍ମାଣକାରୀ ଯେ କେହି ବି ହେଉ ସେ ତ ଜଣେ ନିଶ୍ଚୟ 'ବିଶ୍ୱକର୍ମା' ହୋଇଥିବେ । ଆଉ ସେହି ବିଶ୍ୱକର୍ମା ନିଶ୍ଚିତ ଜଣେ ଶ୍ରେଷ୍ଠ ଦାର୍ଶନିକ ଥିଲେ ଯେଥିରେ ଦ୍ୱିମତ ହେବାର ନାହିଁ ।

ଯାର ଏକ ଐତିହାସିକ ଉଦାହରଣ ଆପଣମାନେ ଦେଖନ୍ତୁ । ମହମ୍ମଦ ଗଜନବୀ ଯେତେବେଳେ ସୋମନାଥ ମନ୍ଦିର ଆକ୍ରମଣ କରିଥିଲେ, ସେତେବେଳେ ମନ୍ଦିର ପ୍ରାଚୀର ଉପରେ ହିନ୍ଦୁ ସୈନିକମାନେ ଗର୍ବରେ ମହମ୍ମଦଙ୍କ ସେନାବାହିନୀକୁ ତାସଲ୍ୟ କରୁଥିଲେ ।

''ବିଚରା ମୁସଲମାନ ସେନା ଶ୍ରୀସୋମନାଥଙ୍କ ଶକ୍ତି ବିରୁଦ୍ଧରେ ଯୁଦ୍ଧ କରିବେ ? ପାଗଳ ନାଁ କ'ଣ ? ସଂଧ୍ୟା ସମୟରେ ହିନ୍ଦୁ ସୈନ୍ୟଙ୍କ ଏକ ଦୂତ ମହମ୍ମଦଙ୍କ ପାଖକୁ ଯାଇ କହିଲା- ସୋମନାଥ ମହାପ୍ରଭୁ ନିଜ ଶକ୍ତି ବଳରେ ଆପଣଙ୍କୁ ସେନାବାହିନୀ ସହ ଏଠାକୁ ଟାଣି ଆଣିଛନ୍ତି । ଯଦ୍ୱାରା ଆପଣ ସମୂଳେ ଧ୍ୱଂସ ପାଇଯିବେ । ମହମ୍ମଦ ଶୁଣିଲେ । ହସିଦେଲେ ଟିକେ ।

ତା'ପୂର୍ବରୁ ମହମ୍ମଦ ଜାଣିଥିଲେ ମନ୍ଦିରର ପୂଜାରୀ ଘୋଷଣା କରି ସାରିଛନ୍ତି ଯେ, ଦିଲ୍ଲୀ ଏବଂ କନୌଜରେ ପାପଭାର ବଢି ଯାଇଥିଲା । ତେଣୁ ମହାପ୍ରଭୁ ସୋମନାଥ ସେମାନଙ୍କ ଉପରେ କ୍ରୁଧ ଥିଲେ । ସେଥିପାଇଁ ମହମ୍ମଦଙ୍କ ଅତ୍ୟାଚାର ମାଧ୍ୟମରେ ସେମାନଙ୍କୁ ସେମାନଙ୍କ ପାପଫଳ ଭୋଗିବାକୁ ପଡ଼ିଲା । ନଚେତ୍ ତ ଆଖି ପିଛୁଳାକେ ମହମ୍ମଦଙ୍କ ସମେତ ସମସ୍ତ ସୈନ୍ୟଙ୍କୁ ପ୍ରଭୁ ନଷ୍ଟ କରି ସାରନ୍ତେଣି !!!

ମହମ୍ମଦ ଖୁବ୍ ସତର୍କତାର ସହ ଯାକୁ ସବୁ ବିଚାର କରି ସାରିଥିଲେ । ସେ ନିରାପଦ ହୋଇଗଲେ ଯେ ଅସୀମ ଶ୍ରଦ୍ଧା ହିନ୍ଦୁମାନଙ୍କ ଠାରୁ ଆତ୍ମନିର୍ଭରତା ଗୁଣକୁ ଛଡାଇ ନେଇଛି ।

ଭକ୍ତି ଉପରେ ଯେମାନଙ୍କର ଯେତେ ବିଶ୍ୱାସ ଆସିଯାଇଛି ନିଜ ବାହୁବଳ ଉପରେ ସେତିକି ବିଶ୍ୱାସ ନାହିଁ ବୋଲି ଅଟକଳ କରି ନେଇଥିଲେ ମହମ୍ମଦ । 'ନିଜ ରକ୍ଷା ନିଜେ କରିବା' ଚିନ୍ତାଧାରାରୁ ଦୂରେଇ ଯାଇ ହିନ୍ଦୁ ସୈନ୍ୟମାନେ 'ଭଗବାନ ହିଁ ସବୁ କରିବେ, ଆମର କ'ଣ ଚିନ୍ତା' ଏଇ ଚିନ୍ତାଧାରାରେ ସଂପୂର୍ଣ୍ଣ ଜଡ଼ସଡ଼ ହୋଇ ସାରିଥିଲେ ।

ଠିକ୍ ଏଇ ସମୟରେ ଜଣେ ବିଶ୍ୱାସଘାତକ ହିନ୍ଦୁଙ୍କ ଠାରୁ ମହମ୍ମଦ ଜାଣିଲେ ମନ୍ଦିର ଉପରେ ଯେଉଁ ପତାକା ଉଡୁଛି ତାହା ହିନ୍ଦୁମାନଙ୍କ ସାହସକୁ ସମର୍ଥନ କରୁଛି । ଯଦି କୌଣସି ପ୍ରକାରେ ତାକୁ ନୁଆଁଇ ଦିଆଯିବ ତେବେ ଏହା ଦେବତାଙ୍କ ଶାପ ବୋଲି ଜାଣି ହିନ୍ଦୁ ସୈନ୍ୟ ନିରାଶ ହୋଇଯିବେ ଏବଂ ଆପଣଙ୍କ ବିଜୟ ସୁନିଶ୍ଚିତ । ଯେତକ ଶୁଣି ମହମ୍ମଦ ନିଶ୍ଚିତ ହୋଇଗଲେ ଯେ ପୂର୍ବରୁ ସେ ଯେଉଁ ଅନୁମାନ କରିଥିଲେ ତାହା ସତ୍ୟ । ଅନ୍ଧବିଶ୍ୱାସ ହିନ୍ଦୁମାନଙ୍କୁ ଶକ୍ତିହୀନ କରିଦେଇଛି ।

ମହମ୍ମଦ ତାହା ହିଁ କଲେ । ଜଣେ ହିନ୍ଦୁ ଦ୍ୱାରା ହିଁ ଅର୍ଥ ପ୍ରଲୋଭନ ଦେଖାଇ ତାହା କରିଦେଲେ ଠିକ୍ ଯେତେବେଳେ ପ୍ରାଣକୁ ବାଜି ଲଗାଇ ହିନ୍ଦୁସୈନ୍ୟ ଘମାଘୋଟ ଲଢ଼େଇରେ ମଜ୍ଜି ରହିଥିଲେ । ବାସ୍ ହିନ୍ଦୁମାନେ ବୁଝିଗଲେ ଏହା ଦୈବୀ ଇଚ୍ଛା । ସାହସ କମି କମି ଆସିଲା । ପଛଘୁଞ୍ଚା ଦେଲେ । ସୋମନାଥ ମନ୍ଦିର ଲୁଣ୍ଠିତ ହୋଇଗଲା ।

ତାହା ହିଁ ଘଟିଥିଲା ଓଡ଼ିଶାରେ । ଓଡ଼ିଶାରେ ଧର୍ମାନ୍ଧଙ୍କ ଦ୍ୱାରା ଧର୍ମର ପ୍ରସାର ପରେ ଦୁଇଟି କଥା ଅନୁଭୂତ ହେଲା । ରାଜନୀତିକ ଏବଂ ସାମାଜିକ ସନ୍ତୁଳନ । କାରଣ ଏହି ମତବାଦର ବ୍ୟକ୍ତିବିଶେଷ ଅଧିକ ଶାନ୍ତିପ୍ରିୟ ହେବାସହ ଯୁଦ୍ଧ ବିମୁଖ ହୋଇଗଲେ । ଆଉ ରହିଲେ ଶାସକ ବ୍ୟକ୍ତିଗଣ । ରାଜରାଜୁଡ଼ାମାନେ ଅନ୍ଧବିଶ୍ୱାସକୁ ଆଦରି ନେବାପରେ ପଡ଼ୋଶୀ ରାଜାମାନଙ୍କଠାରୁ ପରାଜୟର ପ୍ରତିଶୋଧ ନେବା ପରିବର୍ତ୍ତେ ଭାଗ୍ୟବାଦରେ ବିଶ୍ୱାସ କରି ଈଶ୍ୱରଙ୍କ ଇଚ୍ଛା ଉପରେ ନିର୍ଭର କରି ବସି ରହିଥିଲେ ।

କିନ୍ତୁ ସାଧାରଣ ଲୋକଙ୍କ ଉପରେ ଧର୍ମାନ୍ଧତାର ସାମାଜିକ ପ୍ରଭାବ ରାଜନୀତିକ ପ୍ରଭାବଠାରୁ ବେଶୀ ଥିଲା ।

ଆମର ବିଶ୍ୱାସ କାଞ୍ଚି ଅଭିଯାନ ଗାଥା କିମ୍ବଦନ୍ତୀ ହେଉ କିମ୍ବା ପ୍ରମାଣିକ ହେଉ କିନ୍ତୁ ଏହାର ଚିନ୍ତାନାୟକ ଜଣେ ନିଶ୍ଚିତ ଚିନ୍ତାଶୀଳ ବୁଦ୍ଧିଜୀବୀ ଦିଗଦ୍ରଷ୍ଟା ଥିଲେ । ପ୍ରଭୁ ଯାଉଛନ୍ତି ଆଗରେ ... ବାସ୍ ଏଇ ବିଶ୍ୱାସଟିକକ ହିଁ କାଞ୍ଚି ବିଜୟ ପାଇଁ ଯଥେଷ୍ଟ ଥିଲା ।

ଏଣେ ହିନ୍ଦୁ ସୈନ୍ୟମାନେ ମାନସିକ ଏବଂ ଶାରିରୀକ ଭାବେ ଦୁର୍ବଳ ହୋଇ ଚାଲିଥିବା ବେଳେ ଆକ୍ରମଣକାରୀଙ୍କ ପାଖରେ ଗଭୀର ଆତ୍ମପ୍ରତ୍ୟୟ ବଢ଼ି ଚାଲିଥିଲା । ରହିବା ଏବଂ ଦିଖଣ୍ଡ ରୁଟି ସଂଗ୍ରହ କରିବାର ଅଭିଳାଷରେ ତତ୍‌କାଳୀନ ଆକ୍ରମଣକାରୀମାନେ ବାହାରି ଆସିଥିଲେ । ରାସ୍ତାରେ ଯାହା ମିଳିଲା ତାକୁ ଆଦରି ନେଲେ । ନିଜ ଜାତିର ହିତରେ ନିଜର ହିତ, ଅହିତରେ ନିଜର ଅହିତ । ଯୁଦ୍ଧବେଳେ ସଭିଏଁ ଏକ । ଉପାସନାବେଳେ ବାଦଶାହଠାରୁ ସିପାହୀ ପର୍ଯ୍ୟନ୍ତ ସମସ୍ତେ ଗୋଟିଏ ଧାଡ଼ିରେ ଠିଆ ହୋଇ ନମାଜ ପଢ଼ା । ନାଁ ସେ ସମୟରେ

କେହି ଉଚ୍ଚ କେହି ନୀଚ । ତାତ୍ପର୍ଯ୍ୟ ଏୟା ଯେ ଏହି ଆକ୍ରମଣକାରୀମାନଙ୍କର ଜାତି ଏକ, ଧର୍ମ ଏକ, ସଭ୍ୟତା ଏକ, ଭାଷା ଏକ, ଭୋଜନ ଏକ, ବିଶ୍ୱାସ ଏକ, ସ୍ୱଭାବ ଏକ ଏବଂ ସ୍ୱାର୍ଥ ବି ଏକ । ତେବେ ସେମାନେ ବିଜୟୀ ହେବେ ନାହିଁ ବିଜୟ ହେବ କିଏ ?

ଯେତେବେଳେ ସେମାନେ ଶାସନଗାଦୀକୁ ଆସିଗଲେ ସେମାନେ ଚିନ୍ତାକଲେ ହିନ୍ଦୁମାନେ କିପରି ପଦଦଳିତ ହୋଇ ରହିବେ । ସେଇଥିପାଇଁ ତ ଆଲାଉଦ୍ଦୀନ୍ ଆଶଙ୍କିତ ହୋଇ ପଡ଼ିଥିଲେ ସ୍ୱତନ୍ତ୍ରତା ପ୍ରିୟ ହିନ୍ଦୁମାନଙ୍କ ଭାବନାକୁ ନେଇ । କାଳେ ମୁସଲମାନ ସାମ୍ରାଜ୍ୟକୁ ସେମାନେ ଧ୍ୱଂସ କରିଦେବେ ସେଥିପାଇଁ ସେ ଘୋଷଣା କରିଥିଲେ, ''ହିନ୍ଦୁମାନଙ୍କ ପାଖରେ ସେତିକି ଧନ ରହି ନପାରୁ ଯେତିକିରେ ସେମାନେ ଘୋଡ଼ା ଚଢ଼ି ପାରିବେ । ଭଲ ପିନ୍ଧି ପାରିବେ । ଅସ୍ତ୍ର ରଖି ପାରିବେ କିମ୍ବା ସୁଖରେ ରହି ପାରିବେ । କାରଣ ସେ ବୁଝିଥିଲେ ପେଟ ପୂର୍ଣ୍ଣ ଥିଲେ ମଣିଷ ଅନ୍ୟ କିଛି କାର୍ଯ୍ୟ କରିପାରେ । ପେଟ ନପୂରିଲେ ତ ସେ ଅନ୍ନସଂସ୍ଥାନରେ ବ୍ୟସ୍ତ ରହିବ । ଏତେ କଥାକୁ ତା'ର ବେଳ କାଇଁ ? (ଡ଼ଃ ମହାରାଜ କୁମାର ରଘୁବୀର ସିଂହ କୃତ ପୂର୍ବ ମଧ୍ୟକାଳୀନ ଭାରତ, ପୃ - ୧୫୧)

## ନିୟମିତ ଆକ୍ରମଣ :

ମାହମୁଦ୍ ପଂଜାବ ଆକ୍ରମଣ କରିବା ପୂର୍ବରୁ ଥିଲେ ଆଫଗାନିସ୍ଥାନର୍ 'ଖୋରାସାନ୍' ଅଞ୍ଚଳର ଏକ ରାଜ୍ୟର ଶାସକ । ତାଙ୍କର ରାଜଧାନୀ ଥିଲା ଗଜନିରେ । ଭାରତୀୟ ରାଜା ଜୟପାଳ ମାହମୁଦ୍‌ଙ୍କ ଆକ୍ରମଣକୁ ପ୍ରତିରୋଧ କରିବାକୁ ଯାଇ ପେଶୱାର ନିକଟରେ ଏକ ଯୁଦ୍ଧରେ ପରାଜିତ ହୋଇ ଆତ୍ମହତ୍ୟା କରିଥିଲେ । ଯାଙ୍କ ପରେ ମାହମୁଦ୍ ୧୦୨୬ ଖ୍ରୀ. ପର୍ଯ୍ୟନ୍ତ ନିୟମିତ ଭାବରେ ପ୍ରତିବର୍ଷ ଶୀତ ଋତୁରେ ଭାରତ ଆକ୍ରମଣ କରି ନିଜ ଦେଶକୁ ଫେରି ଯାଉଥିଲେ । ତେବେ ଯେ ସବୁ ଆକ୍ରମଣ କାଳରେ ମାହମୁଦ କରୁଥିଲେ କ'ଣ ? ସେ କେବଳ ନିୟମିତ ଭାବରେ ହିନ୍ଦୁ ମନ୍ଦିରଗୁଡ଼ିକୁ ଧ୍ୱଂସ କରି ଚାଲିଥିଲେ । ବିଭିନ୍ନ ଭାରତୀୟ ମହାରାଜାମାନେ ବଂଶାନୁକ୍ରମିକ ଯେଉଁ ଆମାପ ଐଶ୍ୱର୍ଯ୍ୟରେ ମନ୍ଦିରଗୁଡ଼ିକୁ ଭୂଷିତ କରିଥିଲେ ସେଗୁଡ଼ିକୁ ସୁରୁଖୁରୁରେ ଲୁଣ୍ଠନ କରି ନେଉଥିଲେ । ଲୁଣ୍ଠିତ ଧନରତ୍ନକୁ ଓଟ ପିଠିରେ ଲଦି ଫେରି ଯାଉଥିଲେ । ମାହମୁଦ୍‌ଙ୍କ ଆକ୍ରମଣର ସୀମା ଥିଲା ପଶ୍ଚିମରେ ସୋମନାଥଠାରୁ ଗଙ୍ଗା ଉପତ୍ୟକାର କନୌଜ ପର୍ଯ୍ୟନ୍ତ ।

ଦ୍ୱାଦଶ ଶତାବ୍ଦୀର ସତୁରୀ ଦଶକରେ ଆକ୍ରମଣକାରୀ ଶାସକମାନଙ୍କ ମଧ୍ୟରେ ପରସ୍ପର ଦ୍ୱନ୍ଦର ସୁଯୋଗ ନେଇ 'ଘୁର୍'ର ଛୋଟ ସାମନ୍ତରାଜ୍ୟର ଶାସକମାନେ 'ଗଜନି' ଦଖଲ କରିଥିଲେ । ୧୧୮୬ ଖ୍ରୀ.ରେ ତାଙ୍କର ପୂର୍ବ ପ୍ରଭୁମାନଙ୍କ ରାଜଧାନୀ ଲାହୋର ଦଖଲ କରିଥିଲେ । ଲାହୋର ଦଖଲ କରିଯିବା ପରେ ଭାରତର ଆଭ୍ୟନ୍ତରକୁ ଆଖି ପକାଇବାକୁ ତାଙ୍କୁ ସୁଯୋଗ ମିଳିଗଲା । ଘୁର୍‌ର ତତ୍କାଳୀନ ଶାସକ 'ଭାଇ ମହମ୍ମଦ ଘୋରୀ' ପ୍ରଥମେ ପଂଜାବ ଦଖଲ କରି ପରେ ପୃଥ୍ୱୀରାଜଙ୍କୁ ୨ୟ ବାର ଯୁଦ୍ଧରେ ପରାସ୍ତ କରିଥିଲେ । ଯାଙ୍କରି ଅମଳରେ ଆସ୍ମିରେ ଥିବା 'ଗଡ଼ବା'ର ଧନାଗାର ଲୁଟ ହୋଇଥିଲା ଏବଂ କାଶୀରେ ଏକ-ହଜାର ମନ୍ଦିର ଧ୍ୱଂସ କରା ଯାଇଥିଲା ।

ମହମ୍ମଦ ଘୋରୀ ନିହତ ହେବା ପରେ ତାଙ୍କର ଜଣେ ତୁର୍କୀ କ୍ରୀତଦାସ ଯେ କି ରକ୍ଷୀବାହିନୀର ସେନାନାୟକ ମଧ୍ୟ ଥିଲେ ସେ ହେଉଛନ୍ତି କୁତବ୍‌ଉଦ୍ଦିନ୍ ଆଇବେକ୍ । ସେ ମଧ୍ୟ ଉତ୍ତର ଭାରତରେ ମହମ୍ମଦଙ୍କ ପ୍ରତିନିଧି ଥିଲେ । ସେ (୧୨୦୬ରୁ ୧୨୧୦ ଖ୍ରୀଷ୍ଟାବ୍ଦ) ଘୋରୀ ଶାସିତ ରାଜ୍ୟର ସ୍ୱାଧୀନ ସୁଲତାନ ବୋଲି ଘୋଷଣା କରି ଦିଲ୍ଲୀରେ ରାଜଧାନୀ ପ୍ରତିଷ୍ଠା କରିଥିଲେ । ସେଇଠୁ ଦିଲ୍ଲୀରେ ଜନ୍ମ ନେଲା ସୁଲତାନେଟ୍ ବା ସୁଲତାନମାନଙ୍କ ଶାସନ ।

ଦିଲ୍ଲୀରେ ସୁଲତାନେଟ୍‌ର ପ୍ରତିଷ୍ଠାତା କୁତବ୍‌ଉଦ୍ଦିନ୍ ଆଇବେକ୍ ହେଉଛନ୍ତି ପ୍ରଥମ ଆକ୍ରମଣକାରୀ ଯେ କି ଧର୍ମୀୟ ଅନୁଷ୍ଠାନ ଏବଂ ଧନସମ୍ପତ୍ତି ଉଭୟ ଧ୍ୱଂସ କରିବା ସହିତ ସାହିତ୍ୟ ସଂସ୍କୃତିକୁ ଧ୍ୱଂସ କରିବାର ପ୍ରକ୍ରିୟା ଆରମ୍ଭ କରିଥିଲେ । ସେ ୧୧୯୬ ଖ୍ରୀଷ୍ଟାବ୍ଦରେ ଗୁଜରାଟର ରାଜଧାନୀ ଆକ୍ରମଣ କରିଥିଲେ । ସେଠାରେ ଥିବା ବିଶାଳଦେବଙ୍କ ପ୍ରସିଦ୍ଧ ସଂସ୍କୃତ ମହାବିଦ୍ୟାଳୟକୁ ଧ୍ୱଂସ କରି ତାହାରି ଉପରେ 'ଅଢ଼ାଇ ଦିନ୍‌କା ଝୁମ୍ପଡ଼ା' ନାମକ ଏକ ମସଜିଦ୍ ନିର୍ମାଣ କରିଥିଲେ ।

ୟାଙ୍କ ପରେ ପରେ ଯିଏ ଶାସନ କ୍ଷମତାକୁ ଆସିଥିଲେ ସେ ହେଉଛନ୍ତି, ଶାମସ୍ ଉଦ୍ଦିନ୍ ଇଲ୍‌ତୁତ୍‌ମିଶ୍ । ଯେ ଥିଲେ ରକ୍ଷୀବାହିନୀର ଜଣେ କ୍ରୀତଦାସ । ତେଣୁ ତାଙ୍କ ବଂଶ 'ଦାସ ରାଜ ବଂଶ' ରୂପେ ପ୍ରସିଦ୍ଧ ହେଲା । ଏହାଙ୍କ ଶାସନ ସମୟରେ ଭାରତ ଆକ୍ରମଣ କଲେ ମଙ୍ଗୋଲୀୟ ଆକ୍ରମଣକାରୀମାନେ । ଯେମାନେ ମାଂଚୁରିଆରୁ ବିଜୟ ଅଭିଯାନ ଆରମ୍ଭ କରି ତୁର୍କୀସ୍ଥାନ ପର୍ଯ୍ୟନ୍ତ ସମସ୍ତ 'ମଧ୍ୟ-ଏସିଆ' ଜୟ କରିଗଲେ । ଚେଙ୍ଗିଜ୍ ଖାଁ ଥିଲେ ଦୁର୍ଦ୍ଧର୍ଷ ଆକ୍ରମଣକାରୀ । ନିଷ୍ଠୁରତାର ମୂର୍ତ୍ତିମନ୍ତ ପ୍ରତୀକ । ୧୨୪୧ ଖ୍ରୀଷ୍ଟାବ୍ଦରେ ମଙ୍ଗୋଲମାନେ ଲାହୋର ଅଧିକାର କରିଥିଲେ ।

ଏଣେ ୧୨୪୬ ଖ୍ରୀ.ରେ ଇଲ୍‌ତୁତ୍‌ମିଶ୍‌ଙ୍କ କନିଷ୍ଠ ପୁତ୍ର ନାସିରଉଦ୍ଦିନ୍ ସିଂହାସନରେ ବସିଲେ । ୧୨୬୫ ଖ୍ରୀ.ରେ ତାଙ୍କର ମୃତ୍ୟୁ ପରେ ତାଙ୍କର ଯୋଗ୍ୟ ଅଭିଭାବକ ଗିଆସଉଦ୍ଦିନ୍ ବଲବନ୍ ସିଂହାସନରେ ବସିଥିଲେ । ୟାଙ୍କରି ଅମଳରେ ମଙ୍ଗୋଲମାନେ ଦେଶରୁ ବିତାଡ଼ିତ ହୋଇଥିଲେ । ୧୨୯୦ ଖ୍ରୀ.ରେ ସିଂହାସନାରୁଢ଼ ହେଲେ ଖିଲ୍‌ଜି ବଂଶୀୟ ତୁର୍କୀ ଉପଜାତିର ଜାଲାଲ-ଉଦ୍ଦିନ୍-ଫିରୁଜ୍ । ଜାଲାଲ-ଉଦ୍ଦିନ୍‌ଙ୍କ ଜୋଇଁ ଆଲା-ଉଦ୍ଦିନ୍ ବିଶ୍ୱାସଘାତକତା କରି ଶଶୁରଙ୍କୁ ମାରି ୧୨୯୬ରେ ଦିଲ୍ଲୀର ନୂତନ ସୁଲତାନ୍ ହୋଇଥିଲେ ।

ନିଜର ବିଶାଳ ସୈନ୍ୟବାହିନୀକୁ ପୋଷଣ କରିବାକୁ ୟାଙ୍କ ପାଖରେ ସମ୍ବଳ ନଥିଲା । ତେଣୁ ଦକ୍ଷିଣ ଭାରତ ଲୁଣ୍ଠନ କରି ରାଜକୋଷ ବଢ଼ାଇବାକୁ ସେନାଧ୍ୟକ୍ଷ ମାଲିକକାଫୁର୍‌ଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଫଳରେ ୧୩୦୭ ଖ୍ରୀ.ରେ ଦେବଗିରି ଏବଂ କାକତୀୟ ବଂଶର ରାଜଧାନୀ ଓୟାରଙ୍ଗଲ (ତେଲେଙ୍ଗାନା) ଲୁଣ୍ଠନ କଲେ । ୧୩୧୧ ଖ୍ରୀ.ରେ ଆକ୍ରମଣ କଲେ ହୟସଲ ରାଜ୍ୟର ରାଜଧାନୀ ଦ୍ୱାରସମୁଦ୍ର ଏବଂ ପାଣ୍ଡ୍ୟ ରାଜ୍ୟର ମଦୁରାଇକୁ । ଶେଷରେ ସେ ଆକ୍ରମଣ କରି ପହଞ୍ଚିଥିଲେ କୁମାରୀକା ପର୍ଯ୍ୟନ୍ତ । ଲକ୍ଷ୍ୟ କେବଳ ଲୁଣ୍ଠନ କରିବା ।

ଏଇଠାରୁ ଫେରିଲାବେଳେ ଆଲାଉଦ୍ଦିନ୍‌ଙ୍କ ସେନାବାହିନୀ ଆଣିଥିଲେ ସୁନା, ମଣି, ମୁକ୍ତା ଏବଂ ଅପରିମିତ ଐଶ୍ୱର୍ଯ୍ୟର ଭଣ୍ଡାର । ହଜାର ହଜାର ଘୋଡ଼ା ହାତୀ ମଧ୍ୟ ସେ ଲୁଣ୍ଠନ କରି ଆଣିଥିଲେ ।

ଆଲାଉଦ୍ଦିନ୍‌ଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର କୁତ୍‌ବ୍‌ଉଦ୍ଦିନ୍ (୧୩୧୬-୧୩୨୦ଖ୍ରୀ.) 'ମୁବାରକ ଶାହ' ନାମ ଧାରଣ କରି ସିଂହାସନରେ ବସିଲେ । ଇଏ ବି ଦକ୍ଷିଣ-ଭାରତ ଲୁଣ୍ଠନ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ମୁବାରକ ଶାହଙ୍କ ହତ୍ୟାପରେ ଦିଲ୍ଲୀ ସିଂହାସନରେ ବସିଥିଲେ ପଂଜାବର ଜନୈକ ଶାସକ ଫୌଜଦାର ମାଲିକ ଗାଜୀ । ସେ ଗିୟାସ୍‌ଉଦ୍ଦିନ୍ ତୁଗଲକ୍ (୧୩୨୦-୧୩୨୫) ନାମ ଗ୍ରହଣ କରି ନୂଆ ସୁଲତାନ ବଂଶ 'ତୁଗଲକ ବଂଶ' ପ୍ରତିଷ୍ଠା କରିଥିଲେ । ତାଙ୍କ ପୁତ୍ର ଜୌନା ଖାଁ ଦିଲ୍ଲୀରେ ଭବ୍ୟ ଅଭ୍ୟର୍ଥନା ଆୟୋଜନ କରି ଗିୟାସ୍‌ଉଦ୍ଦିନ୍‌ଙ୍କୁ ମରାଇବା ପରେ (ଆରବୀ ପର୍ଯ୍ୟଟକ ଇବନ୍ ବତୁତାଙ୍କ ଅନୁଯାୟୀ) ମହମ୍ମଦ ବିନ୍ ତୁଗଲକ ନାମ ଧାରଣ କରି ୧୩୨୫ରୁ ୧୩୫୧ଖ୍ରୀ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଯେ ଥିଲେ ଲୋକମୁଖରେ 'ରକ୍ତପିପାସୁ' ତୁଗଲକ ଭାବରେ । ଯାଙ୍କର ସିନ୍ଧୁ ପ୍ରଦେଶରେ ମୃତ୍ୟୁ ହେବା ପରେ ଜଣେ ଜ୍ଞାତିଭାଇକୁ ସିଂହାସନରେ ବସା ଯାଇଥିଲା । ସେ ହେଲେ ଫିରୁଜ୍ ତୁଗଲକ (୧୩୫୧-୧୩୮୮) ବା ଫିରୋଜ ତୋଗଲକ୍ ବା ଫିରୋଜ୍ ଶାହ ତୋଗଲକ ।

ଯେ ଫିରୁଜ୍ ତୁଗଲକ୍‌ଙ୍କ ଅମଳରେ ଦେଶରେ କ୍ରୀତଦାସଙ୍କ ମୋଟସଂଖ୍ୟା ରାଜଗଣତିରେ ଥିଲା ୧ଲକ୍ଷ ୮୦ ହଜାର । ବଲବନ୍‌ଙ୍କର ହାତୀତଳେ ମଣିଷ ଚକଟେଇ ମାରିବା, ଜୀବନ୍ତ ଅବସ୍ଥାରେ ଚମଡ଼ା ଛାଲି ଦେବା, ସମସ୍ତଙ୍କ ଆଗରେ ଶୂଳିରେ ବସେଇ ଦେବା ପରି ବର୍ବରତା ଠାରୁ ଫିରୁଜ୍‌ଙ୍କର କ୍ରୀତଦାସଙ୍କ ଉପରେ ଅତ୍ୟାଚାର କାହିଁ କେତେଗୁଣ ଅଧିକ ଥିଲା ।

ଏହାପରେ ଆସିଛି ଭାରତ ପାଇଁ ଆଉରି ଏକ ବିଡ଼ମ୍ବନାର ସମୟ । ୧୩୯୮ରେ ତୈମୁରଲଙ୍ଗ ଆକ୍ରମଣ କରି ଭାରତୀୟଙ୍କୁ ସନ୍ତ୍ରସ୍ତ କରିଦେବାର ପ୍ରଚେଷ୍ଟା କରିଥିଲେ । ତାଙ୍କର ଇଚ୍ଛା ଥିଲା ଅଗଣିତ ଜନସାଧାରଣଙ୍କୁ ହତ୍ୟାକରି ସେମାନଙ୍କ ଖପୁରିରେ ପ୍ରାସାଦ ନିର୍ମାଣ କରିବାକୁ । ଇଏ ବି ହତ୍ୟାଲୀଳାର ବିଭିଷିକା ମଧ୍ୟରେ ଲୁଣ୍ଠନ କରି ଚାଲିଥିଲେ ରାଜ୍ୟ ପରେ ରାଜ୍ୟ, ଦିଲ୍ଲୀଠାରୁ ଗୁଜୁରାଟ ପର୍ଯ୍ୟନ୍ତ । ସମସ୍ତ ଲୁଣ୍ଠିତ ଦ୍ରବ୍ୟ ଘୋଡ଼ା ଏବଂ ଓଟ ପିଠିରେ ଲଦି ନେଇ ଯାଇଥିଲେ । ଏହା ପରେ ମାଡ଼ି ଆସିଥିଲା ଦୁର୍ଭିକ୍ଷ ଓ ମହାମାରୀ । ଏହାପରେ ଶାସନ କରିଛନ୍ତି 'ସୈୟଦ ବଂଶ' ଓ 'ଲୋଧି ବଂଶ' । ଲୋଧିବଂଶର ଶେଷରାଜା ଇବ୍ରାହିମ୍‌ଙ୍କ ସମୟରେ ଦଳେ ସାମନ୍ତଭୂସ୍ୱାମୀ ତୈମୁରବଂଶୀୟ କାବୁଲର ଶାସକ ବାବରଙ୍କ ଶରଣ ପଶିଲେ । ଇବ୍ରାହିମ୍‌ଙ୍କ ଅତ୍ୟାଚାରରୁ ମୁକ୍ତି ପାଇଁ ସେ ଅନୁରୋଧ କଲେ । ବାବରଙ୍କ ଇଚ୍ଛା ଥିଲା ଐଶ୍ୱର୍ଯ୍ୟ ସମୃଦ୍ଧ ହିନ୍ଦୁସ୍ଥାନକୁ ଆୟତାଧୀନ କରିବାକୁ । ସେ ରାଜି ହେଲେ । ୧୫୨୬ ଖ୍ରୀ.ରେ ପ୍ରଥମ ପାନିପଥ ଯୁଦ୍ଧରେ ଇବ୍ରାହିମ୍ ଲୋଧିଙ୍କୁ ବାବର ପରାଜିତ କଲେ । ଭାରତରେ ସ୍ଥାପନ କଲେ 'ମୋଗଲ ସମ୍ରାଜ୍ୟ' । ଏହି ମୋଗଲ ସାମ୍ରାଜ୍ୟ ଦୁଇଶହ ବର୍ଷ ଧରି କବଳିତ କରି ରଖିଥିଲା ହିନ୍ଦୁସ୍ଥାନର ଇତିହାସକୁ ।

## ଓଡ଼ିଶାରେ ମୁସଲମାନ ଶାସନ :

ଯେ ଥିଲା ଭାରତରେ ମୁସଲମାନ ସାମ୍ରାଜ୍ୟ ପ୍ରତିଷ୍ଠାର ଆଦ୍ୟ କଥନିକା । ତେବେ ଯା ପୂର୍ବରୁ ମୁସଲମାନମାନଙ୍କ ଜୟଯାତ୍ରା ଆରମ୍ଭ ହୋଇ ସାରିଥିଲା । ପ୍ରଥମେ ମୁସଲମାନମାନେ ୟୁରୋପୀୟ ଖ୍ରୀଷ୍ଟିଆନ୍ ରାଜ୍ୟ ଜୟ କରିବାରେ ସକ୍ଷମ ହୋଇଥିଲେ । ମହାଶକ୍ତିଶାଳୀ ଅଟୋମାନ୍ ସାମ୍ରାଜ୍ୟ ସ୍ପେନ୍‌ଠାରୁ ଋଷିଆ ପର୍ଯ୍ୟନ୍ତ ବ୍ୟାପ୍ତ ହୋଇଥିଲା । ସେମାନଙ୍କ ଉନ୍ନତ ଅସ୍ତ୍ରଶସ୍ତ୍ର ପାଖରେ ଖ୍ରୀଷ୍ଟିଆନ ରାଜାମାନେ ହାର ମାନିଥିଲେ । ଏହାର ସୁଯୋଗ ନେଇ ସେମାନେ ପ୍ରଥମେ ବିଜିତ ରାଜ୍ୟଗୁଡ଼ିକୁ ଲୁଣ୍ଠନ କରୁଥିଲେ । ମୁସଲମାନ ଧର୍ମର ପ୍ରଚାର ପ୍ରସାର ଥିଲା ତାଙ୍କର ଦ୍ୱିତୀୟ କାର୍ଯ୍ୟ ।

ମୁସଲମାନମାନେ ସେତେବେଳେ ଥିଲେ ସ୍ଥଳପଥରେ ଅପରାଜେୟ ଶକ୍ତି । ଜଳପଥ ସେମାନଙ୍କ ମୁଣ୍ଡରେ ସେ ପର୍ଯ୍ୟନ୍ତ ପଶିନଥିଲା । ରୋମାନ୍ ସାମ୍ରାଜ୍ୟ ଖଣ୍ଡବିଖଣ୍ଡିତ ହୋଇଯିବା ପରେ ମଧ୍ୟଯୁଗ ପର୍ଯ୍ୟନ୍ତ ସେମାନେ ଦୁର୍ବଳ ରହିଲେ । ମଧ୍ୟଯୁଗର ପରବର୍ତ୍ତୀ କାଳରେ ଖ୍ରୀଷ୍ଟାନ୍‌ମାନେ ଜଳପଥରେ ଆଧିପତ୍ୟ ବିସ୍ତାର ଆରମ୍ଭ କଲେ । ନୌଶକ୍ତିରେ ଖୁବ୍ ବଳବାନ୍ ହୋଇ ପଡ଼ିଲେ । ପୁଣି ଆରମ୍ଭ କଲେ ନୂଆ ନୂଆ ଦେଶକୁ ବାଣିଜ୍ୟ ଯାତ୍ରା । ପ୍ରଚାର କଲେ ଖ୍ରୀଷ୍ଟବାଣୀ ।

ଯେଉଁ ସମୟରେ ମୁସଲମାନ ଓ ଖ୍ରୀଷ୍ଟାନ୍‌ମାନେ ଗୋଟିକ ପରେ ଗୋଟିଏ ରାଜ୍ୟ ଜୟ କରି ନିଜ ଧର୍ମର ଉତ୍କର୍ଷ ପ୍ରମାଣ କରିବାରେ ଲାଗି ପଡ଼ିଥିଲେ ସେହି ସମୟରେ ଭାରତର ଭାଗ୍ୟାକାଶରେ ଘୋଟି ଆସିଥିଲା କଳାବାଦଲ । ହିନ୍ଦୁରାଜାମାନେ ନିଜ ନିଜ ଭିତରେ ଖୁବ୍ ଲଢ଼େଇରେ ମଜ୍ଜି ରହିଥିଲେ । ଦେଶର ରାଜନୀତିକ ଏକତା ଧୂଳିସାତ୍ ହୋଇ ଯାଇଥିଲା । ଏହି ଦୁର୍ବଳତା ହିଁ ଭାରତକୁ ସଂକଟ ମଧ୍ୟକୁ ଟାଣିନେଲା । ଯାର ସୁଯୋଗ ନେଲେ ମୁସଲମାନମାନେ । ମୁସଲମାନ ଆକ୍ରମଣକାରୀମାନେ ଖୁବ୍ ସହଜରେ ତରବାରୀ ସାହାଯ୍ୟରେ ହିନ୍ଦୁ ରାଜାମାନଙ୍କୁ ପରାସ୍ତ କରି ପ୍ରଥମେ ଯେ ସମଗ୍ର ଆର୍ଯ୍ୟାବର୍ତ୍ତକୁ ପର୍ଯ୍ୟାୟକ୍ରମେ ଲୁଣ୍ଠନ କରି ନିଜ ଦେଶକୁ ବାହୁଡ଼ି ଯାଉଥିଲେ । କିନ୍ତୁ ପରେ ସେମାନେ ଭାରତରେ ସାମ୍ରାଜ୍ୟ ବିସ୍ତାର କରିବାକୁ ଭୁଲି ନଥିଲେ ।

ସ୍ଥଳପଥରେ ତଟ୍ଟୁଘୋଡ଼ା ଚଢ଼ି ତୋପ କମାଣଧାରୀ ମୁସଲମାନ ଆକ୍ରମଣକାରୀମାନେ ଆସି ଶହ ଶହ ବର୍ଷ ଧରି ଆମକୁ ଲୁଣ୍ଠନ କରିବା ସହ ଶାସନ କଲେ ।

ମହମ୍ମଦ ଘୋରୀଙ୍କ ସମୟରେ ମୁସଲମାନମାନେ ପ୍ରଥମେ ଓଡ଼ିଶା ବିଶେଷତଃ ଶ୍ରୀଜଗନ୍ନାଥ ମନ୍ଦିର ଉପରେ ଆଖି ପକାଇଥିଲେ । ସେତେବେଳେ ଅନଙ୍ଗଭୀମ ଦେବଙ୍କ ରାଜତ୍ୱ କାଳ । ଓଡ଼ିଶାର ରାଜାମାନେ ନିଜ ବାହୁବଳରେ ସଂଘବଦ୍ଧ ଭାବରେ ମୁସଲମାନମାନଙ୍କୁ ଓଡ଼ିଶାରେ ପ୍ରବେଶ କରାଇ ଦେଇ ନଥିଲେ ।

ଅନଙ୍ଗଭୀମ ଦେବ ପରିଣତ ବୟସରେ ରାଜ୍ୟଭାର (୧୧୯୦-୧୧୯୮) ଗ୍ରହଣ କରିଥିଲେ । ସେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ । ସେ ଯେପରି ଧର୍ମପ୍ରାଣ ଓ ନୈଷ୍ଠିକ

ଥିଲେ ସେହିପରି ବୀର ଓ ରଣକୌଶଳୀ ଥିଲେ । ତାଙ୍କର ରାଜନୈତିକ ଦୂରଦୃଷ୍ଟି ହେତୁ ବହୁଚେଷ୍ଟା କରି ସୁଦ୍ଧା ବିଧର୍ମୀ ମୁସଲମାନମାନେ ଜଗନ୍ନାଥ ମନ୍ଦିର ଅଧିକାର କରିବାକୁ ସମର୍ଥ ହୋଇ ନଥିଲେ ।

ତାଙ୍କ ରାଜତ୍ୱ କାଳରେ ଉତ୍ତର ଭାରତରେ ଘୋର ବିପ୍ଲବ ଦେଖା ଦେଇଥିଲା । ମହମ୍ମଦ ଘୋରୀଙ୍କ ଅତ୍ୟାଚାରରୁ ବହୁ ରାଜ୍ୟ ଓ ଜନପଦ ଧ୍ୱଂସ ହୋଇଥିଲା । ତେଣୁ ସୀମାନ୍ତ ଅଞ୍ଚଳରେ ସୈନ୍ୟମାନଙ୍କୁ ରଖାଇ ସେଥିର ଦୃଢ଼ତା ସମ୍ପାଦନ କରିବା ନିତାନ୍ତ ଆବଶ୍ୟକ ବୋଲି ଅନଙ୍ଗଭୀମ ଦେବ ଉତ୍ତର-ପୂର୍ବାଞ୍ଚଳରେ ୩୮ ଗଡ଼ଜାତ ରାଜାଙ୍କୁ ରଖାଇ ରାଜ୍ୟର ନିରପତ୍ତା ବ୍ୟବସ୍ଥାକୁ ଦୃଢ଼ କରିଥିଲେ । ନିଘଞ୍ଚ ଜଙ୍ଗଲର ପ୍ରସାରଣ ହେତୁ ଶତ୍ରୁସୈନ୍ୟ ସେହି ପଥରେ ଓଡ଼ିଶାର ଉପକୂଳ ଅଞ୍ଚଳକୁ ଆସିବା ସମ୍ଭବ ନଥିଲା । (ଓଡ଼ିଶାର ସାଂସ୍କୃତିକ ଇତିହାସ-୪ର୍ଥ ଖଣ୍ଡ, ପୃ-୧୭-୧୮)

ତେଣୁ ଆକ୍ରମଣକାରୀମାନେ ନଦୀପଥରେ ଆସିବାକୁ ଉଚିତ୍ ମନେ କରୁଥିଲେ ଯାହାକି ପାର୍ସୀ ଐତିହାସିକମାନେ ଲେଖିଛନ୍ତି ।

ମହମ୍ମଦ ଘୋରୀ ଭାରତର ଶେଷ ସ୍ୱାଧୀନ ରାଜା ପୃଥ୍ୱୀରାଜଙ୍କୁ ନିହତ କରିବା ପରେ ଭାରତର ସିଂହାସନ ଘୋରୀ ରାଜବଂଶର ହସ୍ତଗତ ହେଲା । ଯାହା ଫଳରେ ଉତ୍ତର ଭାରତରେ ପ୍ରତିଷ୍ଠିତ ଅସଂଖ୍ୟ ହିନ୍ଦୁ ମନ୍ଦିର ଧ୍ୱଂସ ହେଲା । ଓଡ଼ିଶାରେ ଗଙ୍ଗ ଗଜପତି ରାଜାମାନଙ୍କ ବାହୁବଳରୁ ଶ୍ରୀଜଗନ୍ନାଥଙ୍କ ମନ୍ଦିର ବିଧର୍ମୀଙ୍କ ଦ୍ୱାରା ନଷ୍ଟ ହୋଇ ନଥିଲା ।

୧୨୦୫ ଖ୍ରୀଷ୍ଟାବ୍ଦ ପାଖାପାଖି ବକ୍ତିଆର ଖିଲିଜ ଚେଷ୍ଟା କରିଥିଲେ କିପରି ଓଡ଼ିଶାର ଜଗନ୍ନାଥ ମନ୍ଦିର ଲୁଟପାଟ କରି ସେଠାରୁ ଧନସମ୍ପତ୍ତି ଆତ୍ମସାତ୍ କରିବେ । କିନ୍ତୁ ଅନଙ୍ଗଭୀମ ଦେବଙ୍କ ୩ୟ ପୁତ୍ର ରାଜରାଜ ଦେବ (୧୧୧୮)ଙ୍କ ରାଜନୈତିକ ଦୂରଦର୍ଶିତା ହେତୁ ତାହା ଫଳବତୀ ହେଲା ନାହିଁ । ମୁସଲମାନମାନଙ୍କ ସହିତ ତାଙ୍କର ଘନ ଘନ ଯୁଦ୍ଧ ହୋଇଥିଲେ ସୁଦ୍ଧା ସେ ଯୁଦ୍ଧରେ ପରାଜିତ ହୋଇନଥିଲେ ।

ମହାସିରାଜ ମୀନାଦାସ ସିରାଜଙ୍କ ଲିଖିତ 'ତବାକଦ୍ ନାସରି' ଗ୍ରନ୍ଥରୁ ଜଣାପଡୁଛି, ଏହାପରେ ୧୨୪୩ ଖ୍ରୀ.ରେ କଟାସିନ୍ଠାରେ ମୁସଲମାନ ସୈନ୍ୟଙ୍କୁ ପରାସ୍ତ କରି ବଙ୍ଗଳାର ଲକ୍ଷ୍ମଣାବତୀ ଆକ୍ରମଣ କଲେ । ସେଠାରୁ ବଙ୍ଗ ନବାବ ତୁହ୍ମାନ ଖାଁ ପ୍ରାଣରକ୍ଷା କରିବାକୁ ଅନ୍ୟତ୍ର ପଳାୟନ କଲେ । ଦିଲ୍ଲୀର ସୁଲତାନ ଆଲ୍ଲାଉଦ୍ଦିନ୍ ଅଯୋଧାର ଶାସନକର୍ତ୍ତାଙ୍କୁ ଆଦେଶ ଦେଲେ ଓଡ଼ିଶାର ସୈନ୍ୟମାନଙ୍କୁ ବଙ୍ଗଳାରୁ ବିତାଡ଼ିତ କର । ପରବର୍ଷ ୧୨୪୪ରେ ନରସିଂହ ଦେବ ମଧ ବିପୁଳ ସୈନ୍ୟ ନେଇ ଗୌଡ଼ରାଜ୍ୟର ରାଜଧାନୀ ଘେରାଉ କରି ଅଯୋଧାର ନବାବଙ୍କୁ ପରାଜିତ କରିଥିଲେ ।

ମୁସଲମାନମାନେ ହିନ୍ଦୁ ମନ୍ଦିର ଧ୍ୱଂସ କରି ଯେଉଁ ପ୍ରଚୁର ଧନରତ୍ନ ସେଠାରେ ରଖିଥିଲେ ତାହା ନରସିଂହ ଦେବଙ୍କ ହସ୍ତଗତ ହେଲା ।

ବଙ୍ଗର ମୁସଲମାନମାନଙ୍କ ସଙ୍ଗେ ନରସିଂହ ଦେବଙ୍କର ଏକାଧିବାର ଯୁଦ୍ଧ ହୋଇଥିଲା । ସେ ଅଞ୍ଚଳରେ ରାଢ଼ ଓ ବରେନ୍ଦ୍ରରେ ରହିଥିବା ଯବନ ସେନାମାନଙ୍କୁ ବହୁ ସଂଖ୍ୟାରେ ନିହତ କରିଥିଲେ । (ଦ୍ରଷ୍ଟବ୍ୟ ଗଂଗଙ୍ଗା ପ୍ରଶସ୍ତି-ରାଢ଼ାବରେନ୍ଦ୍ର ଯବନୀ ନୟନାଞ୍ଜନାଶ୍ରୁ ପୂରେଣ ଦୂରବିନିବେଶିତକାଳିମାଶ୍ରୀଃ.....)

ମୁସଲମାନମାନଙ୍କ ଅତ୍ୟାଚାର ହେତୁ ହିନ୍ଦୁଧର୍ମର ସୁରକ୍ଷା ନିମନ୍ତେ ଏବଂ ଶ୍ରୀଜଗନ୍ନାଥ ମନ୍ଦିରକୁ ନିରାପଦ କରିବା ପାଇଁ ଚନ୍ଦ୍ରଭାଗା ନଦୀ ମୁହାଁଣରେ ବହୁ ସୈନ୍ୟଙ୍କୁ ସୀମାନ୍ତରକ୍ଷୀ ରୂପେ ରଖା ଯାଇଥିଲା । (ଓଡ଼ିଶାର ସାଂସ୍କୃତିକ ଇତିହାସ, ୪ର୍ଥ ଖଣ୍ଡ, ପୃ-୨୫)

ଯାହି ପରେ ପରେ ହିଁ ଧର୍ମଗତ ସାମ୍ରାଜ୍ୟର ପ୍ରତିଷ୍ଠା ଯୋଗୁଁ ଜଗନ୍ନାଥ ନିଜେ ରାଜା ହେଲେ ଓଡ୍ର ଭୂଖଣ୍ଡରେ । ରାଜା ନାମକୁ ମାତ୍ର ରହି ଜଗନ୍ନାଥଙ୍କ ନାମରେ ରାଜ୍ୟ ଶାସନ କଲେ । ଓଡ୍ର ଭୂଖଣ୍ଡ ହେଲା 'ଜଗନ୍ନାଥ ଦେଶ' ।

ଜଗନ୍ନାଥ ଦେଶର ରାଜା ଯେହେତୁ ଜଗନ୍ନାଥ ସେହେତୁ ସୈନିକମାନେ ଗଙ୍ଗବଂଶ କାଳରେ ଗଙ୍ଗବଂଶ ପାଇଁ ନୁହେଁ ଜଗନ୍ନାଥଙ୍କ ପାଇଁ ଯୁଦ୍ଧ କ୍ଷେତ୍ରରେ ଲଢୁଥିଲେ । ଯେପରିକି ''ରାଜାଙ୍କୁ ଠକିବା ଅର୍ଥ ଜଗନ୍ନାଥଙ୍କୁ ଠକିବା'' । ଯେପରି ଅର୍ଥ ହିଁ ଗୃହୀତ ହେଉଥିଲା ।

ଗଙ୍ଗବଂଶରେ ପରବର୍ତ୍ତୀ ବଂଶଧରମାନେ ଯାକୁ ଆଉପାଦେ ଆଗେଇ ନେଲେ । କାଂଚୀ ଅଭିଯାନ (ଦ୍ୱିତୀୟଥର)ରେ ଜଗନ୍ନାଥ ଭଲବଦ୍ରଙ୍କୁ କଳାଘୋଡ଼ା ଓ ଧଳାଘୋଡ଼ାରେ ଚଢ଼ାଇ ଯୁଦ୍ଧକ୍ଷେତ୍ରକୁ ଟାଣି ନେଇଥିଲେ । ଯାର ଅର୍ଥ ଏୟା ଯେ ''ଜଗନ୍ନାଥ, ବଳଭଦ୍ର ଆମ ସହିତ ଅଛନ୍ତି'' । କେବଳ ଯେତିକି ହିଁ ସେନାବାହିନୀର ବିଜୟ ପାଇଁ ଯଥେଷ୍ଟ ଥିଲା ।

ଯେ ବିଶ୍ୱାସକୁ ଜନମାନସରେ ବଂଚାଇ ରଖିବା ପାଇଁ ହିଁ ''ଛେରାପହଁରା''ର ସୃଷ୍ଟି ।

## ଗଣଦେବତା ଜଗନ୍ନାଥ :

ପ୍ରାଚୀନ ଓଡ଼ିଆ ଗ୍ରନ୍ଥମାନଙ୍କ ମଧ୍ୟରେ ସାରଳାଦାସଙ୍କ ମହାଭାରତର ବନପର୍ବ ଓ ମୂଷଳୀପର୍ବରେ ଜଗନ୍ନାଥଙ୍କ ଚରିତ ବର୍ଣ୍ଣିତ ହୋଇଛି । ସାରଳାଦାସଙ୍କ ପୂର୍ବରୁ ଆଉ କେହି ଓଡିଆ କବି ଜଗନ୍ନାଥ ଚରିତ ଲେଖି ନଥିଲେ । ସାରଳାଦାସଙ୍କ ପରବର୍ତ୍ତୀ କବି ବଳରାମ ଦାସ 'ଦେଉଳତୋଳା'ରେ ଜଗନ୍ନାଥଙ୍କ ବିଷୟରେ ବର୍ଣ୍ଣନା କରିଛନ୍ତି । ଯେଥିରେ ସାରଳାଦାସଙ୍କ ପ୍ରଭାବ ପରିଲକ୍ଷିତ ।

ଜଗନ୍ନାଥ ହିଁ କୃଷ୍ଣ ଏହା ଓଡ଼ିଆ କବିମାନଙ୍କର ନିଜସ୍ୱ ନୂତନ ମତ । ଶ୍ରୀକୃଷ୍ଣଙ୍କ ଶରୀର ତ୍ୟାଗ ପରେ ଜଗନ୍ନାଥଙ୍କ ଆବିର୍ଭାବ ହୋଇଛି ଏହା ଓଡ଼ିଆ କବି ହିଁ ପ୍ରଥମେ ଲେଖିଛନ୍ତି । ଯଦି ଏହି ସିଦ୍ଧାନ୍ତ ସଂସ୍କୃତ ଶାସ୍ତ୍ର ପୁରାଣରେ ସେହି ସମୟରେ ଲିଖିତ ହୋଇଥାନ୍ତା ତେବେ ଖୁବ୍ କମ୍ ଦିନରେ ପଶ୍ଚିମ ଭାରତ ସମେତ ସମଗ୍ର ଭାରତରେ ଜଗନ୍ନାଥ ଗଣଦେବତାରେ ପରିଣତ ହୋଇଥାନ୍ତେ । ଓଡ଼ିଶାରେ ଗଣଦେବତା ରୂପେ ଜଗନ୍ନାଥ ପରିଣତ ହେବାରେ ଓଡ଼ିଆ କବିଙ୍କର ଏହି ମତ ଯେ ଖୁବ୍ ସାହାଯ୍ୟ କରିଥିବ ଏଥିରେ ସନ୍ଦେହ ନାହିଁ । ଶ୍ରୀକୃଷ୍ଣ ପରିପନ୍ଥୀ

ଏବଂ ରାଧାଭାବକୁ ନେଇ ଦ୍ୱୈତବାଦୀମାନେ ଜଗନ୍ନାଥଙ୍କୁ କୃଷ୍ଣ ରୂପରେ ଗ୍ରହଣ କରି ନେଇଥିବେ ।

କୃଷ୍ଣଙ୍କ ଲୀଳା ସହିତ ଜଗନ୍ନାଥ କ୍ଷେତ୍ରର କୌଣସି ସଂପର୍କ ଥିବା ସଂସ୍କୃତ ଗ୍ରନ୍ଥମାନଙ୍କରୁ ଜଣା ପଡ଼ିନାହିଁ । କୃଷ୍ଣଙ୍କ ଲୀଳାସ୍ଥଳ ବୃନ୍ଦାବନ, ମଥୁରା, ଦ୍ୱାରକା । ମାତ୍ର ପୁରୁଷୋତ୍ତମ କ୍ଷେତ୍ର ଥିଲା ବୋଲି ପ୍ରମାଣ ମିଳୁନାହିଁ । ମହାଭାରତରେ କଳିଙ୍ଗ ରାଜା ଓ କଳିଙ୍ଗର ତୀର୍ଥ କ୍ଷେତ୍ର କଥା ଆସୁଛି ସତ୍ୟ ମାତ୍ର କଳିଙ୍ଗ ତୀର୍ଥ କ୍ଷେତ୍ରରେ ଶ୍ରୀକୃଷ୍ଣଙ୍କର କୌଣସି ଲୀଳା ବୃନ୍ଦାବନ, ମଥୁରା ବା ଦ୍ୱାରକା ପରି ନଥିଲା ।

ଯେଉଁ କେତେଗୁଡ଼ିଏ ଓଡିଆ କାବ୍ୟ ଗ୍ରନ୍ଥରେ ଓ ପୁରାଣମାନଙ୍କରେ ଶ୍ରୀକୃଷ୍ଣଙ୍କର ଅପୋଡ଼ା ଶରୀରର ଅଂଶ ପୂଜା ପାଉଛି ବୋଲି ଉଲ୍ଲେଖ ରହିଛି ତାହାର ଐତିହାସିକ ସତ୍ୟତା ସନ୍ଦେହଜନକ । ଏହା ଅନୁମାନ ଭିତ୍ତିକ କିମ୍ବା ଭାବଭକ୍ତି ମୂଳକ ହୋଇପାରେ । ଶ୍ରୀକୃଷ୍ଣଙ୍କ ଶରୀର ତ୍ୟାଗ ପରେ ଜଗନ୍ନାଥଙ୍କ ଆବିର୍ଭାବ ହୋଇଛି ଏହି ମତ ସଂସ୍କୃତ ପୁରାଣମାନଙ୍କରେ ନାହିଁ ସତ୍ୟ, ମାତ୍ର ନୀଳମାଧବଙ୍କ ଅନ୍ତର୍ଦ୍ଧାନ ପରେ ପୁନଃ ସେ ଶ୍ରୀକୃଷ୍ଣ ରୂପରେ ଏହି କ୍ଷେତ୍ରରେ ଆବିର୍ଭୂତ ହେଲେ ଏହା ବର୍ଣ୍ଣିତ ହୋଇଛି । ନୀଳମାଧବ ଥିଲେ ବିଷ୍ଣୁ । ବିଷ୍ଣୁଙ୍କ ଅନ୍ତର୍ଦ୍ଧାନ ଓ ବିଷ୍ଣୁ (ଶ୍ରୀକୃଷ୍ଣ)ଙ୍କ ଆବିର୍ଭାବ ହେଲା । ଏହା ସ୍କନ୍ଦପୁରାଣରେ ବର୍ଣ୍ଣିତ ହୋଇଛି ।

(ଉତ୍କଳଖଣ୍ଡ- ୧୯/୩୬-୩୭)

ବେଷ୍ଟନଂ ମୋଚୟାମାସ ମହାବେଦ୍ୟା ନୃପୋତ୍ତମଃ ।
ଦଦୃଶୁସ୍ତେ ତଦା ସର୍ବେ ରତ୍ନସିଂହାସନସ୍ଥିତମ୍ ।।
ରାମଂ କୃଷ୍ଣଂ ସୁଭଦ୍ରାଞ୍ଚ ବାସୁଦେବଂ ସୁଦର୍ଶନମ୍ ।
ଯଥୋପଦିଷ୍ଟ-ଲେପାଦି-ସଂସ୍କାରୈଃ ରୁଚିରାକୃତିମ୍ ।।

ବ୍ରହ୍ମପୁରାଣରେ ଜଗନ୍ନାଥଙ୍କୁ କୃଷ୍ଣ ରୂପରେ କଳ୍ପନା କରାଯାଇଛି (୪୬ ଅଧ୍ୟାୟ)

ଉତ୍କଳର ପଞ୍ଚସଖା ବୈଷ୍ଣବମାନଙ୍କ ମତରେ ଜଗନ୍ନାଥ ହିଁ ପୂର୍ଣ୍ଣ ଭଗବାନ ପୁରୁଷୋତ୍ତମ । ସେ ଅବତାରର ମୂଳ । ତାଙ୍କଠାରୁ ରାମ, କୃଷ୍ଣ ପ୍ରଭୃତି ଅବତାର ହୋଇ ପୁନଃ ତାଙ୍କରି ଦେହରେ ଲୀନ ହୁଅନ୍ତି - (ଭାଗବତ- ୧୦/୩)

ସେହୁ ଗୋଲକ ନିତ୍ୟସ୍ଥଳ । ସେହିଟି ଗିରି ନୀଳାଚଳ ।
କୋଟିଏ ଯୁଗ ଯେବେ ଯାଇ । ଏଥିର ଲୀଳା ନ ସରଇ ।
ଶ୍ରୀଜଗନ୍ନାଥେ ଷୋଳକଳା । ଏଥୁ କଳାଏ ନନ୍ଦବଳା ।
କଳାକେ ଷୋଳକଳା ହୋଇ । ଘେନି ଜନ୍ମିଲେ ଗୋପେ ଯାଇ ।

ଏହି ମତକୁ ବଳରାମ ଦାସ ଗ୍ରହଣ କରି ସ୍ୱରଚିତ 'ବେଦାନ୍ତସାର ଗୁପ୍ତଗୀତା' ଜଗନ୍ନାଥଙ୍କୁ ସମସ୍ତ ଅବତାରର ସୃଷ୍ଟିକର୍ତ୍ତା ବୋଲି କହିଛନ୍ତି -

ସର୍ବଦା ନୀଳାଦ୍ରୀରେ ସ୍ଥିତି । ଏଥୁ ସକଳ ଜାତ ହୋନ୍ତି ।
ସମସ୍ତ ଅବତାରମାନ । ଜାତ ହୋଇଣ ପଶେ ପୁଣ ।

ଶ୍ରୀଜଗନ୍ନାଥଙ୍କ ଅଙ୍ଗରୁ ସବୁ ଅବତାର ସୃଷ୍ଟି ବୋଲି କବି ଦିବାକର ଦାସ ସ୍ୱରଚିତ ''ଜଗନ୍ନାଥ ଚରିତାମୃତ''ରେ ଲେଖିଛନ୍ତି -

ପରମ ବ୍ରହ୍ମ ଜଗନ୍ନାଥ । ଅବତାର ପରେ ସଂସ୍ଥିତ ।
କୋଟି କୋଟି ଯେ ଅବତାର । ଜଗନ୍ନାଥଙ୍କ ଅଙ୍ଗୁ ବାହାର ।

ଏହି ମତକୁ ରସକଲ୍ଲୋଳକାର ଦୀନକୃଷ୍ଣ ଦାସ ସ୍ୱୀକାର କରିଛନ୍ତି -

କଚ୍ଛପ ମତ୍ସ୍ୟାଦି ଅବତାର ଯେତକ
କରିବାକୁ ଜାତ ଜଗନ୍ନାଥ ଜନକ ।

କବି ମହାଦେବ ଦାସ ଉପରୋକ୍ତ କବିମାନଙ୍କଠାରୁ ଆଗୁଆ ପାଦେ ଯାଇ ମତଦେଲେ ଯେ ଜଗନ୍ନାଥଙ୍କ ନାଭିକମଳରୁ ବ୍ରହ୍ମା ଜାତ ହୋଇଥିଲେ -

ପୂର୍ବେ ଯେ ପ୍ରଭୁ ବ୍ରହ୍ମରାଶି । ଅଗାଧିସିନ୍ଧୁ ମଧ୍ୟେ ପଶି ।
ଯଜ୍ଞ ବରାହରୂପ ଧରି । ଦନ୍ତେ ଆକର୍ଷି ବସୁନ୍ଧରୀ ।
ସ୍ଥାପିଲେ ଆଣି ସେହିଠାରେ । ନୀଳସୁନ୍ଦର ଗିରିବରେ ।
(ନୀଳାଦ୍ରି ମହୋଦୟ ପୁରାଣ)

ଏହି କବିମାନଙ୍କର ହାରାହାରି ୨୦୦ ବର୍ଷ ପୂର୍ବରୁ ରାମାନୁଜାଚାର୍ଯ୍ୟ ଘୋଷଣା କରି ଯାଇଥିଲେ ପରବ୍ରହ୍ମ ନାରାୟଣ ବିଷ୍ଣୁ ହିଁ ପୁରୁଷୋତ୍ତମ ।

ପ୍ରତାପରୁଦ୍ର ଦେବଙ୍କ ସମୟରେ ଶ୍ରୀଚୈତନ୍ୟଙ୍କ ଗୌଡ଼ୀୟ ବୈଷ୍ଣବ ଧର୍ମ ଓ ଓଡିଶାର ପଞ୍ଚସଖାଙ୍କ ଓଡ଼ିଶୀ ପାଞ୍ଚରାତ୍ରବାଦୀ ବୈଷ୍ଣବ ଧର୍ମ ହିଁ ଶ୍ରୀଜଗନ୍ନାଥଙ୍କ ପ୍ରସାର ପ୍ରଚାରରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା ।

| | | | |
|---|---|---|---|
| ୧. | ବଳରାମ ଦାସଙ୍କ | - | ଦାଣ୍ଡିରାମାୟଣ |
| ୨. | ଜଗନ୍ନାଥ ଦାସଙ୍କ | - | ଭାଗବତ |
| ୩. | ଅଚ୍ୟୁତାନନ୍ଦ ଦାସଙ୍କ | - | ହରିବଂଶ ଓ ଶୂନ୍ୟସଂହିତା |
| ୪. | ଯଶୋବନ୍ତ ଦାସଙ୍କ | - | ଗୋବିନ୍ଦଚନ୍ଦ୍ର |
| ୫. | ଅନନ୍ତ ଦାସଙ୍କ | - | ହେତୁ ଉଦୟ ଭାଗବତ |

ଏହା ବ୍ୟତୀତ ରାଜମାହେନ୍ଦ୍ରିଠାରେ ଅବସ୍ଥାପିତ ଗଜପତିଙ୍କ ତତ୍‌କାଳୀନ ଗଭର୍ଣ୍ଣର ଭକ୍ତିବାଦୀ -

| | | | |
|---|---|---|---|
| ୬. | ରାୟ ରାମାନନ୍ଦଙ୍କ | - | ଜଗନ୍ନାଥ ବଲ୍ଲଭ ନାଟକ |
| ୭. | ରାଜକବି ଜୀବଦେବାଚାର୍ଯ୍ୟଙ୍କ | - | ଭକ୍ତିଭାଗବତ ଗ୍ରନ୍ଥ ମଧ୍ୟ ସ୍ମରଣୀୟ । |

ଯେ ସମସ୍ତ ଗ୍ରନ୍ଥ ଓଡ଼ିଶାର ପୁରପଲ୍ଲୀ ପର୍ଯ୍ୟନ୍ତ ଓଡ଼ିଆ ପ୍ରାଣରେ ସଞ୍ଚରି ଯାଇଥିଲା । ସୀମାଚଳଠାରୁ ଷଢ଼େଇକଳା ଖରସୁଆଁ ପର୍ଯ୍ୟନ୍ତ ଯେ ଗ୍ରନ୍ଥ କେବଳ ଜଗନ୍ନାଥଙ୍କୁ ଓଡ଼ିଆ ଘରେ

ପହଞ୍ଚାଇ ଦେଲା ନାହିଁ ଘରେ ଘରେ ଖଟୁଲୀ ଉପରେ ସ୍ଥାନ ପାଇଲା, ପୂଜା ହେଲା । ଜଗନ୍ନାଥଙ୍କ କଥା ଲିଖିତ ହୋଇଥିବା ପୋଥି ସାକ୍ଷାତ ଜଗନ୍ନାଥ ରୂପେ ସର୍ବମାନ୍ୟ ହୋଇଗଲା ।

## ଗଡ଼ଜାତ ସୃଷ୍ଟି :

ଓଡ଼ିଶା ଇତିହାସରେ ୩୮ଟି ଗଡ଼ଜାତର ଭୂମିକା ସର୍ବଦା ଗୁରୁତ୍ୱପୂର୍ଣ୍ଣ ଥିଲା । ସେମାନେ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତିରେ ଭାଗୀଦାର ଥିଲେ । ଅନଙ୍ଗଭୀମ ଦେବ ୩୮ ଗଡ଼ଜାତ ରାଜାଙ୍କୁ ମେଳେଇ ରାଜ୍ୟର ନିରାପତ୍ତାକୁ ପୂର୍ବରୁ ସୁଦୃଢ଼ କରିଥିଲେ । ତାଙ୍କ ପରେ ସେହି ସମ୍ବନ୍ଧ ଆଉରି ମଜବୁତ୍ ହେଲା । ଓଡ଼ିଶାର ପ୍ରତ୍ୟେକ ଗଡ଼ଜାତର ରାଜଧାନୀରେ ଶ୍ରୀଜଗନ୍ନାଥଙ୍କୁ ସ୍ଥାପନ କରି ଗଡ଼ଜାତ ରାଜା ଓ ଖଣ୍ଡପାଳମାନେ ଓଡ଼ିଶାର ଠାକୁର ରାଜାଙ୍କ ଆନୁଗତ୍ୟ ସ୍ୱୀକାର କରିଥିଲେ । ଏ ପ୍ରଥା ବହୁକାଳ ପର୍ଯ୍ୟନ୍ତ ଚାଲୁ ରହିଥିଲା । ତେଣୁ ଓଡ଼ିଆଙ୍କ ସାମାଜିକ ସଂହତି ଶ୍ରୀଜଗନ୍ନାଥଙ୍କ ଧର୍ମ ଓ ସଂସ୍କୃତିକୁ ଅନୁସରଣ କରି ରହିଥିଲା ।

ଗଡ଼ଜାତ ରାଜାମାନେ ଶ୍ରୀଜଗନ୍ନାଥଙ୍କ ନିଜର ବୋଲି ଗ୍ରହଣ କରି ନେଇଥିଲେ । ନିଜ ନିଜ 'ଗଡ଼'ରେ ଶ୍ରୀଜଗନ୍ନାଥଙ୍କୁ ପ୍ରତିଷ୍ଠା କରି ପୂଜା କରୁଥିଲେ ମଧ୍ୟ ଶ୍ରୀମନ୍ଦିର ଉଦ୍ଦେଶ୍ୟରେ ବହୁ ଜମିବାଡ଼ି ଦାନ କରିଥିଲେ । ଠାକୁର ରାଜାଙ୍କ ସହିତ ଅଭିନ୍ନ ହୃଦୟରେ ବାନ୍ଧିହୋଇ ପଡ଼ିଥିଲେ ୩୮ ଗଡ଼ଜାତ ରାଜାମାନେ । ଜଣଙ୍କର ବିପଦରେ ଏକାଠି ହୋଇ ଯାଉଥିଲେ । ଶ୍ରୀମନ୍ଦିରକୁ ରକ୍ଷା କରିବା ପାଇଁ ଆକ୍ରମଣକାରୀମାନଙ୍କୁ ପ୍ରଥମରୁ ଘଉଡ଼ାଇ ଦେଉଥିଲେ । ଫଳରେ ମୁସଲମାନ ଆକ୍ରମଣକାରୀମାନେ ସ୍ଥଳପଥରେ ବହୁବର୍ଷ ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ତଥା ଶ୍ରୀମନ୍ଦିର ଉପରେ ଆକ୍ରମଣ କରି ଲୁଣ୍ଠନ କରିବାକୁ ସକ୍ଷମ ହୋଇ ନଥିଲେ । ଯେଥିପାଇଁ ଅନଙ୍ଗଭୀମ ଦେବ (୧୧୯୦-୧୧୯୮)ଙ୍କ ଦୂରଦୃଷ୍ଟି ଅବିସ୍ମରଣୀୟ ଏବଂ ୩୮ ଗଡ଼ଜାତର ବ୍ୟବସ୍ଥାପନା ଏକ ଐତିହାସିକ ପଦକ୍ଷେପ ।

ଏହା ଫଳରେ ଓଡ଼ିଶା ଏକ ସୁସଂହତ, ସୁସମୃଦ୍ଧ ରାଜ୍ୟରେ ପରିଣତ ହେବାକୁ ଆରମ୍ଭ କରିଥିଲା । ସାମାଜିକ ସ୍ଥିରତା ସୁଖ ସମୃଦ୍ଧିର ଚାବିକାଠି ରୂପେ କାମ ଦେଲା । ତାଙ୍କର 'ନଳମାପ' ପ୍ରଚଳନ ଦ୍ୱାରା ଚାଷକାର୍ଯ୍ୟ ଏକ ନୂତନ ରୂପରେଖ ନେଲା । ପ୍ରଚୁର ଧନରତ୍ନରେ ଓଡ଼ିଶା ଖୁବ୍ ଆତ୍ମନିର୍ଭରଶୀଳ ଥିଲା । ଯେଉଁ ମୁଖ୍ୟ ଆକର୍ଷଣ ପାଇଁ ଆକ୍ରମଣକାରୀମାନେ ଆକ୍ରମଣ କରିଥିଲେ ତାର ମୂଳ କାରଣ ଗୁଡ଼ିକ ଲକ୍ଷ୍ୟ କରିବାର କଥା ।

## ଆକ୍ରମଣର କାରଣ :

୧ - ଅନଙ୍ଗଭୀମ ଦେବଙ୍କ ସମୟରେ ଓଡ଼ିଶାର ସୀମା ଥିଲା ହୁଗୁଳିରୁ ଗୋଦାବରୀ । ରାଜସ୍ୱ ଥିଲା ୧୫ ଲକ୍ଷ ମୋହର = ୪୦୬୨୫୦ ପାଉଣ୍ଡ । ଅର୍ଥାତ୍ ୬୦ ଲକ୍ଷ ୯୩ ହଜାର ସାତଶହ ୫୦ ଟଙ୍କା ।

| | | | |
|---|---|---|---|
| ୨ - | ୧୬ଶ ଶତାବ୍ଦୀରେ ରାଜସ୍ୱ | - | ୪୩,୫୦୦୦ ପାଉଣ୍ଡ |
| | ଆକବରଙ୍କ ଅମଳରେ | - | ୪୩,୫୩୧୯ ,, |

| | | |
|---|---|---|
| ୧୭ଶ ଶତାବ୍ଦୀରେ | - | ୫୩, ୭୪୯୫ ପାଉଣ୍ଡ |
| ସାହାଜାହାନଙ୍କ ଅମଳରେ | - | ୪୯,୬୧୪୭୯ " |
| | = | ୫୩,୭୪,୯୫୫ ଟଙ୍କା |

୩- ଏହା ପୂର୍ବରୁ ସମ୍ରାଟ ଅଶୋକ କଳିଙ୍ଗ ଯୁଦ୍ଧ କରିଥିଲେ କେବଳ ଏକ ଧନଧାନ୍ୟ ସମ୍ପନ୍ନ ରାଜ୍ୟକୁ ନିଜ ଅକ୍ତିଆରକୁ ଆଣିବା ପାଇଁ ।

୪- ମେଘାସ୍ଥିନ୍‌ସଙ୍କ ବିବ୍ରଣୀ ଅନୁଯାୟୀ ସେତେବେଳେ କଳିଙ୍ଗ ବାହିନୀରେ ୬୦ ହଜାର ପଦାତିକ, ୧୦୦୦ ଅଶ୍ୱାରୋହୀ ଏବଂ ୭୦୦ ଯୁଦ୍ଧ ହସ୍ତୀ ଥିଲେ । ତେବେ କଳିଙ୍ଗ ରାଜା କେତେ ସମୃଦ୍ଧ ଥିଲେ ତତ୍‌କାଳୀନ ସମୟରୁ ତାହା ବିବେଚ୍ୟ ।

୫- ଗଙ୍ଗରାଜା ଚୋଡ଼ଗଙ୍ଗ ଦେବ ୯୯୯୯ ହସ୍ତୀ ରଖିଥିବାରୁ ନିଜକୁ ନବନବତି-କୁଞ୍ଜରାଧିଶ୍ୱର ଉପାଧିରେ ଭୂଷିତ କରିଥିଲେ ।

୬- ଅନଙ୍ଗଭୀମ ଦେବ ୩ୟଙ୍କ ସମୟକୁ ଅର୍ଥାତ୍ ଖ୍ରୀ ୧୨୧୧-୧୨୩୮ ବେଳକୁ ୬୦ ହଜାର ପଦାତିକ, ୫୦ ହଜାର ଅଶ୍ୱାରୋହୀ, ୨୫ ହଜାର ହସ୍ତୀ ରହିଥିଲେ । ମାଦଳାପାଞ୍ଜି କୁହେ - ''ଏଥକୁ ମହାରାଜାଙ୍କ ପଂଉଜ ଅଟନ୍ତି ଦନ୍ତା ମତ୍ତା ମାଖୁନା ହାଥୁଣୀ ଦୁଇ ହଜାର ପାଞ୍ଚଶ ଘର । ଚଉଦ ପ୍ରତିରେ ରାଉତଘୋଡ଼ା ବାଖର । ୨୦ ହଜାର ବାଣୁଆ, ଧନୁକୀ, ପଣ୍ଡିକାର, ଇଟିକାର, ମଧ ପାଇକ ୩ ଲକ୍ଷ ।''

୭- ମହର୍ଷି ପାଣିନିଙ୍କ ମତରେ 'କଳିଙ୍ଗ' ଏକ ଜନପଦବାଚୀ ଶବ୍ଦ । କଳିଙ୍ଗମାନେ ସାହସିକ ଯେକଥା ପାଣିନି ହିଁ ପ୍ରୟୋଗ କରିଥିଲେ । ଅତଏବ ପାଣିନିଙ୍କ ସମୟକୁ କଳିଙ୍ଗ ଭାରତର ଏକ ବିଶିଷ୍ଟ ଜନପଦ ରୂପେ ପରିଚିତ ହେବା ସହିତ ସୁସଂଗଠିତ ଜାତି ହିସାବରେ ପ୍ରସିଦ୍ଧି ଲାଭ କରି ସାହସୀ ରାଜ୍ୟ ରୂପେ ପରିଚିତ ହୋଇ ସାରିଥିଲା ।

୮- ପାଣିନିଙ୍କ ପୂର୍ବରୁ ମହାଭାରତକାଳୀନ କଳିଙ୍ଗର ସ୍ଥିତି ଅବଲୋକନ କଲେ ପାଣିନିଙ୍କ 'ସାହସିକ' ଉପାଧି ସତ୍ୟ ପ୍ରମାଣିତ ହୁଏ ।

୯- ଶ୍ରୀକୃଷ୍ଣ ଦୂତ ରୂପେ ସନ୍ଧି ଉଦ୍ଦେଶ୍ୟରେ ଧୃତରାଷ୍ଟ୍ର ସଭାରେ ଉଭୟ ପକ୍ଷର ଯେଉଁ ଯୋଦ୍ଧାମାନଙ୍କର ବର୍ଣ୍ଣନା କରିଛନ୍ତି ସେଥିରେ ସେ କଳିଙ୍ଗର ରାଜା 'ଶ୍ରୁତାୟୁ' ବୋଲି କହିଛନ୍ତି (୫/୯୫/୧୯-୨୧) । ପ୍ରଥମ ଦିନର ଯୁଦ୍ଧ ବର୍ଣ୍ଣନା କରିବାକୁ ଯାଇ ସଂଜୟ କଳିଙ୍ଗର ରାଜା 'ଶ୍ରୁତାୟୁଧ' ବୋଲି କହିଛନ୍ତି ଏବଂ ଶ୍ରୁତାୟୁଧ ଏକ 'ଅକ୍ଷୌହିଣୀ ସେନାର ସ୍ୱାମୀ ଥିଲେ (୬/୧୬/୧୫-୧୭) ।

ଯେଠାରେ ଲକ୍ଷ୍ୟ କରିବାର କଥା ଏକ ଅକ୍ଷୌହିଣୀ ସେନାର ସ୍ୱାମୀ ଥିଲେ କଳିଙ୍ଗ ରାଜା । ତେବେ ଏକ ଅକ୍ଷୌହିଣୀ ସେନାର ସବିଶେଷ ବିବରଣୀ ଦେଖିବା । ଅକ୍ଷୌହିଣୀ ଏବଂ ଅନ୍ୟ ସେନା ବିଭାଗ ପରିମାଣ ମାହାଭାରତରେ (୧/୨/୧୯-୨୭) ନିର୍ଦ୍ଦିଷ୍ଟ କରାଯାଇଛି । ତାହା ଅନୁଧ୍ୟାନ କଲେ ସ୍ପଷ୍ଟ ଜଣାପଡୁଛି ମହାଭାରତ କାଳରେ କଳିଙ୍ଗ କେତେ

ସମୃଦ୍ଧଶାଳୀ ଥିଲା ଏବଂ ତାର ରାଜା ଜଣେ ବିଶିଷ୍ଟ ବୀର ହିସାବରେ ସର୍ବଭାରତୀୟ ସ୍ତରରେ ପରିଚିତ ଥିଲେ । ଯେପରିକି ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କର ସମ୍ମୁଖ ଭାଗରେ ରହି କଳିଙ୍ଗ ରାଜା ଶ୍ରୁତାୟୁଧ ପାଣ୍ଡବପକ୍ଷ ସୈନ୍ୟଙ୍କ ସହ ଯୁଦ୍ଧ କରୁଥିଲେ । (୬/୧୭/୨୬-୨୭)

### ଅକ୍ଷୌହିଣୀ ସେନା ବିବରଣୀ

| ସେନା ବିଭାଗ | ରଥ | ହାତୀ | ଘୋଡ଼ା | ପଦାତିକ |
|---|---|---|---|---|
| ୧. ପତି | ୧ | ୧ | ୩ | ୫ |
| ୨. ସେନାମୁଖ (୩ ପତି) | ୩ | ୩ | ୯ | ୧୫ |
| ୩. ଗୁଳ୍ମ (୩ ସେନାମୁଖ) | ୯ | ୯ | ୨୭ | ୪୫ |
| ୪. ଗଣ (୩ ଗୁଳ୍ମ) | ୨୭ | ୨୭ | ୮୧ | ୧୩୫ |
| ୫. ବାହିନୀ (୩ ଗଣ) | ୮୧ | ୮୧ | ୨୪୩ | ୪୦୫ |
| ୬. ପୃତନା (୩ ବାହିନୀ) | ୨୪୩ | ୨୪୩ | ୭୨୯ | ୧୨୧୫ |
| ୭. ଚମୂ (୩ ପୃତନା) | ୭୨୯ | ୭୨୯ | ୨୧୮୭ | ୩୬୪୫ |
| ୮. ଅନୀକିନୀ (୩ ଚମୂ) | ୨୧୮୭ | ୨୧୮୭ | ୬୫୬୧ | ୧୦୯୩୫ |
| ୯. ଅକ୍ଷୌହିଣୀ (୧୦ ଅନୀକିନୀ) | ୨୧୮୭୦ | ୨୧୮୭୦ | ୬୫୬୧୦ | ୧୦୯୩୫୦ |

ଏତଏବ ଏକ ଅକ୍ଷୌହିଣୀ ସେନାରେ ଏକୋଇଶି ହଜାର ଆଠ ଶହ ସତୁରି ରଥ ଏବଂ ସେତିକି ସଂଖ୍ୟକ ହାତୀ, ପଞ୍ଚଷଠି ହଜାର ଛଅ ଶହ ଦଶଟି ଘୋଡ଼ା ଏବଂ ଏକ ଲକ୍ଷ ନଅ ହଜାର ତିନିଶହ ପଚାଶ ଜଣ ପଦାତିକ ସୈନିକ ମହାଭାରତ ଯୁଦ୍ଧ ସମୟରେ କଳିଙ୍ଗ ରାଜାଙ୍କ ପାଖରେ ଥିଲେ ।

ଯେପରି ଏକ ହଜାର ହଜାର ବର୍ଷ ଧରି ସୁସମୃଦ୍ଧ ରାଜ୍ୟ ପ୍ରତି ଆକ୍ରମଣକାରୀଙ୍କ ଦୃଷ୍ଟି ପଡ଼ିବା ସ୍ୱାଭାବିକ ।

**କଳିଙ୍ଗ ହୀରା :**

୧୦- ଆକ୍ରମଣର କାରଣଗୁଡ଼ିକ ମଧ୍ୟରୁ ନବମ କାରଣରୁ ଆମେ ସ୍ପଷ୍ଟ ଜାଣିଲେ କଳିଙ୍ଗ ଏକ ଧନୀ ରାଷ୍ଟ୍ର ଥିଲା । ଯାର ମୂଳରେ ଥିଲା କଳିଙ୍ଗ ହୀରା । କଳିଙ୍ଗ ହୀରା ପୃଥିବୀ ପ୍ରସିଦ୍ଧ ଥିଲା । ବହୁ ଗ୍ରନ୍ଥ କଳିଙ୍ଗ ହୀରାର ଉତ୍କର୍ଷତା ବର୍ଣ୍ଣନାରେ ଶତମୁଖ । ଚଣ୍ଡେଶ୍ୱର - ରତ୍ନ ପରୀକ୍ଷାରୁ ଜଣାପଡୁଛି -

> କୋଶଳେ ଚ କଳିଙ୍ଗେ ଚ ମାତଙ୍ଗେ ଚ ହିମାଳୟେ ।
> ପୁଷ୍ପରେ ଚୈବ ସୌରାଷ୍ଟ୍ରେ ବଜ୍ରସ୍ୟୋପୃତ୍ତି ଭୂମୟଃ ।।

ଏହି ହୀରାର ପ୍ରସିଦ୍ଧି କଳିଙ୍ଗର ନୌ-ବାଣିଜ୍ୟର ପ୍ରସାର ଯୋଗୁ ସମ୍ଭବ ହୋଇଥିଲା । କଳିଙ୍ଗବାସୀ ଅର୍ଣ୍ଣବପୋତ ବିଦ୍ୟାରେ ପାରେସମୁଦ୍ର ବାଣିଜ୍ୟରେ ଖୁବ୍ ଦକ୍ଷତା ଅର୍ଜନ

କରିଥିଲେ । କଳିଙ୍ଗକୁ ବିଭିନ୍ନ ଦେଶରୁ ଯେପରି ପଣ୍ୟ ସମ୍ଭାର ଆସୁଥିଲା ସେହିପରି ମଧ୍ୟ କଳିଙ୍ଗରୁ ଯାଉଥିଲା । ପ୍ରସିଦ୍ଧ କଳିଙ୍ଗ ହୀରା ରପ୍ତାନୀ କରି କଳିଙ୍ଗ ଅଧିବାସୀ ଧନାଢ୍ୟସମ୍ପନ୍ନ ହୋଇ ପାରିଥିଲେ । ତେଣେ ହୀରାର ଚାହିଦାକୁ ବିଶ୍ୱ ଦରବାରରେ ଖୁବ୍ ଉଚ୍ଚରେ ପହଞ୍ଚାଇ ଦେଇଥିଲେ । ଆକ୍ରମଣକାରୀମାନେ ପରୀ ରାଇଜର କାହାଣୀ ପରି କଳିଙ୍ଗ ହୀରାର କାହାଣୀ ଶୁଣି ହୀରା ପାଇଁ ଆସକ୍ତ ହୋଇ ପଡ଼ିଥିଲେ ।

୧୧ - **ହାତୀ, ହାତୀଦାନ୍ତ ଓ ସୂକ୍ଷ୍ମବସ୍ତ୍ର** - ଆକ୍ରମଣର ଦଶମ କାରଣ ଥିଲା 'କଳିଙ୍ଗ ହୀରା' । ଏକାଦଶ କାରଣ କଳିଙ୍ଗ ରାଜା ପାଣ୍ଡବମାନଙ୍କୁ ହସ୍ତୀ ଦନ୍ତର ବିବିଧ ଶିଳ୍ପଜାତ ଦ୍ରବ୍ୟ ଏବଂ ମାଣିକ୍ୟରତ୍ନ ଉପହାର ଦେଇଥିଲେ (ସଭାପର୍ବ ୭୮ ଅଧ୍ୟାୟ) । ଅର୍ଥାତ୍ ସେତେବେଳକୁ ଉତ୍କୃଷ୍ଟ ହସ୍ତୀ, ହସ୍ତୀଦନ୍ତର କାରୁକାର୍ଯ୍ୟ, ମାଣିକ୍ୟ, ରତ୍ନ ଓ ହୀରାପାଇଁ ପ୍ରତିଷ୍ଠା ଅର୍ଜନ କରି ସାରିଥିଲା ।

କଳିଙ୍ଗ ହସ୍ତୀ ବାଣିଜ୍ୟ ପାଇଁ ଖ୍ୟାତିଲାଭ କରିଥିଲା (କୌଟିଲ୍ୟ ଅର୍ଥଶାସ୍ତ୍ର) । ହାତୀଦାନ୍ତ ଓ ସୂକ୍ଷ୍ମବସ୍ତ୍ର ତାମ୍ରଲିପ୍ତି ବନ୍ଦରରୁ ରପ୍ତାନି ହେଉଥିଲା । (Periplus of the Erythrean Sea)

ଅତଏବ ତତ୍‌କାଳୀନ କଳିଙ୍ଗକୁ ଲକ୍ଷ୍ୟ କଲେ ଯେ ଜାତି ଖୁବ୍ ଧନଶାଳୀ ଥିଲା ଯେଥିରେ ଦ୍ୱିମତ ହେବାର ନାହିଁ । ତେଣୁ କଳିଙ୍ଗର ନାମ ଓଡ୍ର ହେଉ, ଉତ୍କଳ ହେଉ କିମ୍ବା ଓଡ଼ିଶା ହେଉ ତାହା ଧନଶାଳୀ ଥିଲା ବିଶ୍ୱବାସୀଙ୍କ ଆଗରେ । ଆକ୍ରମଣକାରୀମାନଙ୍କ ଦୃଷ୍ଟିରେ କଳିଙ୍ଗ ପାଲଟି ଯାଇଥିଲା କୁବେରପୁରୀର କେନ୍ଦ୍ରବିନ୍ଦୁ ରୂପେ ।

ହୁଏନ୍ ସାଂଙ୍କ ସମୟରେ ପୂର୍ବଘାଟ ପର୍ବତମାଳରୁ ବଙ୍ଗୋପସାଗର ମଧ୍ୟରେ ୧୦ଟି ନଗର କେବଳ ରହିଥିଲା । ପ୍ରତି ନଗରରେ ଯୁଦ୍ଧହସ୍ତୀ ସୁସଜ୍ଜିତ ହୋଇ ରହିଥିଲେ । ଏହା ବି ଆମେ ମହାଭାରତ ଯୁଦ୍ଧରୁ ଦେଖି ଆସୁଛେ ।

୧୨ - **ସୁନାରୀ ପସରା** - ଯେ ରାଜ୍ୟର ପ୍ରାଚୀନ 'ସୁନାରୀ ପସରା'ରେ ରହୁଥିଲା ହୀରା, ଲୀଳା, ମୋତି, ମାଣିକ୍ୟ, ମରକତ, ବୈଦୁର୍ଯ୍ୟ, ପଦ୍ମରାଗ, ଗୋମେଦ, ଗରୁଡ଼ୋଦ୍‌ଗାର, ପୋହଳା, ସୁନା, ପିଟାସୁନା, କୁନ୍ଦନ ସୁନା, ପାରସିକା, କପିତାନ, ସିକା, ଗର୍‌ନାଲି, ଆଡକାଠି, ଦଶମାସି, ଦେଶୀ ଓ ମଙ୍ଗରାଜ ପ୍ରଭୃତି ବିଭିନ୍ନ ଲୋଭନୀୟ ଧାତୁରତ୍ନ ।

ରତ୍ନାଦି ଖଚିତ ଅଳଙ୍କାର ପସରାର ଶୋଭାବର୍ଦ୍ଧନ କରୁଥିଲା । ଯେ ଜାତିର ଲୋକେ

ପାଦର ଶୋଭାବର୍ଦ୍ଧନ ପାଇଁ ବ୍ୟବହାର କରୁଥିଲେ ୧୧ ପ୍ରକାର ଅଳଙ୍କାର ।
**ହସ୍ତର** ଶୋଭାବର୍ଦ୍ଧନ ପାଇଁ ବ୍ୟବହାର କରୁଥିଲେ ୧୨ ପ୍ରକାର ଅଳଙ୍କାର ।
**କର୍ଣ୍ଣର** ଶୋଭାବର୍ଦ୍ଧନ ପାଇଁ ବ୍ୟବହାର କରୁଥିଲେ ୨୦ ପ୍ରକାର ଅଳଙ୍କାର ।

· ସେଥିମଧ୍ୟରୁ କେବଳ 'ଗୁଣା' ଥିଲା ୧୨ ପ୍ରକାରର ।

| ଯଥା - | ଅର୍ଦ୍ଧଚନ୍ଦ୍ର ଗୁଣା | ବନ୍ଧା ଗୁଣା |
|---|---|---|
| | ମାଣିକ ଗୁଣା | ଘସା ଗୁଣା |
| | ବିଛୁଲି ଗୁଣା | ଫୁଲ ଗୁଣା |
| | ପଦ୍ମକେଶରୀ ଗୁଣା | କମ ଗୁଣା |
| | ତ୍ରିଲୋଚନ ଗୁଣା | ରୁଅବସା ଗୁଣା |
| | ସିଂହଡା ଗୁଣା | ବନ୍ଦି ଗୁଣା |

କଣ୍ଠର ଶୋଭାବର୍ଦ୍ଧନ ପାଇଁ ୧୭ ପ୍ରକାର ଅଳଙ୍କାର ବ୍ୟବହୃତ ହେଉଥିଲା ।

ଅଣ୍ଟାର ଶୋଭାବର୍ଦ୍ଧନ ପାଇଁ ୮ ପ୍ରକାର ଅଳଙ୍କାର ବ୍ୟବହୃତ ହେଉଥିଲା ।

ଆଙ୍ଗୁଠିର ଶୋଭାବର୍ଦ୍ଧନ ପାଇଁ ୯ ପ୍ରକାର ଅଳଙ୍କାର ବ୍ୟବହୃତ ହେଉଥିଲା ।

| ଯଥା - | ପିଆଜ | ଲବଙ୍ଗ |
|---|---|---|
| | ଉସ୍ତପତରି | ଢାଇମଣ୍ଡା |
| | ଗୋଲି | କଳାବିରି |
| | ଛେଚା | ଗଡଗଡିଆ |
| | ବାଙ୍କଟା | |

ନାକର ଅଳଙ୍କାର ଭାବେ ୧୯ ପ୍ରକାର ଅଳଙ୍କାର ବ୍ୟବହୃତ ହେଉଥିବା ବେଳେ ସେଥିମଧ୍ୟରୁ ୯ ପ୍ରକାର କେବଳ 'ନାକଚଣା' ଥିଲା ।

କେଶର ଅଳଙ୍କାର ଭାବରେ ୧୬ ପ୍ରକାର ଅଳଙ୍କାର ବ୍ୟବହୃତ ହେଉଥିଲା । ଯାହାର ବିପଣୀ ବୀଥିକାରେ ବିଚିତ୍ର ମଣିମୁକ୍ତା ନିଃସଙ୍କୋଚରେ କ୍ରୟ ବିକ୍ରୟ ହେଉଥିଲା । (ପୁରାତନ କଳିଙ୍ଗର ସାମାଜିକ ଇତିବୃତ୍ତ, ପୃ-୧୨୪)

ଅତଏବ ଆକ୍ରମଣକାରୀ ଲୁଣ୍ଠନ କରିବାର ଲକ୍ଷ୍ୟ ନେଇ ସେତେବେଳେ ବାରମ୍ବାର ଯେ ଭୂଖଣ୍ଡକୁ ଆକ୍ରମଣ ଚଳାଇଥିଲେ ।



## — ଦ୍ୱିତୀୟ ପରିଚ୍ଛେଦ —

# ଭାରତରେ ମୋଗଲ ଶାସନର ଅଭ୍ୟୁଦୟ

## ମୋଗଲ କଅଣ ?

ଉତ୍ତର ଭାରତରେ ଏବଂ ଆଫଗାନ୍ ଉପଜାତି ଅଧ୍ୟୁଷିତ ଅଞ୍ଚଳଗୁଡ଼ିକରେ ପ୍ରଥମେ ମଙ୍ଗୋଲମାନେ ରାଜତ୍ୱ କରୁଥିଲେ । ମଙ୍ଗୋଲମାନଙ୍କ ଅଧିକୃତ ଭୂଖଣ୍ଡରେ ପରେ ମୁସଲମାନମାନେ ରାଜତ୍ୱ କଲେ । ଯେଉଁ ମୁସଲମାନ ରାଜାମାନେ ରାଜତ୍ୱ କଲେ ସେମାନେ କାଳକ୍ରମେ ମଙ୍ଗୋଲମାନଙ୍କ ସହ ବିବାହ ବନ୍ଧନରେ ଆବଦ୍ଧ ହେଲେ । ସେମାନେ ମଧ ମଙ୍ଗୋଲ ନାମରେ ପରିଚିତ ହେଲେ । ପରବର୍ତ୍ତି କାଳରେ ଯେମାନେ ବସବାସ କରୁଥିବା ମଧ-ଏସିଆର ସୁବିସ୍ତୃତ ଅଞ୍ଚଳ ଏବଂ ଆଫ୍‌ଗାନମାନଙ୍କର ଅଞ୍ଚଳଗୁଡ଼ିକ 'ମୋଗଲିସ୍ତାନ' ରୂପେ ପରିଚିତ ହେଲା । ବାବର ଏହି ଅଞ୍ଚଳରୁ ହିନ୍ଦୁସ୍ଥାନକୁ ଆସିଥିଲେ । ସେ ଏବଂ ତାଙ୍କ ସହିତ ଯେଉଁମାନେ ଆସିଥିଲେ ସେମାନେ 'ମୋଗଲ' ନାମରେ ପରିଚିତ ହେଲେ ।

## ଶାସନର ଅଭ୍ୟୁଦୟ :

ଦିଲ୍ଲୀରେ ମୁସଲମାନମାନଙ୍କ ରାଜତ୍ୱ କାଳରେ ମୁସଲମାନ ସାମନ୍ତ ଭୂ-ମାଲିକଙ୍କୁ ନେଇ ଏକ ଶାସକ ସମ୍ପ୍ରଦାୟ ସୃଷ୍ଟି ହୋଇ ସାରିଥିଲା । ଏଣେ ସମୁଦ୍ରକୂଳ ପ୍ରଦେଶଗୁଡ଼ିକ ଯଥା- କଳିଙ୍ଗ, କୋଶଳ, ମାଳବାର, ଗୁଜୁରାଟ, ବଙ୍ଗ ଓ ଗୋଲକୁଣ୍ଡା ପ୍ରଭୃତି ଆରବ ଦେଶ ତଥା ବିଭିନ୍ନ ଦ୍ୱୀପପୁଂଜ ସହିତ ନୌ-ବାଣିଜ୍ୟ ଦ୍ୱାରା ଧନଶାଳୀ ହୋଇ ସାରିଥିଲେ । କିନ୍ତୁ ଆଭ୍ୟନ୍ତରୀଣ ଦ୍ୱନ୍ଦରୁ ଯେମାନେ ମୁକ୍ତ ନଥିଲେ । ଠିକ୍ ଯେପରି ଘଡ଼ିସନ୍ଧି ମୁହୂର୍ତ୍ତରେ ମୋଗଲମାନେ ପ୍ରବେଶ କରିଥିଲେ ଭାରତରେ ସାମ୍ରାଜ୍ୟ ପ୍ରତିଷ୍ଠା ଉଦ୍ଦେଶ୍ୟରେ ।

ମୋଗଲ ସାମ୍ରାଜ୍ୟର ମୂଳଦୂଆ ପକାଇଥିଲେ ତୈମୁର ବଂଶର ଜହିରୁଦ୍ଦୀନ ମହମ୍ମଦ ବାବର । ସେ ୧୫୨୬ ଖ୍ରୀ. ରୁ ୧୫୩୦ ପର୍ଯ୍ୟନ୍ତ ମାତ୍ର ତିନି ବର୍ଷ ଭାରତ ଶାସନ କରିଥିଲେ । ସେ ଥିଲେ 'ଫେରଗାନ୍'ର ଅଧିପତି । ମାତ୍ର ପରେ ଆଫଗାନ ଅଞ୍ଚଳ ଦଖଲ କରି କାବୁଲକୁ ନିଜର ରାଜଧାନୀ କରିଥିଲେ । ସ୍ୱପ୍ନ ଥିଲା ସୁବର୍ଣ୍ଣଭୂମି ଭାରତର ସମ୍ରାଟ ହେବା ପାଇଁ । ୧୫୧୮ ଖ୍ରୀଷ୍ଟାବ୍ଦ ଏବଂ ୧୫୨୪ ଖ୍ରୀଷ୍ଟାବ୍ଦରେ ପଂଜାବ ଆକ୍ରମଣ କରିଥିଲେ ମଧ ୧୫୨୬ରେ ଏକ ଶକ୍ତିଶାଳୀ ସୈନ୍ୟବାହିନୀ ଦ୍ୱାରା 'ପାନିପଥ'ଠାରେ ଇବ୍ରାହିମ୍ ଲୋଦୀଙ୍କୁ ପରାଜିତ କଲେ । ପରେ ଫତେପୁର ସିକ୍ରିଠାରେ ଚିତୋର ରାଜାଙ୍କୁ ପରାସ୍ତ କରି ସମସ୍ତ ଗାଙ୍ଗେୟ ଉପତ୍ୟକାକୁ ନିଜ ଅକ୍ତିଆରକୁ ନେଲେ ।

ଯୁଦ୍ଧରେ ଲୁଣ୍ଠିତ ଧନରତ୍ନକୁ ନେଇ ଦଳେ ଆଫଗାନ୍ ଫେରିଗଲେ । ଯେଉଁମାନେ ରହିଲେ ସେମାନେ ଶାସନ ସହିତ ସଂପୃକ୍ତ ହୋଇପଡ଼ିଲେ । ବିନିମୟରେ ବାବର ସେମାନଙ୍କୁ ଭୂସଂପତ୍ତି ଦାନ କଲେ । ତାହା ହୋଇଗଲା 'ଜାଏଗିରି' ବା ଜାଗିର । ପରେ ସେମାନଙ୍କୁ କୁହାଗଲା 'ମୋଗଲବନ୍ଦୀ ଜାଗିରଦାର' ।

ବାବରଙ୍କ ଦେହାନ୍ତ ପୂର୍ବରୁ ଭାରତର ମୁଖ୍ୟ ଅଂଶଟିକୁ ଦେଇ ଯାଇଥିଲେ 'ହୁମାୟୁନ୍'ଙ୍କୁ । ଅନ୍ୟ ତିନିଜଣ ପାଇଲେ ପଂଜାବ, କାବୁଲ ଓ କାନ୍ଦାହାର । ମାତ୍ର ଭାତୃକଳହ ହୁମାୟୁନ୍‌ଙ୍କୁ ବିବ୍ରତ କରି ଦେଇଥିଲା । ସେଥିପାଇଁ ଗୁଜୁରାଟ, ରାଜପୁତନାର କେତେକ ଅଞ୍ଚଳ ଓ ବିହାର ଜୟ କରି ମଧ ରାଜ୍ୟଗୁଡ଼ିକୁ କରାୟତ କରି ନ ପାରି ଓଲଟି ଆଫଗାନ୍ ସାମନ୍ତରାଜା ଶେର ଖାଁଙ୍କ ଠାରୁ ପରାସ୍ତ ହୋଇ 'ସିନ୍ଧୁ' ପ୍ରଦେଶକୁ ପଳାଇ ଥିଲେ । ସେଠି ସେନାପତିଙ୍କର ଏକ ୧୪ ବର୍ଷର କନ୍ୟାକୁ ବିବାହ କରିଥିଲେ । ସେଇ କନ୍ୟା ଗର୍ଭରୁ ୧୫୪୨ ଖ୍ରୀଷ୍ଟାବ୍ଦରେ ଜନ୍ମ ନେଇଥିଲେ 'ଆକବର' । ଭାଇମାନଙ୍କ ଆକ୍ରମଣରୁ ମୁକ୍ତିପାଇଁ ସେ ସିନ୍ଧୁ ପ୍ରଦେଶରୁ ଚାଲିଗଲେ 'ପାରସ୍ୟ'କୁ ।

ଏଇ ସୁଯୋଗରେ ୧୫୪୦ ଖ୍ରୀ.ରୁ ୧୫୪୫ ଖ୍ରୀ. ପର୍ଯ୍ୟନ୍ତ ପୂର୍ବୋକ୍ତ ଶେର୍ ଖାଁ 'ଶେରଶାହ' ଉପାଧି ଧାରଣ କରି ଦିଲ୍ଲୀ ସିଂହାସନରେ ବସିଥିଲେ । ରାଜପୁତନାର ''କାଲାଂଜର'' ଦୁର୍ଗ ଦଖଲ କରିବାକୁ ଯାଇ ୧୫୪୫ରେ ତାଙ୍କର ଦେହାନ୍ତ ହେଲା ।

ତାଙ୍କ ପରେ ପୁନଃ ଦିଲ୍ଲୀ ଗାଦିକୁ ନେଇ ଆଫଗାନ ଭୂସ୍ୱାମୀମାନଙ୍କ ମଧ୍ୟରେ ସଂଘର୍ଷ ହେଲା । ଶେରଶାହଙ୍କ କନିଷ୍ଠ ପୁତ୍ର ୧୫୫୪ ମସିହା ପର୍ଯ୍ୟନ୍ତ ରାଜତ୍ୱ କଲେ ମଧ ପୁନଃ ବିବାଦ ସୃଷ୍ଟି ହେଲା । ଏତିକିବେଳେ ହୁମାୟୁନ୍ ପୁଣି ତୁର୍କୀ, ପାରସିକ, ଆଫଗାନ, ଉଜ୍‌ବେକ୍ ସୈନ୍ୟମାନଙ୍କୁ ନେଇ ଦିଲ୍ଲୀ ଫେରିଆସି ସମସ୍ତଙ୍କୁ ହଟାଇ ଦେଇ ୧୫୫୫ରେ ସିଂହାସନରେ ବସିଲେ । ମାତ୍ର ତାଙ୍କର ହଠାତ୍ ମୃତ୍ୟୁ ହେବାରୁ ୧୩ ବର୍ଷ ବୟସରେ ଆକବର ସିଂହାସନରେ ବସିଲେ । ତାଙ୍କର ପ୍ରତିନିଧି ହିସାବରେ ବୈରାମ ଖାଁ ଶାସନ କଲେ ।

ସେତେବେଳେ ମୋଗଲ ସାମ୍ରାଜ୍ୟର ସୀମା ଥିଲା ଗଂଗା ଓ ଯମୁନା ଉପତ୍ୟକା ମଧ୍ୟରେ । ମୋଗଲ ସାମ୍ରାଜ୍ୟ ପ୍ରତି ବିପଦ ସୃଷ୍ଟିକାରୀ 'ହିମୁ'ଙ୍କୁ ୧୫୫୬ ରେ ମୋଗଲ ବାହିନୀ ପରାସ୍ତ କରିଥିଲେ । ଆକବର ୧୫୫୬ ଖ୍ରୀ. ରୁ ୧୬୦୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରି ସମଗ୍ର ଉତ୍ତର ଭାରତରେ ମୋଗଲ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ଆଗ୍ରା ହୋଇଗଲା ମୋଗଲ ସାମ୍ରାଜ୍ୟର ରାଜଧାନୀ ।

## ମୋଗଲ ଅଧିକୃତ ରାଜ୍ୟ :

| | | |
|---|---|---|
| ୧୫୬୮ ରେ | - | ଚିତୋର ଅଧିକାର । |
| ୧୫୬୯ ରେ | - | ରନ୍ଥମ୍ବର ଶକ୍ତିଶାଳୀ ଦୁର୍ଗ ଅଧିକାର । |
| ୧୫୭୨ ରେ | - | ଗୁଜୁରାଟ ରାଜ୍ୟ ଅଧିକାର । |
| ୧୫୮୬ ରେ | - | କାଶ୍ମୀର ରାଜ୍ୟ ଅଧିକାର । |
| ୧୫୯୦ ରେ | - | ସିନ୍ଧୁ ଦେଶ ଅଧିକାର । |
| ୧୫୯୨ ରେ | - | ଓଡ଼ିଶା ପ୍ରଦେଶ ଅଧିକାର ଏବଂ ପୂର୍ବରୁ ବିଜିତ ବଙ୍ଗଦେଶ ସହିତ ସଂଯୋଗ । |
| ୧୫୯୫ ରେ | - | ବେଲୁଚିସ୍ତାନ ଅଧିକାର । |

୧୫୯୫ ରେ - ପାରସ୍ୟଠାରୁ କାନ୍ଦାହାରକୁ ଛଡ଼ାଇ ନେଇ ଅଧିକାର ।
୧୫୯୯ ରେ - ଦାକ୍ଷିଣାତ୍ୟର ଅହମଦ୍‌ନଗରର ଅଧିକାର ।
୧୬୦୧ ରେ - ଖାନ୍ଦେଶ ରାଜ୍ୟର ଆସିରଗଡ଼ ଅଧିକାର । (ଯାହା ପୂର୍ବରୁ ଅହମଦ୍‌ନଗରଠାରୁ ବିଚ୍ଛିନ୍ନ ହୋଇ ଯାଇଥିଲା ।)

ଏହା ପୂର୍ବରୁ ଆଜମିର, ଗୋଆଲିଅର ଦୁର୍ଗ, ପଂଜାବ, ରାଣୀ ଦୁର୍ଗାବତୀଙ୍କ ଶାସନାଧୀନ 'ଗଣ୍ଡଓଆନା' ରାଜ୍ୟ, ବଙ୍ଗ ଅଧିକାର କରି ସାରିଥିଲେ ।

## ଜାହାଙ୍ଗୀରଙ୍କ ରାଜ୍ୟ ବିସ୍ତାର :

ଆକବରଙ୍କ ମୃତ୍ୟୁ ପରେ (୧୬୦୫ ଖ୍ରୀଷ୍ଟାବ୍ଦ) ତାଙ୍କ ପୁତ୍ର ସେଲିମ୍ ସିଂହାସନରେ ବସିଥିଲେ ''ଜାହାଙ୍ଗୀର ଉପାଧି ଗ୍ରହଣ କରି । ଇଯେ ତାଙ୍କ ପିତାଙ୍କ ଶେଷ ଜୀବନକୁ ପିତାଙ୍କ ବିରୁଦ୍ଧରେ ବିଦ୍ରୋହ କରି ଆହ୍ଲାବାଦରେ ନିଜକୁ ସ୍ୱାଧୀନ ସୁଲତାନ ରୂପେ ଘୋଷଣା କରିଥିଲେ ।

ଜାହାଙ୍ଗୀର ରାଜ୍ୟବିସ୍ତାର କରିବାକୁ ଇଚ୍ଛା କରି ଆକବର ଯେଉଁ ଅଞ୍ଚଳଗୁଡ଼ିକୁ ଜୟ କରିବାରେ ଅକ୍ଷମ ହୋଇଥିଲେ ସେଇ ସେଇ ଅଞ୍ଚଳର ରାଜ୍ୟଗୁଡ଼ିକୁ ଜୟ କରିଥିଲେ ।

୧୬୧୪ ରେ - ମେବାର ଜୟ କରିଥିଲେ ।
୧୬୧୫ ରେ - କାଙ୍ଗଡା ଦୁର୍ଗ ଅବରୋଧ କରିଥିଲେ । କିନ୍ତୁ ଏହା ନିଜ ଦଖଲକୁ ଆଣିବାକୁ ୫ ବର୍ଷ ଲାଗିଥିଲା ।
୧୬୨୨ ରେ - କାଶ୍ମୀରର ଏକ ଛୋଟ ରାଜ୍ୟ କିସତ୍‌ଓୟାର ଜୟ କରିଥିଲେ ।
୧୬୦୮ ରୁ ୧୬୧୨ପର୍ଯ୍ୟନ୍ତ - ବଙ୍ଗଳା ଯଦିଓ ମୋଗଲ ଶାସନାଧୀନ ହୋଇଥିଲା ତେବେ ସଂପୂର୍ଣ୍ଣ ଅକ୍ତିଆରକୁ ଆସିବାକୁ ଚାରି ବର୍ଷ ଲାଗିଥିଲା । ବଙ୍ଗଳା ବିଦ୍ରୋହୀଙ୍କ ଦ୍ୱାରା ନିର୍ମିତ 'ଧୁନ୍ଧୁମା' ଦୁର୍ଗ ମୋଗଲ ସେନା ଅଧିକାର କରି ବଙ୍ଗଳାକୁ ସଂପୂର୍ଣ୍ଣ ଅକ୍ତିଆରକୁ ଆଣିଥିଲେ ।
୧୬୨୧ ରେ - ଅହମଦ୍‌ନଗର ଅଧିକାର ।

ଅହମଦ୍‌ନଗର ଜୟ କରିବାର ପୁରସ୍କାର ସ୍ୱରୂପ ଜାହାଙ୍ଗୀର ନିଜ ୨ୟ ପୁତ୍ର 'ଶାହାଜାହାନ୍' ଉପାଧି ଦେଇ ଗୁଜୁରାଟର ସମ୍ରାଟ କରିଦେଲେ । କିନ୍ତୁ 'ଶାହାଜାହାନ' ପାଲଟିଗଲେ ନିଜ ରାଣୀ ନୁରଜାହାନଙ୍କ ପାଖରେ ସ୍ତ୍ରୈଣ । ନୁରଜାହାନଙ୍କ କାର୍ଯ୍ୟକଳାପରେ ଶାସନ କ୍ଷେତ୍ରରେ ବିଘ୍ନ ସୃଷ୍ଟି ହେବାର ଆଶଙ୍କା ସୃଷ୍ଟି ହେଲା ଶାହାଜାହାନଙ୍କ ମନରେ । ଶେଷକୁ ୧୬୨୨ରେ ନିଜ ପିତାଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରିଥିଲେ । ମାତ୍ର ପରାସ୍ତ ହୋଇ ଗୁଜୁରାଟର ଦାୟିତ୍ୱ ହରାଇଥିଲେ । ଶେଷରେ ୧୬୨୭ ଖ୍ରୀ.ରେ ଜାହାଙ୍ଗୀରଙ୍କ ମୃତ୍ୟୁ ପରେ ସିଂହାସନରେ ବସି ଶାହାଜାହାନ ପ୍ରଥମେ ହୁକୁମ୍ ଦେଲେ ଅବିଳମ୍ବେ ନିକଟତମ ଆତ୍ମୀୟମାନଙ୍କୁ ହତ୍ୟା କରିବାକୁ ।

ଶାହାଜାହାନ୍‌ଙ୍କ ଅମଳର ଉଲ୍ଲେଖନୀୟ ଘଟଣା ଥିଲା ୧୬୩୨ ଖ୍ରୀ. ରେ 'ହୁଗୁଳି' ଦଖଲ । ସେଠାରୁ ୪ ହଜାର ପର୍ତ୍ତୁଗୀଜ୍‌ଙ୍କୁ ଆଗ୍ରାକୁ ପଠା ଯାଇଥିଲା । ଯେଉଁମାନେ ସେଠାରେ ଇସ୍‌ଲାମ୍ ଧର୍ମ ଗ୍ରହଣ କରି ନଥିଲେ ସେମାନଙ୍କୁ ହତ୍ୟା କରା ଯାଇଥିଲା ।

ଶାହାଜାହାନ୍‌ଙ୍କ ଉଦ୍ଦେଶ୍ୟରେ ୧୬୩୨ ଖ୍ରୀ.ରେ ଅହମଦ୍‌ନଗର ସଂପୂର୍ଣ୍ଣ ଦଖଲକୁ ଆସିବା ପରେ 'ବିଜାପୁର' ଆକ୍ରମଣ କରା ଯାଇଥିଲା । ଶାହାଜାହାନ୍‌ଙ୍କ ୩ୟ ପୁତ୍ର ଆଉରଙ୍ଗଜେବ୍ ନିଯୁକ୍ତ ହେଲେ ଦାକ୍ଷିଣାତ୍ୟର ଶାସନକର୍ତ୍ତାରୂପେ ।

୧୬୫୬ ଖ୍ରୀ. ରେ ଶାହାଜାହାନ ଅସୁସ୍ଥ ହୋଇ ପଡ଼ିବା ପରେ ଚାରିପୁତ୍ରଙ୍କ ମଧ୍ୟରେ କ୍ଷମତା ପାଇଁ ସଂଘର୍ଷ ଲାଗି ରହିଲା ଦୁଇ ବର୍ଷରୁ ଅଧିକ କାଳ । ଆଉରଙ୍ଗଜେବ୍ ସେଥିରେ ବିଜୟୀ ହୋଇଥିଲେ ।

ଆଉରଙ୍ଗଜେବ୍ ଥିଲେ ଅସହିଷ୍ଣୁ ପ୍ରକୃତିର । ତାଙ୍କ ରାଜତ୍ୱ କାଳ (୧୬୫୮ରୁ ୧୭୦୭) ମଧ୍ୟରେ ସେ ଯୁଦ୍ଧ ଲିପ୍ତ ରହିଥିଲେ । ତାଙ୍କ ସମୟରେ ସେନାବାହିନୀ ସଂଖ୍ୟା ବଢ଼ିଥିଲା ସତ କିନ୍ତୁ ସେନାବାହିନୀର ଯୁଦ୍ଧ କ୍ଷମତା କ୍ରମାଗତ ହ୍ରାସ ପାଇ ଚାଲିଥିଲା । ସେ ଥିଲେ ଉତ୍କୋଚ ଦେବାରେ ସର୍ବଶ୍ରେଷ୍ଠ ସମ୍ରାଟ । ଉତ୍କୋଚ ଦେଇ ସେ ଯୁଦ୍ଧ ଜିତୁ ଥିଲେ , ପରାକ୍ରମରେ ନୁହେଁ । ଯେଥିପାଇଁ ପ୍ରଚୁର ଅର୍ଥ ଦରକାର ହେଉଥିଲା । ଜାଗିରଦାରମାନେ ଅନବରତ ଯୁଦ୍ଧ ଲାଗି ରହିଥିବାରୁ ଦେଇ ଦେଇ ନିଃସ୍ୱ ହୋଇଗଲେ । ଅଶ୍ୱାରୋହୀ ସୈନ୍ୟ ପୋଷିବାକୁ ଅର୍ଥ କୁଳେଇଲା ନାହିଁ । ସୈନ୍ୟମାନେ ବେତନ ପାଇଲେ ନାହିଁ । ତେଣୁ ଯେ ସବୁ ଭରଣା ପାଇଁ ସୁବାଦାରଠାରୁ ସୈନ୍ୟ ପର୍ଯ୍ୟନ୍ତ ସମସ୍ତେ ଲାଗିପଡ଼ିଲେ ଲୁଣ୍ଠନ ପାଇଁ । ଲୁଣ୍ଠନ ଯେମିତି ହୋଇଗଲା ସେମାନଙ୍କର ନୈତିକ କର୍ତ୍ତବ୍ୟ, ଜନ୍ମଗତ ଅଧିକାର ।

**ଧର୍ମାନ୍ଧତା :**

ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର ୧୬୬୫ରୁ ୧୬୬୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବଳବତ୍ତର ରହିଥିଲା ।

୧- ୧୬୪୪ ଖ୍ରୀଷ୍ଟାବ୍ଦରେ ଆଉରଙ୍ଗଜେବ ଗୁଜୁରାଟର ସୁବାଦାର ଥିଲାବେଳେ ଅହମଦାବାଦରେ ନିର୍ମିତ ହୋଇଥିବା 'ଚିନ୍ତାମଣି ମନ୍ଦିର'ରେ ଗୋହତ୍ୟା କରାଇ ଉକ୍ତ ମନ୍ଦିରକୁ ମସ୍‌ଜିଦ୍ ରୂପେ ବଦଳାଇ ଦେଇଥିଲେ ।

୨- ଆଉରଙ୍ଗଜେବ ବାଦଶାହା ହୋଇଯିବା ପରେ ଏକ ଆଦେଶ ଦେଇଥିଲେ ଓଡ଼ିଶାର କଟକଠାରୁ ମେଦିନୀପୁର ପର୍ଯ୍ୟନ୍ତ ଗାଁ ଗହଳିରେ ଥିବା ମନ୍ଦିର ମଧ ଭାଙ୍ଗି ଦିଆଯାଉ ।

୩- ତାଙ୍କରି ବିନାଶକାରୀ ଦୃଷ୍ଟିରୁ ଦ୍ୱିତୀୟ ସୋମନାଥ ମନ୍ଦିର ବିଶ୍ୱନାଥ ମନ୍ଦିର ଓ ମଥୁରାର କେଶବରାମଜୀ ମନ୍ଦିର ମଧ ବାଦ ଯାଇ ନଥିଲା ।

୪- ୧୬୮୦ ଖ୍ରୀଷ୍ଟାବ୍ଦରେ ଆମ୍ବେର ରାଜ୍ୟର ସ୍ୱାମୀଭକ୍ତ ରାଜାଙ୍କ ରାଜଧାନୀର ସମସ୍ତ ମନ୍ଦିର ଭାଙ୍ଗି ଦେଇଥିଲେ ।

୫- ଭାରତର ବିଭିନ୍ନ ତୀର୍ଥସ୍ଥଳରେ ବର୍ଷକୁ ଥରେ ନିର୍ଦ୍ଦିଷ୍ଟ ଦିନରେ ହିନ୍ଦୁମାନଙ୍କର ବଡ଼ ବଡ଼ ମେଳା ଅନୁଷ୍ଠିତ ହେଉଥିଲା । ଯେଉଁଠି ଲକ୍ଷାଧିକ ହିନ୍ଦୁ ସ୍ତ୍ରୀ-ପୁରୁଷ ଏକାଠି ହେଉଥିଲେ । ୧୬୬୮ ଖ୍ରୀ.ରେ ଆଉରଙ୍ଗଜେବ ଆଦେଶ ଦେଇଥିଲେ ସମଗ୍ର ଦେଶରେ ଯେପରି ମେଳା ହୋଇପାରିବ ନାହିଁ । (ଔରଙ୍ଗଜେବ, ପୃ-୧୯୮-୨୦୦)

୬- ଯାରି ଭିତରେ ଅନ୍ତର୍ଭୁକ୍ତ ଥିଲା 'ଜିଜିଆ କର' । ଜିଜିଆ କର ହେଉଛି 'ମୁଣ୍ଡ କର' । ଅର୍ଥାତ୍ ଇସଲାମ ଶାସିତ ଦେଶରେ ଅଧିବାସୀ ହୋଇ ଅଣ-ମୁସଲମାନ ରହିଲେ ତାଙ୍କୁ ଜିଜିଆ କର ଦେବାକୁ ପଡ଼େ । ଏହି ପ୍ରଥାର ଆଦ୍ୟ ପ୍ରବର୍ତ୍ତକ ହେଉଛନ୍ତି 'ମହମ୍ମଦ' । ସେ କହିଥିଲେ ଅବିଶ୍ୱାସୀମାନଙ୍କ ସହ ଯୁଦ୍ଧ କର । ସେମାନଙ୍କୁ ଦୟନୀୟ ହୋଇ ଜିଜିଆ କର ଦେବାକୁ ପଡ଼ିବ । (କୋରାନ୍ ନବମ ପରିଚ୍ଛେଦ/ଅଣତିରିଶି ପଙ୍କ୍ତି)

**କର ଦେବା ନିୟମ :**

ଯଦି ଜଣେ ଅଣ-ମୁସଲମାନ ଏହି କର ଅନ୍ୟ କାହା ମାଧ୍ୟମରେ ପଠାଏ, ତାହା ଗ୍ରହଣଯୋଗ୍ୟ ହେବ ନାହିଁ । କରଦାତା ବିଧର୍ମୀ ଚାଲି ଚାଲି ଯାଇ ବିନୟ ସହକାରେ ହାତ ତଳକୁ କରି ମୁସଲମାନ କର ଗ୍ରହୀତାଙ୍କ ସମ୍ମୁଖରେ ଠିଆ ହେବ । ଆସନରେ ଉପବିଷ୍ଟ ହୋଇଥିବା କରଗ୍ରହୀତା ଉର୍ଦ୍ଧ୍ୱହସ୍ତ ହୋଇ ହେ ଜିମ୍ମି (ବିଧର୍ମୀ) ! ''ଲଘୁ ଦଣ୍ଡର ଅର୍ଥ ଦଣ୍ଡ ପ୍ରଦାନ କର'' କହି 'କର' ଗ୍ରହଣ କରିବେ ।

ଭାରତରେ ହିନ୍ଦୁମାନଙ୍କୁ 'ଜିମ୍ମି' କୁହାଯିବା ସହିତ ଜିଜିଆ କର ଧାର୍ଯ୍ୟ ହୋଇ 'ବିଂଶସୂତ୍ରୀ ନିୟମ' ଲାଗୁ କରା ଯାଇଥିଲା । ସେଥିରେ ପ୍ରଥମ ଓ ୨ୟ ନିୟମ ହିନ୍ଦୁ ପୂଜାସ୍ଥାନ ସଂପର୍କୀତ । ୧- ହିନ୍ଦୁମାନେ ନୂତନ ପୂଜାସ୍ଥାନ ନିର୍ମାଣ କରିପାରିବେ ନାହିଁ । ୨-ମୁସଲମାନମାନଙ୍କ ଦ୍ୱାରା ନଷ୍ଟ କରି ଦିଆ ଯାଇଥିବା ପ୍ରାଚୀନ ମନ୍ଦିରକୁ ତିଆରି କରିପାରିବେ ନାହିଁ ।

ଯେ ଚାରିବର୍ଷ ଥିଲା ଧର୍ମାନ୍ଧ ଯୁଗ । ଆଉରଙ୍ଗଜେବ ହୁକୁମ ଦେଇଥିଲେ ହିନ୍ଦୁ ମନ୍ଦିର ଗୁଡ଼ିକୁ ଲୁଣ୍ଠନ କରି ଧ୍ୱଂସ କରିଦେବାକୁ । ଆଉ ସେଇ ଧ୍ୱଂସସ୍ତୁପ ଉପରେ ମସ୍‌ଜିଦ୍ ନିର୍ମାଣ କରିବାକୁ । ଆକବର ଉଠେଇ ଦେଇଥିବା ଜିଜିଆ କର ପୁଣି ୧୬୭୯ରେ ପ୍ରବର୍ତ୍ତନ ହେଲା । ଫଳ ହେଲା -

୧- ଦିଲ୍ଲୀ, ଗୁଜରାଟ ପ୍ରଭୃତି ରାଜ୍ୟରେ ଗଣ ବିଦ୍ରୋହ ସୃଷ୍ଟି,

୨- ମରହଟ୍ଟା, ରାଜପୁତ ଓ ଜାଠମାନେ ବିଦ୍ରୋହ ଆରମ୍ଭ,

୩- ଆଫଗାନ୍‌ମାନଙ୍କର ବିଦ୍ରୋହ ଆରମ୍ଭ,

୪- ମୁସଲମାନମାନଙ୍କର ପୁନଃ ଆକ୍ରମଣ ଆରମ୍ଭ,

୫- ଅନ୍ୟାନ୍ୟ ଛୋଟ ଛୋଟ ଗୋଷ୍ଠୀର ମଧ୍ୟ ମୋଗଲ ସାମ୍ରାଜ୍ୟ ବିରୋଧରେ ସ୍ୱର ଉତ୍ତୋଳନ ।

ଯେତେବେଳକୁ ବାଜି ସାରିଥିଲା ମୋଗଲ ସାମ୍ରାଜ୍ୟର ପତନର ଶେଷ ସାହାନାଇ । ଆଉରଙ୍ଗଜେବଙ୍କ ପରେ ବାହାଦୂର ଶାହା (୧୭୦୭ - ୧୭୧୨), ମହମ୍ମଦ ଶାହା (୧୭୧୯ - ୧୭୪୮), ଅହମ୍ମଦ ଶାହା (୧୭୪୮ - ୧୭୫୪) ରାଜତ୍ୱ କଲେ ମଧ୍ୟ ଅକ୍ଷମ ବ୍ୟକ୍ତିପରି କେବଳ ନୀରବଦ୍ରଷ୍ଟା ଥିଲେ । ଗୋଟିଏ ପରେ ଗୋଟିଏ ଭୂଖଣ୍ଡ ବିଚ୍ଛିନ୍ନ ହୋଇ ଯାଉଥିଲା ମୋଗଲ ସାମ୍ରାଜ୍ୟରୁ । ଗୋଟିକ ପରେ ଗୋଟିଏ ଦୁର୍ଗ ଚାଲି ଯାଉଥିଲା ହାତରୁ । ବଦଳି ଯାଉଥିଲା ମୋଗଲ ସାମ୍ରାଜ୍ୟର ମାନଚିତ୍ର ।



## ═ ତୃତୀୟ ପରିଚ୍ଛେଦ ═




# ପ୍ରଥମ ଆକ୍ରମଣକାରୀ ରକ୍ତବାହୁ

ଶୋଭନଦେବଙ୍କ ରାଜତ୍ୱ କାଳରେ 'ରକ୍ତବାହୁ' ସମୁଦ୍ର ପଥରେ ଆସି ଓଡ଼ିଶା ଆକ୍ରମଣ କଲା । ଶୋଭନଦେବ ୩୧୯ ଖ୍ରୀ.ରୁ ୩୨୩ ଖ୍ରୀ. ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ମାଦାଳାପାଂଜି ଅନୁସାରେ ଶୋଭନଦେବଙ୍କ ୨ୟ ଅଙ୍କରେ ରକ୍ତବାହୁ ଆକ୍ରମଣ କରିଥିଲା । ଏହି ସମୟରେ ଘୋର ଯୁଦ୍ଧ ହୋଇଥିଲା । (ମାଦଳାପାଂଜି- ରକ୍ତବାହୁ ଆସିବା ବାର୍ତ୍ତାପାଇ ପରମେଶ୍ୱରଙ୍କୁ ସୁନୁପୁର ଗୋପନେ ଘେନିଗଲେ । ସେଠାରେ ମଣ୍ଡପ କରାଇ ବିଜେ କରାଇଲେ ୪୫ ବର୍ଷ । ଏ ଉତ୍ତାରୁ ମୋଗଲ ପ୍ରଭାବ ହୋଇଲାକୁ ସେବକ ସେଠାରେ ପରମେଶ୍ୱରଙ୍କୁ ପାତାଳି କରି ଉପରେ ଗଛ ଲଗାଇ ରାଜା ଅନ୍ତର ହୋଇଗଲେ । ପାତିଶାଙ୍କ ଅସୁରା ରକ୍ତବାହୁ ଶ୍ରୀପୁରୁଷୋତ୍ତମ ବୁଲି ଅଇଲା ।) ରକ୍ତବାହୁ ଜାହାଜରେ ସମୁଦ୍ର ପଥରେ ଆସି 'କନିକା'ଠାରେ ବୋଇତରୁ ଓହ୍ଲାଇ ପୁରୁଷୋତ୍ତମରେ ପ୍ରବେଶ ହେଲା । ରକ୍ତବାହୁ ପୁରୀରେ ଜଗନ୍ନାଥଙ୍କୁ ନ ଦେଖି ସହର ମଧ୍ୟରେ ଅତ୍ୟାଚାର କଲା । ଏହି ସମୟରେ ବାଙ୍କି ମୁହାଁଣ ଭାଙ୍ଗି ପାଣି ସହରରେ ପ୍ରବେଶ କଲା, ତେଣେ ବଡ଼ମୂଳ ଘାଟି ସରିକି ସମୁଦ୍ର ମାଡ଼ି ଯାଇଥିଲା ଏହି ସମୟରେ ଚିଲିକା ହେଲା : (ପ୍ରାଚୀନ ଉତ୍କଳ)

ଶୋଭନଦେବ ୫ ଅଙ୍କରେ ପଳାୟନ କରି ଝାଡ଼ଖଣ୍ଡ ଭିତରେ ସ୍ୱର୍ଗପ୍ରାପ୍ତି ହେଲେ । ରକ୍ତବାହୁକୁ ମାଦାଳାପାଂଜି 'ମୋଗଲ' ଆଖ୍ୟା ଦେଇଛି । ହଣ୍ଟରଙ୍କ ମତରେ ରକ୍ତବାହୁ ବୌଦ୍ଧ ଥିଲେ । ଏହାକୁ ଜଗବଂଧୁ ସିଂହ ସମର୍ଥନ କରିଛନ୍ତି । ତାଙ୍କ ମତରେ ... ବିଷ୍ଣୁପୁରାଣରୁ ଜଣାଯାଏ ଯେ ଭାରତର ପଶ୍ଚିମ ସୀମାନ୍ତବାସୀମାନେ ଯବନ ନାମରେ ଆଖ୍ୟାତ ହେଉଥିଲେ । ଆଲେକ୍‌ଜାଣ୍ଡାରଙ୍କ ପରେ ଗ୍ରୀକ୍‌ମାନେ ଯବନ ପଦବାଚ୍ୟ ହେଲେ । କାବୁଲ, ଇରାନ୍, କାଶ୍ମୀର, ସିନ୍ଧୁଦେଶ ଓ ଦିଲ୍ଲୀରୁ ଆସିଥିବା ଆକ୍ରମଣକାରୀମାନଙ୍କୁ ମାଦାଳାପାଂଜି ଯବନ ଆଖ୍ୟା ଦେଇଛି । ବୌଦ୍ଧମାନେ ଆକ୍ରମଣକାରୀ ହେଲାରୁ ସେମାନେ ଯବନ ନାମରେ ପରିଚିତ ହେଲେ । ସୁତରାଂ ରକ୍ତବାହୁ ବୌଦ୍ଧ ଧର୍ମାବଲମ୍ବୀ ଥିଲା ।

ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ର ରକ୍ତବାହୁକୁ ବୌଦ୍ଧ ବୋଲି ଗ୍ରହଣ କରିପାରି ନାହାନ୍ତି ।

ତେବେ କ'ଣ 'ରକ୍ତବାହୁ' ଏକ ସାଂକେତିକ କିମ୍ୱା ଛଦ୍ମ ନାମ ! ଠିକ୍ କଳାପାହାଡ଼ ନାମ ପରି ! କଳାପାହାଡ଼ ନାମ ଯେପରି ପ୍ରକୃତ ନାମ ନୁହେଁ ବୋଧହୁଏ ରକ୍ତବାହୁ ନାମ ସେପରି ପ୍ରକୃତ ନାମ ନୁହେଁ । ରକ୍ତ ହୋଇଛି ବାହୁ ଯାହାର ନ୍ୟାୟରେ ବୋଧହୁଏ ନିଷ୍ଠୁର ରକ୍ତାକ୍ତ ଆକ୍ରମଣ କରିବାରୁ ତାର ନାମ 'ରକ୍ତବାହୁ' ହୋଇପାରେ ।

## ରକ୍ତବାହୁ ମୁସଲମାନ ନୁହେଁ :

ମାଦଳାପାଂଜି ମତକୁ ଯଦି ଗ୍ରହଣ କରାଯାଏ ତେବେ ୩୧୯ ଖ୍ରୀ.ରୁ ୩୨୩ ଖ୍ରୀ. ମଧ୍ୟରେ ମୁସଲମାନ ଧର୍ମ ସୃଷ୍ଟି ହୋଇ ନଥିଲା । ରକ୍ତବାହୁ ଯଦି ସେଇ ସମୟରେ ପୁରୀ ଆକ୍ରମଣ କରିଥାଏ ତେବେ ସେ ମୁସଲମାନ ଧର୍ମାବଲମ୍ବୀ ନୁହେଁ । କାରଣ ମୁସଲମାନ ଧର୍ମସଂସ୍ଥାପକ ମହାତ୍ମା ମହମ୍ମଦ ୫୭୦ ଖ୍ରୀଷ୍ଟାବ୍ଦରେ ଆରବଦେଶର ମକ୍କା ନଗରରେ ଜନ୍ମଗ୍ରହଣ କରିଥିଲେ । ମହମ୍ମଦଙ୍କ ମତରେ ପୌତ୍ତଳିକତା ପ୍ରକୃତ ଧର୍ମ ନୁହେଁ । ଏକେଶ୍ୱରବାଦକୁ ସେ ପ୍ରଚାର କରି ଏକେଶ୍ୱର ଉପାସନାକୁ ପ୍ରଧାନ ଧର୍ମ ବୋଲି କହୁଥିଲେ ।

ଯେ ଧର୍ମର ପ୍ରଚାର ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା । ସେ ବିଦାୟ ନେଲେ ୬୨୩ ଖ୍ରୀଷ୍ଟାବ୍ଦରେ । ତାଙ୍କ ପରେ ତାଙ୍କ ଶିଷ୍ୟମାନେ ଗୁରୁଙ୍କ ଉଦ୍ଦେଶ୍ୟ ସାଧିତ କରିବା ପାଇଁ ଯୁଦ୍ଧ ହିଁ ପ୍ରଧାନ ଉପାୟ ବୋଲି ବିଚାରୀ ବିଦେଶକୁ ଯୁଦ୍ଧଯାତ୍ରା ଆରମ୍ଭ କରିଥିଲେ । ଏହିଠାରେ ହିଁ ଧର୍ମପ୍ରଚାର ପ୍ରବୃତ୍ତି ଧନାପହରଣ ପ୍ରବୃତ୍ତିରେ ପରିଣତ ହେଲା । ଧନାପହରଣ ପ୍ରବୃତ୍ତି କ୍ରମେ ରାଜ୍ୟ ସ୍ଥାପନ ପ୍ରବୃତ୍ତିରେ ପରିଣତ ହେଲା (ପ୍ରା.ଉ. ୨ୟ, ପୃ-୩) ।

୧୧୯୩ ଖ୍ରୀ. ରେ ଆଫଗାନିସ୍ଥାନର 'ଘୋର' ପ୍ରଦେଶବାସୀ ଉଦ୍ଦିନ ମହମ୍ମଦ ଦିଲ୍ଲୀ ଅଧିକାର କଲେ । କୁତବ୍‌ଉଦ୍ଦିନ ହେଲେ ତାଙ୍କର ପ୍ରତିନିଧି ।

ବକତିଆର ଖିଲିଜି ୧୨୦୩ ଖ୍ରୀ.ରେ ବଙ୍ଗ ଅଧିକାର କଲେ । ୧୨୧୨ ଖ୍ରୀ.ରେ ଗିୟାସ୍‌ଉଦ୍ଦିନ ଓଡ଼ିଶା ରାଜାଙ୍କୁ କର ଦେବାକୁ ବାଧ କରିବାରୁ ଲାଙ୍ଗୁଳା ନରସିଂହ ଦେବଙ୍କ ଦ୍ୱାରା ତାହା ଅଗ୍ରାହ୍ୟ ହୋଇଥିଲା । ତା'ପରେ ଅନେକ ଚେଷ୍ଟା କରି ମୁସଲମାନମାନେ ପରାଜିତ ହେଲେ ।

୧୨୪୩ରେ ତୋଗାନ ଖାଁ ଓଡ଼ିଶା ଆକ୍ରମଣ କରି ପରାସ୍ତ ହୋଇ ୧୨୫୩ ରେ ପୁନଃ ଆକ୍ରମଣରେ ମଧ୍ୟ ପରାସ୍ତ ହେଲେ ।

୧୩୦୯ରେ ଓଡ଼ିଶା ରାଜା ମୁସଲମାନମାନଙ୍କ ସାହାଯ୍ୟ ନେଲେ ପ୍ରଜାମାନଙ୍କୁ ବିରୋଧ କରିବା ପାଇଁ । ମୁସଲମାନମାନେ ୧୨୦୩ ଖ୍ରୀ. ରେ ବଙ୍ଗ ଅଧିକାର କରି ସାରିଥିଲେ ମଧ୍ୟ ୧୩୦୯ ମସିହା ପର୍ଯ୍ୟନ୍ତ ଓଡ଼ିଶା ଅଧିକାର କରି ପାରି ନଥିଲେ । ଅପରନ୍ତୁ ଅନେକ ବାର ପରାଜିତ ହୋଇଥିଲେ । ୧୩୦୯ରେ ଓଡ଼ିଶା ରାଜା ସେମାନଙ୍କ ସାହାଯ୍ୟ ନେବାରୁ ସେମାନେ ଓଡ଼ିଶାରେ ସେହିଦିନୁ ଭିତ୍ତି ପକାଇବା ଆରମ୍ଭ କଲେ । କିନ୍ତୁ ୧୩୦୯ ମସିହାଠାରୁ ୧୪୫୧ ମସିହା ପର୍ଯ୍ୟନ୍ତ ମୁସଲମାନମାନେ ଓଡ଼ିଶା ଆକ୍ରମଣରୁ ବିରତ ଥିଲେ । ୧୪୫୧ ମସିହାରେ ପ୍ରଥମେ ଦଳେ ମୁସଲମାନ ଆସି ଓଡ଼ିଶାରେ ଲୁଟପାଟ ଆରମ୍ଭ କଲେ ।

ଅତଏବ ୫୭୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ମାଦଳାପାଂଜିରୁ ଯେଉଁ ମୁସଲମାନ ଆକ୍ରମଣ କଥା ଜଣାଯାଏ ସେମାନେ ଯବନ ନାମରେ ଅଭିହିତ । କାରଣ ୫୭୦ ପୂର୍ବରୁ ମୁସଲମାନ ଧର୍ମ ସୃଷ୍ଟି ହୋଇ ନଥିଲା । ତେଣୁ ସେହି ଯବନମାନେ ମୁସଲମାନ ନୁହଁନ୍ତି ଅପରନ୍ତୁ ଅନ୍ୟାନ୍ୟ ବୈଦେଶିକ ଆକ୍ରମଣକାରୀମାନଙ୍କୁ 'ଯବନ' କୁହା ଯାଉଥିଲା ।

**ଯବନ :**

ଏହି ଶବ୍ଦ ବିଶେଷ ଭାବରେ ହିନ୍ଦୁ ଲେଖକମାନେ ବିଦେଶୀମାନଙ୍କ ପାଖରେ ବ୍ୟବହାର କରିଛନ୍ତି । ପରବର୍ତ୍ତୀ କାଳରେ ଏହି ଶବ୍ଦ ମୁସଲମାନମାନଙ୍କ ପାଇଁ ମଧ୍ୟ ବ୍ୟବହୃତ ହେଲା ।

ବ୍ୟୁତ୍ପତ୍ତି ଦୃଷ୍ଟିରୁ ଏହି ଶବ୍ଦ 'ୟୋନ' ଶବ୍ଦରୁ ହୋଇଛି । ଯାହାକି ଅୟୋନିଜ ପର୍ଯ୍ୟାୟଭୁକ୍ତ, ମୂଳତଃ ଯାର ତାତ୍ପର୍ଯ୍ୟ ଅୟୋନିଜା ନିବାସୀମାନଙ୍କ ସହିତ ସଂଯୋଜିତ (ଭାରତୀୟ ଇତିହାସ କୋଶ, ଲେ-ସଚ୍ଚିଦାନନ୍ଦ ଭଟ୍ଟାଚାର୍ଯ୍ୟ, ପୃ-୩୮୯) ।

ଏହି ମତ ବାଲ୍ମୀକି ରାମାୟଣରେ ଦେଖିବାକୁ ମିଳେ । ବିଶ୍ୱାମିତ୍ରଙ୍କ ସୈନିକମାନଙ୍କୁ ସଂହାର କରିବା ପାଇଁ ବଶିଷ୍ଠଙ୍କର 'ଶବଳୀ' ଗାଈ ଯବନମାନଙ୍କୁ ଉତ୍ପନ୍ନ କରିଥିଲେ । ଯେଉଁମାନେ କି ଅତ୍ୟନ୍ତ ତେଜସ୍ୱୀ, କାନ୍ତିମାନ୍ ସୁବର୍ଣ୍ଣବସ୍ତ୍ର ବିଭୂଷିତ, ତୀକ୍ଷ୍ଣ ଅସ୍ତ୍ରଧାରୀ ଥିଲେ (୧/୫୪-୨୦,୨୨) । ବିଶ୍ୱାମିତ୍ର ୟେମାନଙ୍କ ଉପରେ ବିଭିନ୍ନ ଅସ୍ତ୍ର ପ୍ରୟୋଗ କରିବା ପରେ ଯବନମାନେ ବ୍ୟାକୁଳ ହୋଇ ଉଠିଥିଲେ (୧/୫୪,୨୩) । ୟେମାନେ ବଶିଷ୍ଠଙ୍କର 'ଶବଳୀ' ଗାଈର ଯୋନି ଦେଶରୁ ଉତ୍ପନ୍ନ ହୋଇଥିଲେ (୧/୫୫,୩) ।

**ଯବନ ବାଖତ୍ରୀ ରାଜବଂଶ :**

ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ବାଖତ୍ରୀର ଯବନ କ୍ଷତ୍ରିୟ 'ଡ଼ିୟୋଡ଼ୋରସ୍' ଏହି ରାଜବଂଶ ପ୍ରବର୍ତ୍ତନ କରିଥିଲେ ଯେଉଁମାନେ କି ସୀରିୟା (ଶ୍ୟାମ) ଯବନ ରାଜାଙ୍କର ଅଧୀନତାକୁ ପରିତ୍ୟାଗ କରି ସ୍ୱତନ୍ତ୍ର ରାଜା ହୋଇଥିଲେ । ଏହି ନୂତନ ରାଜବଂଶ ଖ୍ରୀ.ପୂ. ୧୫୫ରେ ସମାପ୍ତ ହୋଇ ଯାଇଥିଲା । ଏହି ବଂଶରେ ବହୁ ରାଜା ହୋଇଥିବାର ଜଣାଯାଏ । ରାଜା 'ଡ଼େମେଟ୍ରିୟସ୍ (୨୦୦ ଖ୍ରୀ.ପୂ. ରୁ ୧୯୦ ଖ୍ରୀ.ପୂ.) ଉତ୍ତର ଭାରତର ଅଧିକାଂଶ ଅଂଚଳ ନିଜ ଶାସନାଧିନ କରିବାରେ ସଫଳ ହୋଇଥିଲେ । ଯେଉଁଥିରେ କି କାବୁଲ, ପଂଜାବ ଏବଂ ସିନ୍ଧପ୍ରଦେଶ ସାମିଲ ଥିଲା । 'ରାଜନିର୍ଘଣ୍ଟ'ରେ 'ତୁରସ୍କ'କୁ ଯବନ ଦେଶରୂପେ ବର୍ଣ୍ଣନ ମିଳେ (ଇ.ଶବ୍ଦ କଳ୍ପଦ୍ରୁମଃ) । ୟେଥିରୁ ଜଣାପଡୁଛି ପଶ୍ଚିମ-ଉତ୍ତର ଭାରତର ସୀମାରେ ବହୁ ଛୋଟ ଛୋଟ ଯବନ ରାଜ୍ୟ ରହିଥିଲା ।

ଏହି ଯବନ ରାଜାମାନଙ୍କ ମଧ୍ୟରେ ''ମିନାଣ୍ଡର'' ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ମିଳିନ୍ଦପହ୍ନୋ ନାମକ ପ୍ରସିଦ୍ଧ ବୌଦ୍ଧ ଗ୍ରନ୍ଥର 'ମିଳିନ୍ଦ' ହିଁ ମିନାଣ୍ଡର ଅଟନ୍ତି ।

(ଭା.ଇ.କୋ, ପୃ-୩୮୯) ।

**ଯବନ-ବୌଦ୍ଧ-ମୂର୍ତ୍ତିକଳା :**

ଏହି ମୂର୍ତ୍ତିକଳାର ଶୈଳୀକୁ 'ଗାଂଧାର ଶୈଳୀ' କୁହାଯାଏ । ଏହି ଶୈଳୀର ବୌଦ୍ଧ ମୂର୍ତ୍ତିମାନଙ୍କ ଉପରେ ଯବନ କଳାର ପ୍ରଭାବ ସ୍ପଷ୍ଟ ଦୃଷ୍ଟିଗୋଚର ହୁଏ । ଏହି ଶୈଳୀର ବୁଦ୍ଧମୂର୍ତ୍ତି ଗୁଡ଼ିକ ଯବନ ଦେବତା 'ଅପୋଲ'ଙ୍କ ମୂର୍ତ୍ତି ସହିତ ମିଶୁ ଥିବାର ଦେଖାଯାଏ । ଏହି ମୂର୍ତ୍ତିଗୁଡ଼ିକୁ ଯବନ ଶୈଳୀରେ ପୋଷାକ ପରିଧାନ କରା ଯାଇଥିଲା । ସାମାନ୍ୟତଃ ଯବନ ଦେବୀ

ଦେବତାମାନଙ୍କୁ ଭାରତୀୟ ବୌଦ୍ଧ ପୋଷାକ ଏବଂ ଆକୃତିରେ ଦେଖେଇ ବୌଦ୍ଧ ନାମକରଣ କରିଦିଆ ଯାଉଥିଲା । ଏହି ଯବନ-ବୌଦ୍ଧ ମୂର୍ତ୍ତିକଳା ଶୈଳୀକୁ ହିଁ ଗାନ୍ଧାର ଶୈଳୀ କୁହା ଯାଉଥିଲା । ଯାର ପ୍ରାରମ୍ଭ କାଳ ପ୍ରଥମ ଶତାବ୍ଦୀ ହେଲେ ମଧ୍ୟ ବିକାଶ କାଳ ୨/୩ୟ ଶତାବ୍ଦୀ, ଯେତେବେଳେ କି ଭାରତରେ ରାଜା ଥିଲେ କୁଶାଣ ବଂଶର ରାଜା କନିଷ୍କ ।

ବର୍ତ୍ତମାନ ଭାରତର ଅନେକ ଅଂଚଳରେ ଥିବା ବୌଦ୍ଧ ମୂର୍ତ୍ତିକଳା ଗୁଡ଼ିକରେ ଯବନ ଶୈଳୀ ମିଶ୍ରିତ । ମନେହୁଏ ବୌଦ୍ଧଧର୍ମ ରାଜପୃଷ୍ଠପୋଷକତା ଲାଭ କରିବା ପରେ ସମସ୍ତ ଯବନ ମୂର୍ତ୍ତିକଳା 'ଯବନ-ବୌଦ୍ଧ-ମୂର୍ତ୍ତିକଳା' ରୂପେ ପରିଚିତ ହୋଇଛି । ଏହାର ବିକଳ୍ପ ଧାରା ଚିନ୍ତା କଲେ ଜଣାପଡୁଛି ବୌଦ୍ଧ ଏବଂ ହିନ୍ଦୁ ଧର୍ମର ସଂଘର୍ଷ କାଳର ମଧ୍ୟାନ୍ତରରେ ବୌଦ୍ଧମାନଙ୍କୁ ହିନ୍ଦୁମାନେ ଆକ୍ରମଣକାରୀ ଆଖ୍ୟା ଦେଲାବେଳେ ଯବନ ପର୍ଯ୍ୟାୟରେ ବିବେଚନା କରିଛନ୍ତି । ସେତିକିବେଳେ ହୁଏତ ଯବନଧାରା ଓ ବୌଦ୍ଧଧାରାର କିଛି ସମ୍ମିଶ୍ରଣ ଘଟି ଥାଇପାରେ ।

## ପୌରାଣିକ ସ୍ୱରୂପ :

ବ୍ରହ୍ମାଣ୍ଡ ପୁରାଣ ଯବନମାନଙ୍କୁ ଏକ ଜାତି ରୂପେ ଗାନ୍ଧାର, ପାରଦ ଓ ପହ୍ଣ ଆଦିଙ୍କ ସହିତ ଉଲ୍ଲେଖ କରିଛି (ବ୍ର.ପୁ- ୧/୧୮/୪୪, ବାୟୁ- ୯୮/୧୦୭-୧୧୦) । ବାୟୁ ପୁରାଣ ଯବନମାନଙ୍କୁ ମ୍ଳେଛ ପର୍ଯ୍ୟାୟଭୁକ୍ତ କରିଛନ୍ତି । ଅନ୍ୟତ୍ର ବାୟୁ ପୁରାଣ ଯବନମାନଙ୍କୁ କ୍ଷତ୍ରିୟ ରୂପେ ବର୍ଣ୍ଣନା କରିଛନ୍ତି (ବାୟୁ- ୮୮/୧୨୧-୧୨୨, ୧୨୪, ୧୨୭-୧୨୯, ୧୪୨-୧୪୩, ଭାଗ-୯/୮/୫, ବ୍ରହ୍ମାଣ୍ଡ-୩/୪୮/୪୪) । ଯବନମାନେ ଭାରତ ବର୍ଷର 'ସାଗର ସଂବୃତ' ନାମକ ଦ୍ୱୀପର ପଶ୍ଚିମ-ଭାଗ ନିବାସୀ ଥିଲେ (ବ୍ରହ୍ମାଣ୍ଡ-୨/୧୬/୧୦, ବାୟୁ-୪୫/୮୦-୮୨) । ମତ୍ସ୍ୟ ପୁରାଣ କୁହେ ଯବନମାନେ ତୁର୍ବସୁଙ୍କ ପୁତ୍ର ଥିଲେ (ମତ୍ସ୍ୟ-୩୪/୩୦- ତୁର୍ବସୋଃ ଯବନାଃ ସୁତାଃ) ।

ମହାଭାରତରେ ଯେମାନଙ୍କର ଉଲ୍ଲେଖ ଉତ୍ତରାପଥର କମ୍ବୋଜ, ଗାନ୍ଧାର, କିରାତ ପ୍ରଭୃତିଙ୍କ ସହ ହୋଇଛି । ମହାଭାରତ ଯୁଦ୍ଧରେ ଯବନମାନେ କୌରବମାନଙ୍କର ସହାୟକ ଥିଲେ, ଦକ୍ଷିଣରେ ଏମାନଙ୍କୁ ସହଦେବ, ପଶ୍ଚିମରେ ନକୁଳ ପରାସ୍ତ କରିଥିଲେ । ଦିଗ୍‌ବିଜୟ ସମୟରେ କର୍ଣ୍ଣ ମଧ୍ୟ ଏମାନଙ୍କୁ ପରାଜିତ କରିଥିଲେ ।

''ଗୌତମ ଧର୍ମଶାସ୍ତ୍ର'' ଅନୁସାରେ ଯବନମାନେ ଶୂଦ୍ରା ସ୍ତ୍ରୀ ତଥା କ୍ଷତ୍ରିୟ ପୁରୁଷଠାରୁ ଉତ୍ପନ୍ନ ହୋଇଥିଲେ । ମହାଭାରତରେ ୧୫୭ଟି ଜନପଦ ମଧ୍ୟରେ ୨୩ତମ ଜନପଦ ରୂପେ ଉତ୍କଳ ଆସୁଥିବା ବେଳେ ୪୩ତମ ଜନପଦ ରୂପେ 'ବାହିକ', ୫୨ତମ ଜନପଦ ରୂପେ 'ଅପବାହ'ର ନାମ ଅଛି (ମହାଭାରତ, ଭୀଷ୍ମ, ଅ୯-ଶ୍ଳୋ-୩୯-୪୧) । ଅତଏବ ଏହି ବାହିକ କିମ୍ବା ଅପବାହର ରାଜା 'ବାହୁ' ଉପାଧିଧାରୀ ଥାଇ ପାରନ୍ତି ।

ମହାଭାରତ ଯୁଦ୍ଧ ସମୟରେ ହଜାର ହଜାର ଯବନ ସୈନ୍ୟ କୌରବ ପକ୍ଷରେ ଥିଲେ (ମ.ଭା-୬/୮୭/୧୦, ବୃହଦ୍ ବଳାତ୍ ତତଃ ଶୂରସ୍ତ୍ରିଗର୍ତ୍ତଃ ପ୍ରସ୍ଥଳାଧିପଃ । କାମ୍ବୋଜୈର୍ବହୁଭିଃ ସାର୍ଧଂ ଯବନୈଶ୍ଚ ସହସ୍ରଶଃ) ।

ଯବନମାନଙ୍କ ଉତ୍ପତ୍ତି ସମ୍ବନ୍ଧରେ ରାମାୟଣ ବର୍ଣ୍ଣିତ 'ଶବଳୀ' ଉପାଖ୍ୟାନ ଉପରେ ବିଚାର କରାଯାଉ । ଗାଧି ସୁତ ବିଶ୍ୱାମିତ୍ର ଏକ ଅକ୍ଷୌହିଣୀ ସେନା ନେଇ ଭ୍ରମଣ ଉଦ୍ଦେଶ୍ୟରେ ବାହାରି ସଂଯୋଗବଶତଃ ବଶିଷ୍ଠଙ୍କ ଆଶ୍ରମରେ ପହଞ୍ଚିଲେ । ବଶିଷ୍ଠ ନିଜ ଗାଈ ଶବଳାଙ୍କୁ ଷଡ୍‌ରସ ପୂର୍ଣ୍ଣ ଭୋଜ୍ୟ, ଭକ୍ଷ୍ୟ, ପେୟ, ଚୋଷ୍ୟ ଏବଂ ଲେହ୍ୟ ଆଦି ପଦାର୍ଥ ଉପସ୍ଥିତ କରିବା ପାଇଁ ପ୍ରାର୍ଥନା କଲେ । ଶବଳା ତାହା କରନ୍ତେ ବିଶ୍ୱାମିତ୍ରଙ୍କ ସେନାବାହିନୀ ତାହା ଉପଭୋଗ କଲେ । ବିଶ୍ୱାମିତ୍ର ଏହି ଚମତ୍କାର ଜାଣିବା ପରେ ଏକ ଲକ୍ଷ ଗାଈ ବଦଳରେ ଶବଳାକୁ ନେବା ପାଇଁ ଚାହିଁବାରୁ ବଶିଷ୍ଠ ରାଜି ହେଲେ ନାହିଁ । ବିଶ୍ୱାମିତ୍ର ବଳପୂର୍ବକ ନେଇଯିବାକୁ ଉଦ୍ୟତ ହେବାରୁ ଶବଳା ବଶିଷ୍ଠଙ୍କ ଠାରୁ ଅନୁମତି ନେଇ ନିଜର ଦୈବୀ ରୂପକୁ ପ୍ରକଟ କରାଇଲେ । ତାଙ୍କର ହମ୍ବାରଡ଼ିରୁ କାମ୍ବୋଜ ସୃଷ୍ଟି ହେଲାପରି ଯୋନି ଦେଶରୁ ଯବନମାନେ ସୃଷ୍ଟି ହେଲେ (ରା ୧.୫୫.୨-୩- ତସ୍ୟା ହୁମ୍ବାରବୋତ୍‌ସୃଷ୍ଟାଃ କାମ୍ବୋଜଃ ରବିସଂନିଭାଃ, ଉଧସସ୍ତ୍ୱଥ ସମ୍ଭୂତା ବର୍ବରା ସସ୍ତ୍ରପାଣୟଃ । ଯୋନିଦେଶାଚ୍ଚ ଯବାନାଃ ଶକୃଦଦେଶାଚ୍ଛକାସ୍ତଥା, ଭୋମକୂପେଷୁ ଚ ମ୍ଳେଚ୍ଛା ହାରୀତାଃ ସକିରାତକାଃ) ।

ଏହି କଥାରେ ଶକ, କାମ୍ବୋଜ ଏବଂ ଯବନ ଆଦି ଜାତିର ଲୋକମାନେ ବଶିଷ୍ଠଙ୍କୁ ସହାୟତା କରିଥିବା କଥା ଜଣାଯାଉଛି । ବାସ୍ତବରେ ଉପରୋକ୍ତ କଥା ଆଲଙ୍କାରିକ ମାତ୍ର । କାରଣ ମଣିଷ ହିଁ କେବଳ ମଣିଷ ଯୋନିରୁ ଜନ୍ମ ନେବା ସମ୍ଭବ । ଏ କଥାର ପ୍ରକୃତ ତାତ୍ପର୍ଯ୍ୟ ହେଉଛି ମହର୍ଷି ବଶିଷ୍ଠଙ୍କର ଆଶ୍ରମ ପଶ୍ଚିମୋତ୍ତର ଭାରତରେ କୌଣସି ଏକ ସ୍ଥାନରେ ଥିଲା । ଯେଉଁଠି ଉପର୍ଯୁକ୍ତ ଜାତିମାନେ ସେ ନିକଟରେ ବସବାସ କରି ରହିଥିଲେ (ମହାଭାରତ (୯.୪୨.୪) ଅନୁଯାୟୀ ମହର୍ଷି ବଶିଷ୍ଠଙ୍କର ଆଶ୍ରମ ସରସ୍ୱତୀ ନଦୀକୂଳରେ ''ସ୍ଥାଣ୍ୱୀ-ତୀର୍ଥ''ଠାରେ ଥିଲା । ସମ୍ଭବତଃ ତାହାହିଁ ''ସ୍ଥାଣ୍ୱୀଶ୍ୱର-ତୀର୍ଥ'' । ଯେଉଁଠି ସ୍ଥାଣ୍ୱୀଶ୍ୱର ମନ୍ଦିର ଅଛି । (ଦ୍ର-ବାଣଭଟ୍ଟଙ୍କ ହର୍ଷଚରିତର ତୃତୀୟ ଉଚ୍ଛ୍ୱାସ) । ବଶିଷ୍ଠ ନିଜର ଏବଂ ଶବଳାର ସହାୟତା ପାଇଁ ଖବର ପଠାଇବା ପରେ ସେମାନେ ଆସି ପହଞ୍ଚି ଯାଇଛନ୍ତି (Pargiter, Sagara and the Haihayas, Ctc P-364) । ତେଣୁ ଯେଥିରୁ ଏତିକି ଜଣାପଡୁଛି ଯେ ଯବନମାନେ ପ୍ରଥମେ ପଶ୍ଚିମ ଭାରତରେ ବସବାସ କରୁଥିଲେ ଏବଂ ମହର୍ଷି ବଶିଷ୍ଠଙ୍କ ସହିତ ଏହି ଜାତିର ଘନିଷ୍ଠ ସମ୍ବନ୍ଧ ରହିଥିଲା । ସମ୍ଭବତଃ ବଶିଷ୍ଠଙ୍କୁ ଗୁରୁରୂପେ ଯେମାନେ ମାନୁଥିଲେ । ଏମାନଙ୍କ ମଧ୍ୟରେ ବଶିଷ୍ଠ ଗୋତ୍ରଧାରୀ ଅନେକ ଥିଲେ । ତେଣୁ ବୈଦିକ ଜ୍ଞାନ ସମ୍ବନ୍ଧରେ ନିଶ୍ଚିତ ଏହି ଯବନମାନେ ଅବଗତ ଥିବେ । ଯୁଦ୍ଧ ବିଦ୍ୟା ମଧ୍ୟ ଖୁବ୍ ଭଲ ଭାବରେ ଜାଣିଥିଲେ । କାରଣ ସଗରଙ୍କ ସହିତ ଯୁଦ୍ଧ ପରେ ସେମାନଙ୍କୁ କ୍ଷତ୍ରିୟ ପୁଂଗବ କୁହା ଯାଉଥିଲା । ଏବଂ ସଗର ସେମାନଙ୍କୁ ସ୍ୱାଧ୍ୟାୟ ଓ ବଷଟ୍‌କାରରୁ ବଂଚିତ କରିଥିବା ଅର୍ଥ ସେମାନେ ପୂର୍ବରୁ ବ୍ରାହ୍ମଣଧର୍ମୀ ଥିଲେ ।

## କେଉଁ ବଶିଷ୍ଠ ?

ପୌରାଣିକ ପରମ୍ପରାରେ ବଶିଷ୍ଠ ଅନେକ ଅଛନ୍ତି । ପୁରାଣରେ ୭ଜଣ ବଶିଷ୍ଠଙ୍କ ନାମ ଦେଖିବାକୁ ମିଳେ । ନିଜ ବ୍ୟକ୍ତିଗତ ନାମରେ ଏମାନେ ପରିଚିତ ନ ହୋଇ ଗୋତ୍ର ନାମରେ ପରିଚିତ ହେଉଥିଲେ । ପ୍ରଥମ ବଶିଷ୍ଠ ଥିଲେ ତ୍ରୟ୍ୟାରୁଣ । ସତ୍ୟବ୍ରତ, ତ୍ରିଶଂକୁ ଏବଂ

ହରିଶ୍ଚନ୍ଦ୍ରଙ୍କର ଶାସନ କାଳରେ ଅଯୋଧାର ସେ ଥିଲେ ପୁରୋହିତ ବା ରାଜଗୁରୁ । ଯାହାଙ୍କର କି ବିଶ୍ୱାମିତ୍ରଙ୍କ ସହିତ ଶତ୍ରୁତା ଥିବା କଥା ଅନେକ ପୁରାଣରୁ ଜଣାଯାଏ । ଏହି ବଶିଷ୍ଠଙ୍କର ବ୍ୟକ୍ତିଗତ ନାମ 'ଦେବରାଜ' ଥିଲା । ଇଯେ ସେହି ବଶିଷ୍ଠ ଯାହାଙ୍କୁ ଶକ ଓ ଯବନ ପ୍ରଭୃତି ସହାୟତା କରିଥିଲେ । ପୁରାଣ ଗଣନା ହିସାବ ଅନୁଯାୟୀ ସତ୍ୟବ୍ରତ ମନୁଙ୍କର ୩୨ ପୀଢ଼ୀ । ତେଣୁ ଏ ଘଟଣା ବହୁ ପୁରାତନ । ସେତିକିବେଳୁ ଭାରତର ପଶ୍ଚିମ-ଉତ୍ତର ଭାଗରେ ବସବାସ କରୁଥିବା ଯବନମାନେ ଭାରତୀୟ ରାଜନୀତି ସହିତ ସଂପୃକ୍ତ ଥିଲେ ।

ସଗରଙ୍କ ଦିଗ୍‌ବିଜୟ ବେଳେ ଯବନମାନେ ଯେଉଁ ବଶିଷ୍ଠଙ୍କର ଶରଣ ନେବାରୁ ସଗର ସେମାନଙ୍କୁ ଛାଡ଼ି ଦେଇଥିଲେ ସେଇ ବଶିଷ୍ଠ ହେଉଛନ୍ତି ତୃତୀୟ ବଶିଷ୍ଠ । ଯିଏ କି ''ଆପବ'' ଏବଂ ''ଅର୍ଥର୍ବନିଧି'' ନାମରେ ପରିଚିତ ମଧ୍ୟ ଥିଲେ ।

## ଅଯୋଧାର ବାହୁ ସାଂଗିଆ ରାଜବଂଶ :

ଅଯୋଧାର ଇକ୍ଷ୍ୱାକୁ ବଂଶୀରାଜା ବାହୁଙ୍କୁ ହେହୟ ଅପଦସ୍ତ କରିବା କଥା ଏବଂ ବାହୁଙ୍କ ପୁତ୍ର ସଗର ଏହାର ପ୍ରତିଶୋଧ ନେବା କଥା ପ୍ରାୟ ସମସ୍ତ ମୁଖ୍ୟ ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଛି । ତେଣୁ ଯେ ଘଟଣାରେ ପ୍ରାୟ ସନ୍ଦେହ ରହୁନାହିଁ । ବାୟୁ ବ୍ରହ୍ମ, ହରିବଂଶ, ବ୍ରହ୍ମାଣ୍ଡ ଓ ଶିବ ପୁରାଣରେ ଏହି କଥା ପ୍ରଥମେ ସଂକ୍ଷେପରେ (ବାୟୁ- ୮୮/୧୨୨-୨୫, ବ୍ରହ୍ମ-୮/୨୯-୩୨, ହରିବଂଶ, ୧୩/୩୦-୩୪, ବ୍ରହ୍ମାଣ୍ଡ-୩/୬୨/୧୨୦-୨୪, ଶିବ- ୭-୬୧/୨୩-୨୫) ଦିଆଯାଇ ପରେ ସବିଶେଷ ଭାବେ ବର୍ଣ୍ଣନା କରାଯାଇଛି (ବାୟୁ- ୮୮/୧୨୭-୪୩, ବ୍ରହ୍ମ-୮/୩୫-୫୧, ହରି- ୧୪/୨୧, ବ୍ରହ୍ମାଣ୍ଡ-୩/୬୩/୧୨୬-୪୧, ୩/୪୭/୭୪/୪୮-୪୯, ଶିବ- ୭/୬୧/୨୩-୨୫) । ବିଷ୍ଣୁ ପୁରାଣରେ ଏହି କଥା ଗଦ୍ୟରୂପେ ଅଧିକ ବିସ୍ତାରିତ ହୋଇଛି (ବିଷ୍ଣୁ-୫/୩/୧୫-୨୧) । ପଦ୍ମ ପୁରାଣ (ପଦ୍ମ- ୬/୭୧/୧୯-୩୩), ବୃହନ୍ନାରଦୀୟ ପୁରାଣ (ବୃହନ୍ନା- ୭/୭-୮/୬୩) ଓ ଭାଗବତ (ଭାଗ-୯/୮/୨-୭)ରେ ସଂକ୍ଷିପ୍ତ ଭାବେ ମଧ୍ୟ ଏହି କଥା ରହିଛି ।




ବାହୁ (ହରିବଂଶ- ୧୩/୨୬-୩୦, ବ୍ରହ୍ମାଣ୍ଡ-୩/୬୩/୧୧୭-୧୯, ବାୟୁ- ୮୮/୧୧୯-୨୧, ବ୍ରହ୍ମ- ୮/୨୬-୨୮, ଲିଙ୍ଗ- ୧/୬୬/୧୨-୧୪)

ରାଜା ବାହୁ ଶିକାର ଏବଂ ଜୁଆ ପ୍ରଭୃତି ବିଳାସବ୍ୟସନରେ ଖୁବ୍ ବ୍ୟସ୍ତ ରହୁଥିଲେ । ଏହାର ସୁଯୋଗ ନେଇ ହୈହୟମାନେ ଯବନ, ପାରଦ, କମ୍ବୋଜ, ପହ୍ଲବ ଓ ଖସ ଏଇ ପାଞ୍ଚଜାତିଙ୍କ ସହାୟତାରେ ବାହୁଙ୍କଠାରୁ ରାଜ୍ୟ ଛଡ଼ାଇ ନେଇଥିଲେ ।

ରାଜା ବାହୁ ରାଜ୍ୟ ହରାଇ ସପତ୍ନୀକ ବଣକୁ ଚାଲି ଯିବାପରେ କିଛି ଦିନ ପରେ ମରିଗଲେ । ସେତେବେଳକୁ ପତ୍ନୀ ଗର୍ଭବତୀ ଥିଲେ । ପତ୍ନୀ ଥିଲେ ଯଦୁବଂଶୀ । ପତି ଚିତାରେ ଝାସ ଦେବାକୁ ଯିବା ସମୟରେ ଭୃଗୁବଂଶୀ ଔର୍ବ ଋଷି ତାଙ୍କୁ ବାରଣ କରି ରୋକିଦେଲେ । ପରେ ରାଣୀଙ୍କ ଗର୍ଭରୁ 'ସଗର' ଜନ୍ମ ହେଲେ । ଋଷି ତାଙ୍କୁ ଶାସ୍ତ୍ର ବିଦ୍ୟା ସହିତ ଶସ୍ତ୍ର ବିଦ୍ୟା ଶିକ୍ଷା ଦେଇ 'ମହାଘୋର ଆଗ୍ନେୟ ଅସ୍ତ୍ର' ପ୍ରଦାନ କରିଦେଲେ । ସେ ଗୋଟିଏ ବଡ଼ ସେନାଗୋଷ୍ଠୀ ଏକାଠି କରି ସେଇ ପାଞ୍ଚ ଜାତିଙ୍କ ଉପରେ ଆକ୍ରମଣ କରିବାରୁ ସେମାନେ ବଶିଷ୍ଠଙ୍କ ଶରଣ ନେଲେ । ବଶିଷ୍ଠ ସଗରଙ୍କୁ ବୁଝାଇ ସୁଝାଇ ରୋକି ଦେଲେ ।

ବଶିଷ୍ଠଙ୍କ କଥାରେ ସଗର ସେମାନଙ୍କୁ ଛାଡ଼ିଦେଲେ ସତ୍ୟ, କିନ୍ତୁ ସେମାନଙ୍କ ଧର୍ମ ଓ ବେଶ ବଦଳାଇ ଦେଲେ ।

ଶକମାନଙ୍କୁ - ଅଧା ମୁଣ୍ଡ ଖିଅର କରି ଛାଡ଼ିଦେଲେ
ଯବନମାନଙ୍କୁ - ପୂରା ଲଣ୍ଡା କଲେ
କାମ୍ବୋଜମାନଙ୍କୁ - ପୂରା ଲଣ୍ଡା କଲେ
ପାରଦମାନଙ୍କୁ - କେଶ ଖୋଲା କରି ଛାଡ଼ିଦେଲେ
ପହଲ୍ଵମାନଙ୍କୁ - ଦାଢ଼ୀଧାରୀ କରିଦେଲେ ଏବଂ

ସ୍ୱାଧ୍ୟାୟ ଏବଂ ବଷଟ୍ କାରରୁ ସେମାନଙ୍କୁ ବଂଚିତ କରିଦେଲେ ।

(ହରିବଂଶ-୧୪/୧୫-୧୭)

ମନେହୁଏ ପରବର୍ତ୍ତୀ କାଳରେ ଏଇମାନେ ହିଁ ହିନ୍ଦୁ ଧର୍ମର ବିରୋଧୀ ହୋଇ ବିଭିନ୍ନ ବିରୋଧୀ ଧର୍ମ ସମ୍ପ୍ରଦାୟରେ ପ୍ରବେଶ କରିବା ସହ ହିନ୍ଦୁମାନଙ୍କ ରାଜ୍ୟକୁ ଲୁଣ୍ଠନ କରିଥାଇ ପାରନ୍ତି ।

ଏହାପରେ ସଗର ବିଭିନ୍ନ ଦେଶକୁ ଜୟ ସାରି ଅଶ୍ୱମେଧ ଯଜ୍ଞ ପାଇଁ ଘୋଡ଼ା ଛାଡ଼ି ଦେଇଥିଲେ । ସେ ଜୟ କରିଥିବା ଦେଶ ମଧ୍ୟରେ ବଂଗର ଉଲ୍ଲେଖ ଥିବାବେଳେ କଳିଙ୍ଗର ଉଲ୍ଲେଖ ନାହିଁ ।

ଏହି ଆଧାରକୁ ଡ଼ଃ ଦିନେଶ ସରକାର ଗ୍ରହଣ କରିନାହାନ୍ତି, ଅପରନ୍ତୁ 'ବାହୁ'ଙ୍କୁ ଐତିହାସିକ ବ୍ୟକ୍ତିଭାବରେ ସ୍ୱୀକାର କରି ନାହାନ୍ତି, (Studies in the Society and Administration of Ancient and Medieval India, I,P-45) କିନ୍ତୁ ପାର୍ଜିଟରଙ୍କ ମତରେ ରାଜା ବାହୁ ଅଯୋଧ୍ୟା ଛାଡ଼ିବା ଓ ସଗର ପୁନଃ ନିଜ ଅଧିକାରକୁ ଅଯୋଧ୍ୟା ନେବା ଭିତରେ ୨୦/୨୫ ବର୍ଷ ବିତି ଯାଇଥିବ (IRAS, 1910, PP9, 10,1914, PP-280-81) । ସେମାନେ

ଏହା ମଧ୍ୟରେ ବଳଶାଳୀ ହୋଇ ସାରିଥିବେ । ଯୁଦ୍ଧ ସମୟରେ ବଶିଷ୍ଠ ମଧ୍ୟସ୍ଥତା କରିବା ପରେ ସେମାନେ ସଗରଙ୍କ ପ୍ରଜା ହୋଇ ରହିଥିବେ । କିନ୍ତୁ ଯବନମାନେ ବ୍ରାହ୍ମଣ ଧର୍ମଠାରୁ ବହୁ ଦୂରରେ ଥିବାରୁ ଯାଜନ-ଯଜନ ବେଦାଧ୍ୟୟନ ଠାରୁ ଦୂରରେ ରହୁଥିଲେ ।

ମହାଭାରତରେ ଅଛି ଯେଉଁ କ୍ଷତ୍ରିୟ, ବ୍ରାହ୍ମଣ ଧର୍ମକୁ ତ୍ୟାଗ କରିଦିଏ ତାର ବୈଦିକ ଜ୍ଞାନର ବୃଦ୍ଧି ହୁଏ ନାହିଁ । ସନ୍ତାନ ଉନ୍ନତି କରେ ନାହିଁ । ଘରେ ଧନବୃଦ୍ଧି ହୁଏ ନାହିଁ । ଭଲ ସନ୍ତାନଟିଏ ମଧ୍ୟ ଯଜନ ଓ ଅଧ୍ୟୟନ ହୀନ ହୋଇଯାଏ । ସେମାନେ ଦସ୍ୟୁ ହୋଇ ନଷ୍ଟ ହୋଇଯାନ୍ତି (ମ.ଭା- ୧୨/୭୩/୯-୧୦ । ଅପଧ୍ୱସ୍ତା ଦସ୍ୟୁଭୂତା ଭବନ୍ତି, ଯେ ବ୍ରାହ୍ମଣାନ୍ କ୍ଷତ୍ରିୟାଃ ସଂତ୍ୟଜନ୍ତି ।) । ଏଣୁ ଯବନମାନେ ଧର୍ମହୀନ ହୋଇ ଭାରତୀୟ ଆର୍ଯ୍ୟଙ୍କ ଦୃଷ୍ଟିରେ ନିମ୍ନ ହୋଇ ଯାଇଥିଲେ ।

ଡ଼ଃ ଦିନେଶ ସରକାର କୁହନ୍ତି ଯବନମାନେ ଭାରତର ଉତ୍ତର ପଶ୍ଚିମ ସୀମା ଆରପଟର ନିବାସୀ ତଥା ବର୍ବର ଓ ମ୍ଳେଚ୍ଛ ଜାତିର । ଖ୍ରୀ.ପୂ. ପ୍ରଥମ ବା ୨ୟ ଶତାବ୍ଦୀରେ ସେମାନେ ଭାରତକୁ ଆସିଥିଲେ ।

### ଦସ୍ୟୁ କିଏ ?

ଉପରେ ମହାଭାରତ ମତରେ ଯେଉଁମାନଙ୍କୁ ଦସ୍ୟୁ କୁହାଗଲା ସେମାନେ କିଏ ? ସେମାନେ କ'ଣ କେବଳ ବ୍ରାହ୍ମଣ୍ୟ ଧର୍ମ-ଧାରାରୁ ଚ୍ୟୁତ ହେଉଥିବା କ୍ଷତ୍ରିୟମାନଙ୍କ ସନ୍ତାନ । ନାଁ ଆଉ କେହି ସେପରି ଜାତି ଥିଲେ ।

ଦସ୍ୟୁ ଶବ୍ଦ ବାସ୍ତବରେ ସେଇ ଆଦିମ ଜନଜାତି ପାଇଁ ଥିଲା ଯେଉଁମାନେ କାସ୍ପିୟାନ୍ ସାଗରଠାରୁ ଭାରତ ସୀମା ବିସ୍ତୃତ ଭୂଭାଗରେ ଖେଳେଇ ହୋଇ ରହିଥିଲେ । ଦସ୍ୟୁମାନଙ୍କର ଉଲ୍ଲେଖ 'ଅବେସ୍ତନ' ସାହିତ୍ୟ ଏବଂ ଇରାନ୍‌ର ହଖମାନୀ ସମ୍ରାଟଙ୍କ ଅଭିଲେଖରେ ରହିଥିବା ବେଳେ ସେଠାରେ ଦସ୍ୟୁ ଶବ୍ଦ ପାର୍ସ ଅଥବା ଫାରସ ଏବଂ ମାଦା ଅଥବା ମୀଦିୟା ନାମକ ଦେଶ ବା ଜାତି ବାଚକ । ଆଧୁନିକ ଫାରସୀ ଭାଷାରେ ଏହି 'ଦହ୍ୟୁ' (ଦସ୍ୟୁ) ଶବ୍ଦ 'ଦିହ' ରୂପରେ ସୁରକ୍ଷିତ । ଏବଂ ଯାର ଅର୍ଥ 'ଗ୍ରାମ' । ଅନୁମିତ ହୁଏ ଆଧୁନିକ ଫରାସୀର ଏହି ଶବ୍ଦ ଉତ୍ତର ଭାରତ ଭାଷାକୁ ବହୁବଚନରେ 'ଦେହାତ୍' ରୂପରେ ଆସିଯାଇଛି ।

ଦସ୍ୟୁର ସଜାତୀୟ ଶବ୍ଦ ଦାସ । ଏହି ଶବ୍ଦ ମଧ୍ୟ ଫିନୋଉଗ୍ରିୟନ ଭାଷାରେ ଯେଉଁମାନେ ଭାରତ-ଇରାନ ସହିତ ସମ୍ପର୍କିତ ସେମାନଙ୍କ ପାଖରେ ପ୍ରବେଶ କରିସାରିଛି । ଏହି ପରିବାରରେ ଏକ ଭାଷା ଅଛି 'ଫୋଗଲ' ଭାଷା । ଫୋଗଲ ଭାଷାରେ ଦାସ ଶବ୍ଦ 'ତାସ' ରୂପରେ ମିଳୁଥିବାବେଳେ ଏହାର ଅର୍ଥ ପର, ବାହାର-ଲୋକ ବା ଅଜଣା-ଲୋକ ଅର୍ଥରେ ମିଳେ ।

ଯେଥିରୁ ସ୍ପଷ୍ଟ ହୁଏ ଯେ ଦାସ, ଦସ୍ୟୁ ଶବ୍ଦ ପ୍ରାଚୀନ ଭାରତ-ଇରାନୀ ଭାଷାରେ ଥିଲା ଏବଂ ଜାତି ବିଶେଷ ବୁଝାଉଥିଲା । ପରବର୍ତ୍ତୀ ସମୟରେ ଏହି ଶବ୍ଦ ପର ଏବଂ ବିଦେଶୀ ଅର୍ଥରେ ରୂଢ଼ୀ ହୋଇଗଲା । ଭାରତରେ ଏହି ଶବ୍ଦ ଆର୍ଯ୍ୟାବର୍ତ୍ତ ଅଥବା ମଧ୍ୟଦେଶ ସୀମା

ଆରପଟେ ବସବାସ କରୁଥିବା ସେଇ ଜାତିମାନଙ୍କ ଉଦ୍ଦେଶ୍ୟରେ ବ୍ୟବହୃତ ହେଲା ଯେଉଁମାନଙ୍କୁ ମ୍ଳେଚ୍ଛ ମନେ କରା ଯାଉଥିଲା ।

ଐତରେୟ ବ୍ରାହ୍ମଣ (୭/୧୮)ର ବିଶ୍ୱାମିତ୍ର ଏବଂ ତାଙ୍କ ପୁତ୍ରମାନଙ୍କ ପ୍ରସଙ୍ଗ ପାଠକଲେ ଜଣାପଡୁଛି ଅଧିକତର ଦସ୍ୟୁ ବିଶ୍ୱାମିତ୍ରଙ୍କ ସନ୍ତାନମାନେ ଥିଲେ ।

ଉପର୍ଯୁକ୍ତ ଆଲୋଚନାରୁ ଜଣାପଡୁଛି ଦସ୍ୟୁମାନେ ଭାରତର ଉତ୍ତର ପଶ୍ଚିମ ପଟରେ ରହୁଥିବା କୌଣସି ଜାତି ବିଶେଷ, ଆର୍ଯ୍ୟମାନଙ୍କୁ ସେମାନଙ୍କ ସାମନା କରିବାକୁ ପଡ଼ିଛି । କାରଣ ସେମାନଙ୍କ ବେଶଭୂଷା, ରୀତିନୀତି, ଧର୍ମ ସଂସ୍କୃତି ଏବଂ ବର୍ଣ୍ଣ ବ୍ୟବସ୍ଥା ଆର୍ଯ୍ୟମାନଙ୍କଠାରୁ ଢ଼େର ଦୂରରେ ଥିଲା । ପରେ ନିଜ ସମାଜରେ ମଧ୍ୟ ଆଚାରହୀନ ଲୋକମାନଙ୍କ ପାଇଁ ଏହି ଶବ୍ଦର ପ୍ରୟୋଗ ହୋଇଥିବାର ଜଣାଯାଏ ।

ଦ୍ୱିତୀୟ- ଆର୍ଯ୍ୟ ବହିଷ୍କୃତ ଲୋକଙ୍କ ବିଷୟରେ ମନୁସ୍ମୃତି କୁହେ ଯେ - ସେମାନେ ଆର୍ଯ୍ୟାବର୍ତ୍ତର ସୀମାରେ ବସବାସ କରୁଥିଲେ ଏବଂ ସଂସ୍କୃତ ଭିନ୍ନ ମ୍ଳେଚ୍ଛଭାଷା କହୁଥିଲେ । ଯେମାନଙ୍କ ମଧ୍ୟର 'ଯବନ' ଅନ୍ତର୍ଭୁକ୍ତ । ମନୁ ଏମାନଙ୍କୁ 'ଆର୍ଯ୍ୟ-ବାହ୍ୟ' କହି ଦସ୍ୟୁରେ ପରିଗଣିତ କରିଛନ୍ତି । କୁଲ୍ଲୁକଭଟ୍ଟ ନିଜ ଭାଷ୍ୟରେ 'ବାହ୍ୟା' ଶବ୍ଦ ସହିତ 'କ୍ରିୟାଲୋପାଦିନା ଯୋଡ଼ି ସ୍ପଷ୍ଟ କରି ଦେଇଛନ୍ତି ଯେ ଉପନୟନାଦି ସଂସ୍କାରହୀନ ହୋଇ ଦସ୍ୟୁ ହୋଇ ଯାଇଛନ୍ତି (ବ୍ରାହ୍ମଣ-କ୍ଷତ୍ରିୟ-ବୈଶ୍ୟ-ଶୂଦ୍ରାଣାଂ କ୍ରିୟାଲୋପାଦିନା ଯା ଜାତୟୋ ବାହ୍ୟା ଜାତାଃ, ମ୍ଳେଚ୍ଛଭାଷାଯୁକ୍ତାଃ ଆର୍ଯ୍ୟଭାଷୋପେତାଃ ବା ତେ ଦସ୍ୟବଃ ସର୍ବେ ସ୍ମୃଏତାଃ । (କୁଲ୍ଲୁକ)) ।

ମହାଭାରତରେ କୁହାଯାଇଛି କଳିଯୁଗରେ ଅଧର୍ମୀ ପାପୀ ମିଥ୍ୟାବାଦୀ ଯବନମାନେ ରାଜା ହୋଇ ଶାସନ କରିବେ (ମହା-ଭା ୩/୧୮୮/୩୫, ମୃଷାନୁଶାସିନଃ ପାପା ମୃଷାବାଦ- ପରାୟଣାଃ । ଆନ୍ଧ୍ରାଃ ଶକାଃ ପୁଳିନ୍ଦାଶ୍ଚ ଯବନାଶ୍ଚ ନରାଧିପାଃ ।।) । ତାହା ପ୍ରାରମ୍ଭ ହୋଇଥିଲା ଶୁଙ୍ଗ ବଂଶର ପତନ ପରେ । ଉତ୍ତର ଭାରତରେ ଅନେକ ଛୋଟ ଛୋଟ ରାଜ୍ୟ ହୋଇଗଲା । ଯବନମାନେ ଘନ ଘନ ଆକ୍ରମଣ କରି ଅରାଜକତା ସୃଷ୍ଟି କରିଦେଲେ । ଏହା ସମ୍ଭବତଃ ଖ୍ରୀ.ପୂ. ୨ୟ ଠାରୁ ଖ୍ରୀ.ପୂ. ୧ମ ଶତାବ୍ଦୀ ମଧ୍ୟରେ ହିଁ ଘଟିଥିଲା । ସେତେବେଳକୁ ଯବନମାନେ ପଂଜାବ, ରାଜସ୍ଥାନ, ସିନ୍ଧ ଓ ଗୁଜରାଟ ଆଦି ପ୍ରଦେଶରେ ଛୋଟ ଛୋଟ ରାଜ୍ୟ ସ୍ଥାପନ କରି ଶାସନ କରୁଥିଲେ ।

ଏହି ପ୍ରାଚୀନ ପରମ୍ପରାର ଅନୁଶୀଳନରୁ ତତ୍କାଳୀନ ସାମାଜିକ ସ୍ଥିତି ଆମ ଆଗରେ ସ୍ପଷ୍ଟ ହୋଇପାରୁଛି । ତେଣୁ କଳିଯୁଗରେ ଆସୁରୀଶକ୍ତି ସହିତ ଦସ୍ୟୁ ଓ ମ୍ଳେଚ୍ଛ ପ୍ରଭୃତି ଜାତିମାନଙ୍କ ସହାୟତାରେ ଯବନମାନେ ଭାରତ ଉପରେ ବାରମ୍ବାର ଆକ୍ରମଣ କରୁଥିଲେ । ଜନସାଧାରଣଙ୍କର ସାମାଜିକ ଓ ଆର୍ଥିକ ଜୀବନକୁ ଅସ୍ତବ୍ୟସ୍ତ କରି ପକାଉଥିଲେ ।

### ଯବନମାନଙ୍କ ମୂଳଭୂମି :

ତେବେ ସେମାନେ କେଉଁଠାରୁ ବାସ୍ତବରେ ଆସିଥିଲେ ? ଏବଂ ସେମାନଙ୍କ ମୂଳନିବାସ ସ୍ଥାନ କ'ଣ ଥିଲା । ସେ ବିଷୟରେ ସମ୍ୟକ୍ ଆଲୋଚନା ପ୍ରସଙ୍ଗ ଦୃଷ୍ଟିରୁ ବିଧେୟ ।

ବିଷ୍ଣୁପୁରାଣ ଅନୁସାରେ ଭାରତର ପଶ୍ଚିମରେ ଯବନମାନେ ରହୁଥିଲେ । (ବି.ପୁ. ୨/୩୭- ପୂର୍ବେ କିରାତା ଯସ୍ୟାନ୍ତେ ପଶ୍ଚିମେ ଯବନାଃ ସ୍ଥିତାଃ । ବ୍ରାହ୍ମଣାଃ କ୍ଷତ୍ରିୟା ବୈଶ୍ୟା ମଧ୍ୟେ ଶୂଦ୍ରାଶ୍ଚ ଭାଗଶଃ ।।) ବୌଦ୍ଧଗ୍ରନ୍ଥ ମହାବଂଶ (୨୯/୪୦) ଅନୁଯାୟୀ ଯବନ ଦେଶର ମୁଖ୍ୟନଗର ଥିଲା 'ଅଲସନ୍ଦା' । ଏହା ସେହି ନଗର ଯାହାକୁ ଅଲିକ୍ଷେତ୍ର (ସିକନ୍ଦର) କାବୁଲ ନିକଟରେ ନିଜ ନାମାନୁସାରେ ବସାଇଥିଲେ । ଅନ୍ୟ ବୌଦ୍ଧଗ୍ରନ୍ଥ ମିଳିନ୍ଦପଞ୍ଚହୋ'ରେ ଲେଖାଯାଇଛି- ଅଲସନ୍ଦ ଦ୍ୱୀପ ଯବନରାଜ ମିଳିନ୍ଦ (Meanander)ଙ୍କର ରାଜଧାନୀ ଶାକଳ ଠାରୁ ଦୁଇଶହ ଯୋଜନ ଏବଂ କାଶ୍ମୀରଠାରୁ ୧୨ ଯୋଜନ ଦୂର ।

ଅଶୋକଙ୍କ କନ୍ଧାର ଶିଳାଲେଖର ଦୁଇଟି ସଂସ୍କରଣ ଦେଖାଯାଏ । ଏଥିମଧ୍ୟରୁ ଗୋଟିଏ ୟୁନାନୀ ଭାଷା ଏବଂ ଅକ୍ଷରରେ ଲିଖିତ । ନିଶ୍ଚିତ ରୂପରେ ଅଶୋକଙ୍କର ଉକ୍ତ ଶିଳାଲେଖ ସେହି ଯବନ ପ୍ରଜାଙ୍କ ପାଇଁ ଥିଲା ଯେଉଁମାନେ ଆଫଗାନିସ୍ଥାନରେ ଥିଲେ । ଏଥିରୁ ଜଣାଯାଉଛି ଯବନ କବଳିତ ଅଞ୍ଚଳର ତାହା ହିଁ ମୁଖ୍ୟ କେନ୍ଦ୍ର ଥିଲା ।

ବର୍ତ୍ତମାନ ପ୍ରଶ୍ନ ଉଠେ ଅଶୋକଙ୍କ ଶିଳାଲେଖ ବର୍ଣ୍ଣିତ ଯବନ କିଏ ଥିଲେ ? କାରଣ ଭାରତର ଇତିହାସ ଅନୁସାରେ ଯବନମାନେ ଦୁଇଟି ସ୍ଥାନରେ ରହୁଥିଲେ । ଗୋଟିଏ ହେଲା ବାଖ୍‌ତରିଆ ଏବଂ ଅନ୍ୟଟି ଗାନ୍ଧାର ତଥା ପଂଜାବରେ । ଏଇ ଦୁଇ ସ୍ଥାନ ପାଇଁ ଭାରତ ଇତିହାସରେ ଅଲଗା ଅଲଗା ନାମ ନିର୍ଦ୍ଦିଷ୍ଟ ଅଛି । ବାଖ୍‌ତରିଆର ଯବନମାନେ 'ବାହ୍ଲୀକ-ଯବନ' ନାମରେ ପରିଚିତ । ଗାନ୍ଧାର ଓ ପଂଜାବରେ ରହୁଥିବା ଯବନମାନେ 'ଯବନ୍-ବାଖତରିଆ' ନାମରେ ପରିଚିତ । ଉପରୋକ୍ତ ବାହ୍ଲୀକ ପ୍ରଥମେ ସେଲ୍ୟୁକସୀ ସମ୍ରାଜ୍ୟର ଗୋଟିଏ ପ୍ରାନ୍ତ ଥିଲା ଏବଂ ୟୁନାନୀ ରାଜ୍ୟପାଳ ଦ୍ୱାରା ଶାସିତ ହେଉଥିଲା ।

ପୂର୍ବରୁ କୁହାଯାଇଛି ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀଠାରୁ ଖ୍ରୀ.ପୂ. ୧ମ ଶତାବ୍ଦୀ ମଧ୍ୟରେ ଯବନମାନେ ଉତ୍ତର ପଶ୍ଚିମ ଭାରତର ସିନ୍ଧ, ସୌରାଷ୍ଟ୍ର, ମାଳବ, ରାଜସ୍ଥାନ ଶୂରସେନ ଏବଂ ପଂଜାବ ପ୍ରଦେଶରେ ବ୍ୟାପକ ଭାବେ ରହି ଆସିଥିଲେ । ଏପରିକି ଅଯୋଧ୍ୟା ପର୍ଯ୍ୟନ୍ତ ଆସି ରାଜା ''ବାହୁଙ୍କୁ ବିତାଡ଼ିତ କରି ଅଯୋଧ୍ୟା ସିଂହାସନ ଦଖଲ କରିଥିଲେ ।'' ବ୍ରହ୍ମପୁରାଣ (୫୩/୧୬) ଅନୁଯାୟୀ ପ୍ରାଗ୍‌ଜ୍ୟୋତିଷ (ଆସାମ) ଏବଂ ତାମ୍ରଲିପ୍ତ କ୍ଷେତ୍ର ପର୍ଯ୍ୟନ୍ତ ସେମାନେ ଆସି ସାରିଥିଲେ । ସେମାନଙ୍କ ମଧ୍ୟରୁ ଦଳେ ବଂଗ, ବିହାର ଓ ଓଡ଼ିଶା କ୍ଷେତ୍ରକୁ ଆସି ବସବାସ ଆରମ୍ଭ କରିଥିଲେ । ଏବଂ ଦଶମ ଶତାବ୍ଦୀରେ ଓଡ଼ିଶାରେ ନିଜର ରାଜ୍ୟ ପ୍ରତିଷ୍ଠା କରିଥିଲେ । ଏହା ଦଶମ ଶତାବ୍ଦୀରେ ହିଁ ସମ୍ଭବ ହୋଇଥିଲା ।

ଏଠାରେ ଗୋଟିଏ କଥା ଲକ୍ଷ୍ୟ କରାଯାଉ । ସେମାନେ ଓଡ଼ିଶାରେ ରାଜ୍ୟ ସ୍ଥାପନା କରିବା ପୂର୍ବରୁ ସେମାନଙ୍କ ଚିରାଚରିତ ପ୍ରଥାରେ ବାରମ୍ବାର ଆକ୍ରମଣ କରିଥିବେ, ଲୁଣ୍ଠନ କରି ସାମାଜିକ ଅତ୍ୟାଚାର କରିଥିବେ । ତାହା ୧୦୦/୨୦୦ ବର୍ଷ ଧରି ଅବ୍ୟାହତ ରହିଥିବ । ସେତେବେଳେ ଓଡ଼ିଶାର ମୁଖ୍ୟ ଦେବତା ଥିଲେ ଶ୍ରୀଜଗନ୍ନାଥ । ଶ୍ରୀଜଗନ୍ନାଥଙ୍କ ନିକଟରେ ହିଁ ବହୁ ଧନରତ୍ନର ଆଶା ରଖି ମନ୍ଦିର ଲୁଣ୍ଠନ କରିବା ସ୍ୱାଭାବିକ । ରକ୍ତବାହୁ ଯଦି ଶୁଭାକର ଦେବଙ୍କ ସମୟରେ ଅଷ୍ଟମ ଶତାବ୍ଦୀର ଶେଷରେ ଶ୍ରୀମନ୍ଦିର ଉପରେ ଆକ୍ରମଣ କରିଥାଏ,

ତେବେ ରକ୍ତବାହୁ ସେହି ଯବନମାନଙ୍କ ମଧ୍ୟରୁ ଜଣେ ଯେଉଁମାନେ ୧୦ମ ଶତାବ୍ଦୀରେ ଓଡ଼ିଶାରେ ଏକ ଛୋଟ ରାଜ୍ୟ ସ୍ଥାପନ କରିଥିଲେ ।

ତେବେ ୧୦ମ ଶତାବ୍ଦୀ ପୂର୍ବରୁ ଆକ୍ରମଣ କରିଥିବା ରକ୍ତବାହୁ ବର୍ତ୍ତମାନ ଶ୍ରୀମନ୍ଦିର ଦେଖିନଥିବେ । ବର୍ତ୍ତମାନର ଶ୍ରୀମନ୍ଦିର ତୋଳାହେବା ପୂର୍ବରୁ ହିଁ ତତ୍‌କାଳୀନ ଜଗନ୍ନାଥ ମନ୍ଦିରକୁ ସେ ଆକ୍ରମଣ କରି ଲୁଣ୍ଠନ କରିଥିଲେ ।

## ରକ୍ତବାହୁ କ'ଣ କାମ୍ବୋଜ ବଂଶର ?

ଯବନମାନେ ତଥାକଥିତ ଦସ୍ୟୁ ରୂପେ ଆସି ଓଡ଼ିଶାରେ ୧୦ମ ଶତାବ୍ଦୀରେ ରାଜ୍ୟସ୍ଥାପନ କରିବା ପ୍ରସଂଗ 'ଇରଦା-ତାମ୍ରପତ୍ର'ରୁ ଜଣାପଡ଼େ । ଏହି ତାମ୍ରପତ୍ର ଓଡ଼ିଶାର ବାଲେଶ୍ୱର ଜିଲ୍ଲାର ଜମିଦାର ଚୌଧୁରୀ ମୃତ୍ୟୁଂଜୟ ନାରାୟଣ ପ୍ରହରାଜଙ୍କ ଘରୁ ମିଳିଥିଲା । ଏହାକୁ ପ୍ରଥମେ ୧୯୩୪ରେ ପାଠ କରା ଯାଇଥିଲା (E 9, Vol.XXII, 1933-34, PP. 150-58, N. C. Majumdar) । ଏହି ତାମ୍ରପତ୍ରର ଉପର ଭାଗରେ ଧର୍ମଚକ୍ର ଅଙ୍କିତ ହେବାବେଳେ ତଳେ 'ଶ୍ରୀନୟପାଳଦେବସ୍ୟ' ଉତ୍କୀର୍ଣ୍ଣ ହୋଇଛି । ଭାଷା ସଂସ୍କୃତ । ତାମ୍ରପତ୍ରର ଉଦ୍ଦେଶ୍ୟ ଦଣ୍ଡଭୁକ୍ତିମଣ୍ଡଳରେ ଅନୁକୂଳ ମିଶ୍ରଙ୍କ ପୁତ୍ର ଅଶ୍ୱସ୍ଥଶର୍ମା ନାମ ଏକ ପଣ୍ଡିତଙ୍କୁ କାର୍ତ୍ତିକ ମାସ ନବମୀ ଦିନ ଦାନ ଦିଆ ଯାଇଥିଲା ।

ଏହି ତାମ୍ରପତ୍ରକୁ ମଜୁମଦାର ବଙ୍ଗଳା ଇତିହାସ ସହିତ ସମ୍ବନ୍ଧିତ କରିଛନ୍ତି, ମାତ୍ର ତାହା ଠିକ୍ ମନେ ହୁଏ ନାହିଁ (ଡ଼ଃ ରାଜଗୁରୁ-ଓଡ଼ିଶା ଇତିହାସ) । ମିଶ୍ର ବ୍ରାହ୍ମଣ ବିଶେଷ ଭାବରେ ଓଡ଼ିଶାରେ ରହୁଥିଲେ । କାର୍ତ୍ତିକ ମାସ ନବମୀ ଓଡ଼ିଶାର ଏକ ପବିତ୍ର ଦିବସ 'ଅଁଳା ନବମୀ' ଭାବେ ପରିଚିତ । ସେଇ ପବିତ୍ର ଦିବସରେ ହିଁ ତାମ୍ରପତ୍ର ଦଣ୍ଡଭୁକ୍ତିମଣ୍ଡଳ (ବାଲେଶ୍ୱର)ର ଜଣେ ବ୍ରାହ୍ମଣଙ୍କୁ ଦାନ ଦିଆ ଯାଇଥିଲା । ତାମ୍ରପତ୍ରର ପ୍ରଥମରୁ କାମ୍ବୋଜ ବଂଶ ତିଳକ ରାଜା ରାଜ୍ୟପାଳ ଏବଂ ରାଣୀ ଭାଗ୍ୟଦେବୀଙ୍କ ନାମ ଉଲ୍ଲେଖ ରହିଛି । ଏହି କାମ୍ବୋଜମାନେ ହିଁ ରାଜା ସଗରଙ୍କ ସମୟଠାରୁ ଯବନ, ଶକ ପ୍ରଭୃତିଙ୍କ ସହିତ ମିଳିତ ହୋଇ ରହି ଉତ୍ତର ଭାରତ ପଟରୁ ଛୋଟ ଛୋଟ ରାଜ୍ୟ ଗଠନ କରି ଆସୁଥିଲେ । ସେଇମାନେ ହିଁ ଓଡ଼ିଶାର ଦଣ୍ଡଭୁକ୍ତିମଣ୍ଡଳ ଅର୍ଥାତ୍ ବାଲେଶ୍ୱର ଓ ମେଦିନାପୁର ଅଞ୍ଚଳରେ ରାଜ୍ୟସ୍ଥାପନ କରିଥିଲେ । କାରଣ ମେଦିନାପୁର ସେତେବେଳେ ଓଡ଼ିଶା ଅନ୍ତର୍ଭୁକ୍ତ ଥିଲା । କଲିକତାର କୌଣସି ଚିହ୍ନବର୍ଣ୍ଣ ସେତେବେଳେ ନଥିଲା । ଗଙ୍ଗାସାଗର ସଂଗମ ମଧ୍ୟରେ କେତେ ଖଣ୍ଡ ଗ୍ରାମ ମାତ୍ର ରହିଥିଲା । ଆମ୍ଭ ମତରେ ବଙ୍ଗଳାର ସେମିତି କିଛି ବଡ଼ ସହର ବା ସାଂସ୍କୃତିକ କ୍ଷେତ୍ର ସେ ଅଞ୍ଚଳରେ ନଥିଲା ଯେଉଁଠାରେ କାମ୍ବୋଜମାନେ ରାଜଧାନୀ କରିଥାନ୍ତେ । ତେଣୁ ତାମ୍ରପତ୍ର ଓଡ଼ିଶା ଇତିହାସ ସହିତ ସଂପୃକ୍ତ ।

ଦ୍ୱିତୀୟତଃ ରାମାୟଣ କାଳ ଠାରୁ ମହାଭାରତ ଓ ପୌରାଣିକ କାଳ ପର୍ଯ୍ୟନ୍ତ କାମ୍ବୋଜମାନେ ଯବନ ନାମରେ ପରିଚିତ । ସେମାନଙ୍କୁ ଯବନ ପର୍ଯ୍ୟାୟରେ ଗ୍ରହଣ କରାଯାଇଛି ।

ତେଣୁ ରକ୍ତବାହୁକୁ ଯବନ ଆଖ୍ୟା ଦିଆଯାଇ ଥିବାରୁ ରକ୍ତବାହୁ ଏଇ କାମ୍ବୋଜ ବଂଶର ହୋଇଥାଇ ପାରନ୍ତି । ଯିଏ କି ଦଣ୍ଡଭୁକ୍ତିମଣ୍ଡଳରେ ରାଜ୍ୟ ପ୍ରତିଷ୍ଠା କରିବା ପୂର୍ବରୁ ଜଗନ୍ନାଥ ମନ୍ଦିର ଲୁଣ୍ଠନ କରିଥାଇ ପାରନ୍ତି । ପୂର୍ବରୁ କୁହାଯାଇଛି ସେମାନଙ୍କୁ ଦସ୍ୟୁ କୁହା ଯାଉଥିଲା । ଜଳପଥରେ ଉକ୍ତ ଦଣ୍ଡଭୁକ୍ତିମଣ୍ଡଳରୁ ଆସି ଲୁଣ୍ଠନ କରି ପୁନଃ ଜଳପଥରେ ସେ ଫେରି ଯାଇଥିବା ଅସମ୍ଭବ ନୁହେଁ । ରକ୍ତବାହୁ ମଧ୍ୟ କଲିକତାପଟୁ ଜଳପଥରେ ପୁରୀ ଆସି ଶ୍ରୀମନ୍ଦିର ଲୁଣ୍ଠନ କରି ଜଳପଥରେ ଫେରି ଯାଇଥିଲା । ଅତଏବ ବାଲେଶ୍ୱର ମେଦିନାପୁର ଅଞ୍ଚଳରୁ ଗଙ୍ଗା ସଙ୍ଗମ ବାଟେ କିମ୍ବା ଧାମରା ଚାନ୍ଦବାଲି ବାଟେ ଜଳପଥରେ ଆସି ପୁରୀରେ 'ବାଙ୍କି-ମୁହାଁଣ'ରେ ପ୍ରବେଶ କରିଥିବେ । (ପୁରୀକୁ ଯିବା ଆସିବା କରିବା ପାଇଁ ଜଳପଥର ବିସ୍ତୃତ ଆଲୋଚନା ଆଗକୁ ହେବ ।)

ତାମ୍ରପତ୍ରର ଉପର ଭାଗରେ ବୌଦ୍ଧଧର୍ମ ଚିହ୍ନ ଥିବାରୁ ଉକ୍ତ ଯବନମାନେ ବୌଦ୍ଧଧର୍ମାବଲମ୍ବୀ ଥାଇ ପାରନ୍ତି । କାରଣ ବୌଦ୍ଧ ଧର୍ମାବଲମ୍ବୀ କେତେକ ପ୍ରାଚୀନ ରାଜାଙ୍କର ସାଙ୍ଗିଆ 'ବାହୁ' ଥିବାର ପ୍ରମାଣ ମିଳୁଛି । ତେଣୁ ରକ୍ତବାହୁ ବୌଦ୍ଧ ଧର୍ମାବଲମ୍ବୀ ଆକ୍ରମଣକାରୀ କାମ୍ବୋଜ ଯବନ ଦସ୍ୟୁ ଗୋଷ୍ଠୀର ହୋଇଥାଇ ପାରନ୍ତି ।

ଅନ୍ୟ ଏକ ପ୍ରସଙ୍ଗ ଦ୍ରଷ୍ଟବ୍ୟ । ରାଜା ବାହୁଙ୍କ ପୁତ୍ର ସଗର ସେମାନଙ୍କୁ ପରାଜିତ କରି ଧର୍ମ ସଂସ୍କାରହୀନ କରିବା ସହିତ ବ୍ରାହ୍ମଣ୍ୟ ଧାରାରୁ ବିଚ୍ୟୁତ କରି ଦେଇଥିଲେ । ସେମାନେ ପରବର୍ତ୍ତୀ କାଳରେ ବୌଦ୍ଧ ଧର୍ମାବଲମ୍ବୀ ହୋଇ ଯାଇଥିବେ । ଆର୍ଯ୍ୟମାନଙ୍କର ହିନ୍ଦୁ ମନ୍ଦିର ଧ୍ୱଂସ କରିବା ଏବଂ ଲୁଣ୍ଠନ କରିବା ତାଙ୍କର ପ୍ରତିଶୋଧ ମନୋବୃତ୍ତିର ପରିଚାୟକ ହୋଇଥିବ ।

କାମ୍ବୋଜମାନେ ବଙ୍ଗଳାର ପାଳବଂଶ ସମୟରେ ହିଁ ବାରମ୍ବାର ଆକ୍ରମଣ କରିଥିଲେ । ପାଳବଂଶ ଖ୍ରୀ. ୭୫୦ରୁ ୧୧୫୦ ପର୍ଯ୍ୟନ୍ତ ଶାସନ କରୁଥିଲେ । ପରେ ରାଜା ରାଜେନ୍ଦ୍ର ଚୋଳ ୧୧ଶ ଶତାବ୍ଦୀରେ ଓଡ଼ିଶା, ଦକ୍ଷିଣ କୋଶଳ, ଅଙ୍ଗ, ବଙ୍ଗକୁ ଜିତିବା ସମୟରେ ଦଣ୍ଡଭୁକ୍ତିମଣ୍ଡଳକୁ ମଧ୍ୟ ଜିତିଥିଲେ । ସେଇଠାରୁ ପାଳବଂଶର ବିଲୋପ ହେଲା ।

ଅତଏବ ପାଳବଂଶ ରାଜତ୍ୱର ଆରମ୍ଭ କାଳର ପ୍ରଥମାର୍ଦ୍ଧରେ ୭୮୦ରୁ ୮୦୦ ମଧ୍ୟରେ ଯଦି କାମ୍ବୋଜମାନଙ୍କ ମଧ୍ୟରୁ କେହି ପୁରୀ ଆକ୍ରମଣ କରିଥାଏ ତେବେ ରକ୍ତବାହୁ ଉକ୍ତ କାମ୍ବୋଜ ବଂଶଜ ଆକ୍ରମଣକାରୀ ହୋଇପାରନ୍ତି ।

## ଶୋଭନାଦେବ ନାଁ ଶୁଭାକର ଦେବ ?

ମାଦଳାପାଂଜି ବର୍ଣ୍ଣିତ ଶୋଭନାଦେବଙ୍କ ସମୟରେ (୩୧୯-୩୨୩) ରକ୍ତବାହୁ ପୁରୀ ଆକ୍ରମଣ କରିଥିଲା । କେତେକ ଐତିହାସିକ ଶୋଭନାଦେବଙ୍କୁ ଗ୍ରହଣ କରିଛନ୍ତି ମାତ୍ର ମାଦଳାପାଂଜି ସମୟକୁ ଗ୍ରହଣ ନକରି ୭୮୦ ଖ୍ରୀ.ରୁ ୮୦୦ ଖ୍ରୀଷ୍ଟାବ୍ଦ ବୋଲି ମତ ଦେଇଛନ୍ତି । ଓଡ଼ିଶାରେ ଏହି ସମୟରେ ଭୌମକର ବଂଶ ଶାସନ କରୁଥିଲେ, ଡ଼ଃ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତରେ ୭୯୦ ଖ୍ରୀ.ରେ ଶୁଭାକର ଦେବ ପ୍ରଥମ ସିଂହାସନ ଆରୋହଣ କରିଥିଲେ । ଯଦି ମାଦଳାପାଂଜି ବର୍ଣ୍ଣିତ ଶୋଭନାଦେବଙ୍କୁ ଶୁଭାକର ଦେବ ୧ମ ବୋଲି ଗ୍ରହଣ କରିବା ତେବେ

ତାଙ୍କର ୨ୟ ଅଙ୍କରେ ରକ୍ତବାହୁ ପୁରୀ ଆକ୍ରମଣ କରିଥିବାରୁ ରକ୍ତବାହୁର ଆକ୍ରମଣ ସମୟ ୭୯୨ ଖ୍ରୀଷ୍ଟାବ୍ଦ ବୋଲି ଗ୍ରହଣ କରିବା ଯୁକ୍ତିଯୁକ୍ତ । ଭୌମାବ୍ଦର ଆରମ୍ଭ କାଳ ୭୩୬ ଖ୍ରୀଷ୍ଟାବ୍ଦ (ଡ଼.ରାଜଗୁରୁ) । ତେଣୁ ଭୌମାବ୍ଦର ପ୍ରଚଳନ ପୂର୍ବରୁ ଖ୍ରୀ.୭ମ ଶତାବ୍ଦୀରୁ ଭୌମରାଜାମାନେ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇ ସାରିଥିଲେ । ସେମାନେ ତୋଷାଳୀ ଅଧିକାର କରିବା ପରେ ସେଠାରେ ପୁନର୍ବାର ବୌଦ୍ଧଧର୍ମର ବିକାଶ ହୋଇଥିଲା ।

ଭୌମକର ବଂଶୀୟ ରାଜାମାନଙ୍କର ପ୍ରଭୁତ୍ୱ ପୂର୍ବ ଦିଗରେ ସୁବର୍ଣ୍ଣରେଖା ଠାରୁ ଦକ୍ଷିଣରେ ଋଷିକୁଲ୍ୟା ଯାଏ ବିସ୍ତାର ଲାଭ କରିଥିଲା । ଭୌମବଂଶୀୟ ରାଜାମାନେ ତୋଷାଳୀ ରାଜ୍ୟଜୟ କରି ତତ୍ରସ୍ଥ ମୁଖ୍ୟ ରାଜଧାନୀ 'ବିରଞ୍ଜାନଗର' ଅର୍ଥାତ୍ ବିରଜା କ୍ଷେତ୍ରଠାରେ ରାଜଧାନୀ ସ୍ଥାପନ କରିଥିଲେ (ଓ.ଇ., ପୃ-୪୦୫, ଡ଼ଃ ରାଜଗୁରୁ) । ଓଡ଼ିଶାର ସମସ୍ତ ଉପକୂଳବର୍ତ୍ତୀ ଅଞ୍ଚଳରେ ସେମାନଙ୍କ ରାଜତ୍ୱ ଥିଲା । କିନ୍ତୁ ପରେ ବିରଜା କ୍ଷେତ୍ରରୁ ରାଜଧାନୀ ଉଠାଇନେଇ 'ଗୁହେଶ୍ୱରପାଟକ' ନାମଦେଇ ତାଙ୍କର ନୂତନ ରାଜଧାନୀ ଶିବକର ଦେବଙ୍କ ରାଜତ୍ୱ କାଳରେ ସ୍ଥାପନ କରିଥିଲେ ।

ଶିବକର ଦେବଙ୍କ ପରେ ଶୁଭାକର ଦେବ ୧ମ ରାଜା ହୋଇଥିଲେ । ଏହାକୁ ପଣ୍ଡିତ ବିନାୟକ ମିଶ୍ର (Orissa under the Bhauma Kings, P-71, ପ.ବି) ଓ ଡ଼ଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ (Chronology of the Bhaumakaras and the Soma Vamsis of Orissa, P-14) ଏବଂ ଡ଼ଃ ରାଜଗୁରୁ (ଓ.ଇ., ୧ମ-ପୃ- ୪୧୩) ସମର୍ଥନ କରିଛନ୍ତି । ଡ଼ଃ ପାଣିଗ୍ରାହୀ ଶୁଭାକର ଦେବଙ୍କ ସମୟ ଖ୍ରୀ. ୭୯୦ ? ବୋଲି କହିଛନ୍ତି ।

ତେବେ ୭୯୦ ଖ୍ରୀ. ବେଳକୁ ଭୌମକର ବଂଶର ରାଜଧାନୀ ବିରଜା କ୍ଷେତ୍ରରୁ ଉଠି ସାରିଥିଲା । ଶୁଭାକର ଦେବ 'ଗୁହେଶ୍ୱର ପାଟକ' ରାଜଧାନୀରୁ ଶାସନ କରୁଥିଲେ (ପ୍ରଥମେ ଏହାର ନାମ ଥିଲା ଶୁକଦେବ ପାଟକ । ଶିବଙ୍କର ଦେବ (୧) ଚୌରାଶି ତାମ୍ରଶାସନରୁ ଜଣାପଡୁଛି ପରେ ଏହାର ନାମ ଗୁହଦେବ ପାଟକ ହୋଇଥିଲା । ଗୁହଦେବ ପାଟକ ପରବର୍ତ୍ତୀ କାଳରେ ଗୁହେଶ୍ୱର ପାଟକ ରୂପେ ପରିଚିତ ହେଲେ । (ଡ଼ଃ ରାଜଗୁରୁଙ୍କ ମତ)) ।

ଶୁଭାକର ଦେବ ୧ମ ପରମତଥାଗତ ଉପାଧି ବହନ କରି ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇଥିଲେ । ତାଙ୍କ ରାଣୀ ମାଧବୀ ଦେବୀ ଶୈବ ଧର୍ମାବଲମ୍ବୀ ଥିଲେ । ଏଥିରୁ ଜଣାପଡୁଛି ଧର୍ମଗତ ବିଦ୍ୱେଷ ନଥିଲା । ଏପରିକି ବୈବାହିକ ସମ୍ପର୍କରେ କୌଣସି ପ୍ରତିବନ୍ଧକ ନଥିଲା । ଶୁଭାକର ଦେବଙ୍କ ନେଉଳପୁରୁ ତାମ୍ରଶାସନରୁ ଜଣାପଡୁଛି ଶୁଭାକର ଦେବ ବୌଦ୍ଧ ଥାଇ ମଧ୍ୟ ବେଦାଧ୍ୟାୟୀ ୨୦୦ ବ୍ରାହ୍ମଣଙ୍କୁ ଗ୍ରାମ ଦାନ ଦେଇଥିଲେ । ତେଣୁ ହିନ୍ଦୁ ଏବଂ ବୌଦ୍ଧମାନଙ୍କ ମଧ୍ୟରେ ସହୃଦୟତା ଶୁଭାକର ଦେବଙ୍କ ସମୟରେ ପରିଲକ୍ଷିତ ହେଉଛି । ରାଜନୈତିକ ସ୍ଥିରତା ପାଇଁ ଏହା ଅପରିହାର୍ଯ୍ୟ ଥିଲା ସେତେବେଳେ । ସେଥିପାଇଁ ଏ ସବୁକୁ ଆଖି ଆଗରେ ରଖି ପଣ୍ଡିତମାନେ ଶାସ୍ତ୍ର ରଚନା କରୁଥିଲେ । ଏହି ଶାସ୍ତ୍ର ଗୁଡ଼ିକ ଚୀନ ପ୍ରଭୃତି ଦେଶରେ ଆଦର ଲାଭ କରିଥିଲା ।

ଶିଳ୍‌ଭାନ ଲେଭି ଲେଖିଛନ୍ତି ଚୀନ ସମ୍ରାଟ ତେଛାଙ୍ଗଙ୍କ ଅନୁରୋଧ କ୍ରମେ ଓଡ଼ିଶାରୁ ଶୁଭଙ୍କର କେଶରୀ ଖ୍ରୀ.୮ମ ଶତାବ୍ଦୀ ଅର୍ଥାତ୍ ୭୯୫ରେ ପ୍ରାଜ୍ଞ ନାମକ ପଣ୍ଡିତଙ୍କ ଦ୍ୱାରା ତ୍ରିପିଟକ ଅବତଂସକର ଗଣ୍ଡବ୍ୟୂହ ନାମକ ଶେଷ ଭାଗଟି ଲେଖାଇ ସେହି ପଣ୍ଡିତଙ୍କୁ ଚାନ ସମ୍ରାଟଙ୍କ ଦରବାରକୁ ପଠାଇଥିଲେ (R.L. Mitra- The Sanskrit Budhist Literature of Nepal, P-90, Ins or, Vol-I, Pt-II, P-150) । ଏହି ସମୟକୁ କେତେକ ଖ୍ରୀ. ୭୯୬-୯୮ ବୋଲି କହୁଥିବା ବେଳେ କେତେକ ଖ୍ରୀ. ୭୯୫ ବୋଲି କହୁଛନ୍ତି ।

ଭୌମ ରାଜାମାନେ ପ୍ରଥମେ ଶୈବଧର୍ମ ସଂଗେ ପରିଚିତ ହୋଇଥିଲେ । କାରଣ ଯାଜପୁରଠାରେ ଅନେକ ଶିବ ଲିଙ୍ଗ ସେମାନେ ପ୍ରତିଷ୍ଠା କରିଥିଲେ । ପରେ ହୀରା ମହାଦେବୀଙ୍କ ସମୟରେ ଶାକ୍ତ ଧର୍ମ ସହିତ ସଂଶ୍ଳିଷ୍ଟ ହୋଇଥିଲେ । ହୀରା ମହାଦେବୀଙ୍କ ନାମରେ କଟକ ଜିଲ୍ଲାରେ ହୀରାପୁର ଗ୍ରାମ ପ୍ରତିଷ୍ଠା ହୋଇ ୬୪ ଯୋଗିନୀଙ୍କର ଏକ ମନ୍ଦିର ନିର୍ମିତ ହୋଇଥିଲା । ଏଥିରୁ ମଧ୍ୟ ବୌଦ୍ଧ ତାନ୍ତ୍ରିକ ଯୁଗର ପ୍ରାଧାନ୍ୟ ସୂଚିତ ହେଉଛି ।

ଶାନ୍ତିକର (୧)ଙ୍କ ସମୟରେ ଭୁବନେଶ୍ୱରର ବିନ୍ଦୁସର ଠାରେ ବ୍ରାହ୍ମଣମାନଙ୍କୁ ଭୂମିଦାନ କରା ଯାଇଥିଲା । ତେଣୁ ବ୍ରାହ୍ମଣ୍ୟ ଧର୍ମର ପ୍ରାଧାନ୍ୟ ଭୌମମାନଙ୍କ ରାଜ୍ୟରେ ଉତ୍କର୍ଷ ଲାଭ କରିଥିଲା ।

ଭୌମବଂଶୀୟା ରାଣୀ ତ୍ରିଭୁବନ ମହାଦେବୀ ତାଙ୍କର ସ୍ୱାମୀ ଲଳିତଭାରଙ୍କ ମୃତ୍ୟୁ ପରେ ରାଜ୍ୟ ଶାସନ ଭାର ଗ୍ରହଣ କରିଥିଲେ । ତ୍ରିଭୁବନ ମହାଦେବୀ ଶୁଭାକର ଦେବ ୧ମଙ୍କ ପରବର୍ତ୍ତୀ (ପଣ୍ଡିତ ବିନାୟକ ମିଶ୍ର ଓ ଡ଼ଃ ରାଜଗୁରୁଙ୍କ ପ୍ରଦତ୍ତ ବଂଶ ବୃକ୍ଷରେ ଏହା ପ୍ରଦତ୍ତ) । ଏହା ଯୁକ୍ତିଯୁକ୍ତ ମନେହୁଏ । ଡ଼ଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତ ଯୁକ୍ତିଯୁକ୍ତ ମନେ ହେଉନାହିଁ ।

**ରକ୍ତବାହୁ କ'ଣ ଚେଦୀରାଜା ଯୁବରାଜଦେବ :**

ତ୍ରିଭୁବନା ମହାଦେବୀଙ୍କ ରାଜତ୍ୱ କାଳରେ ଓଡ୍ର ନାମକ ଅଞ୍ଚଳ ତାଙ୍କ ଶାସନାଧୀନ ଥିଲା । ଯେଉଁ ଅଞ୍ଚଳଟି ତତ୍‌କାଳୀନ ଚେଦୀ ରାଜା ଯୁବରାଜଦେବଙ୍କ ଦ୍ୱାରା ଆକ୍ରାନ୍ତ ହେଲା (H.C. Ray, The Dynastic History of Northen India, P-765 f) । ଚେଦୀରାଜା କୋଶଳ ସଂଗେ ଓଡ୍ର ଜୟକରି ଓଡ୍ରରୁ ଗୋଟିଏ ସ୍ୱର୍ଣ୍ଣ ରତ୍ନମଣ୍ଡିତ କାଳୀୟ ମୂର୍ତ୍ତୀ ନେଇଥିବା ତାଙ୍କ ବିହ୍ଲରି ଶିଳାଲେଖରେ ବର୍ଣ୍ଣିତ ହୋଇଛି (Ed. Incl. Vol-I, P-256 ff, ଜିତ୍ୱା କୋଶଳନାଥ ମୋଡ୍ରନୃପତେରାପ୍ତସ୍ତୁ ଯଃ କାଳିୟେ । ରତ୍ନାସ୍ୱର୍ଣ୍ଣମୟଃ ସ ଯେନ ବିହିତ ସୋମେଶ୍ୱରାଭ୍ୟର୍ଚନମ୍ ॥) ।

ସେତେବେଳେ 'ଓଡ୍ର ବିଷୟ' ଗୋଟିଏ ଅନୁଗତ ଖଣ୍ଡପାଳଙ୍କ ଦ୍ୱାରା ଶାସିତ ହେଉଥିଲା । ଆମ୍ଭ ମତରେ ଅନୁଗତ ଖଣ୍ଡପାଳ ହାରିଯାଇ ଉକ୍ତ ରତ୍ନଖଚିତ ମୂର୍ତ୍ତିକୁ ଦେଇଥିଲେ । ରାଜନୀତି ଦୃଷ୍ଟିକୋଣରୁ କୂଟନୀତି ପ୍ରୟୋଗକରି ଏହା ସେ ଅଭ୍ୟର୍ଥନା ପାଇଁ ଦେଇ ନଥିବେ । କେବଳ ଜଗନ୍ନାଥଙ୍କୁ ରକ୍ଷା କରିବା ଉଦ୍ଦେଶ୍ୟରେ ଏହାକୁ ସେ ଦେଇଥିବେ । ଏବଂ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ 'ସୋନପୁର'କୁ ପଠାଇ ଦେଇଥିବେ ରକ୍ଷାପାଇଁ । ତ୍ରିଭୁବନା ମହାଦେବୀ ସେଠାରେ ପ୍ରଭୁଙ୍କୁ ପାତାଳି କରିଥିବେ ।

ଏଣୁ ତ୍ରିଭୁବନା ମହାଦେବୀଙ୍କ ଅମଳରେ ଏହି ଆକ୍ରମଣ ହୋଇଥିଲା । ଭୁଲବଶତଃ ତାହା ଶୁଭାକର ଦେବଂ ଓରଫ ଶୋଭନାଦେବ ବୋଲି ଉଲ୍ଲେଖ ହୋଇଯାଇଛି କି ?

ରତ୍ନଖଚିତ ମୂର୍ତ୍ତିକୁ ଓଡ୍ର ବିଷୟର ଅନୁଗତ ଖଣ୍ଡପାଳ ଦେଇଥିବା ସମ୍ଭବ । କାରଣ ସେତେବେଳେ ଦାରୁ ବିଗ୍ରହ ପରିବର୍ତ୍ତେ ହସ୍ତପଦଯୁକ୍ତ ପ୍ରସ୍ତର ବିଗ୍ରହ ପୂଜା ପାଉଥିବା ବିଷୟ ସର୍ବଶେଷ ଶିଳାଲେଖ ଅନୁଧ୍ୟାନ କରି ଡ଼ଃ ରାଜଗୁରୁ ପ୍ରକାଶ କରିଛନ୍ତି । ତାଙ୍କ ମତରେ ୧୩ଶ ଶତାବ୍ଦୀର ଶେଷାର୍ଦ୍ଧ ପର୍ଯ୍ୟନ୍ତ ଦାରୁ ବିଗ୍ରହ ପରିବର୍ତ୍ତେ ତିନୋଟି ପାଷାଣ ବିଗ୍ରହ ପୂଜିତ ହେଉଥିଲେ । ସେଥିପାଇଁ ସେ ୧୨୭୮ଖ୍ରୀ.ର ଏକ ପ୍ରସ୍ତର ଫଳକ ଯାହାକି ଅନଙ୍ଗଭୀମଙ୍କ ବିଧବା କନ୍ୟା ଚନ୍ଦ୍ରିକା ଦେବୀଙ୍କ ଦ୍ୱାରା ଖୋଦିତ ହୋଇଥିଲା ତାର ଉଦାହରଣ ଦେଇଛନ୍ତି । କାରଣ ୧୧୪୨ ଖ୍ରୀ. ରେ ଚୋଡ଼ଗଙ୍ଗ ଦେବ ରାଜ୍ୟଭାର କାମାର୍ଣ୍ଣବ ଦେବଙ୍କୁ ସମର୍ପଣ କରି ପୁରୀଠାରେ ଅବସ୍ଥାନ କରିଥିଲେ । ସେହି ବର୍ଷଠାରୁ ବଡ଼ଦେଉଳର ନିର୍ମାଣକାର୍ଯ୍ୟ ଆରମ୍ଭ ହୋଇ ୧୨୩୦ ଖ୍ରୀ.ରେ ଅନଙ୍ଗଭୀମ ଦେବଙ୍କ ଦ୍ୱାରା ଶ୍ରୀମନ୍ଦିର ପ୍ରତିଷ୍ଠା କାର୍ଯ୍ୟ ସମ୍ପନ୍ନ ହୋଇଥିଲା (ନାଗରୀ ତାମ୍ର ଶାସନ) । ସେ ହସ୍ତ ପଦଯୁକ୍ତ ବିଗ୍ରହମାନଙ୍କୁ ଶ୍ରୀମନ୍ଦିରରେ ସ୍ଥାପନ କରିଥିଲେ ।

ଏଥିରୁ ସ୍ପଷ୍ଟ ହେଉଛି ଯେ ଏହି ପ୍ରସ୍ତର ବିଗ୍ରହଙ୍କୁ ରକ୍ଷା କରିବା ପାଇଁ ଚେଦୀ ଯୁବରାଜଦେବଙ୍କୁ ଏକ ସ୍ୱର୍ଣ୍ଣରତ୍ନଖଚିତ କାଳୀୟ ମୂର୍ତ୍ତି ଅନୁଗତ ଖଣ୍ଡପାଳ ଭଣ୍ଡାଇବା ପାଇଁ ଦେଇଥିବେ । ଯାହାକୁ ପାଇ ଯୁବରାଜଦେବ ଖୁସି ହୋଇ ଫେରି ଯାଇଥିବେ ।

ଯଦି ଏହି ମତକୁ ଗ୍ରହଣ କରାଯାଏ ତେବେ ସୋନପୁରରେ ୧୪୫ ବର୍ଷ ଧରି ପାତାଳି ହୋଇଥିବା ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ନିଶ୍ଚୟ ପାଷାଣ ବିଗ୍ରହ ଥିବେ । ଏବଂ ମାଦଳାପାଂଜି ତ୍ରିଭୁବନ ମହାଦେବୀଙ୍କ ଶାସନ କାଳକୁ ଶୁଭାକର ଦେବ ନ ଲେଖି ଶୋଭନାଦେବ ଯଦି ଲେଖିଥାନ୍ତି ତେବେ ପରାକ୍ରମଶାଳୀ ଚେଦୀ ଯୁବରାଜଦେବଙ୍କ ଉଗ୍ରସ୍ୱରୂପକୁ ଲକ୍ଷ୍ୟ କରି ତାଙ୍କୁ 'ରକ୍ତବାହୁ' ବୋଲି ଲେଖିବା କିଛି ଅସମ୍ଭବ ନୁହେଁ ।

## ଦ୍ୱିତୀୟ ଯୁବରାଜଦେବ କ'ଣ ରକ୍ତବାହୁ ?

ଖ୍ରୀ.୯୫୧-୯୪୫ ପର୍ଯ୍ୟନ୍ତ ଯୁବରାଜଦେବ କଳଚୁରି ସାମ୍ରାଜ୍ୟର ରାଜା ଥିଲେ । ବିଲହରୀ ଶିଳାଲେଖରେ ଅନ୍ୟାନ୍ୟ ପ୍ରଦେଶ ସହତ କଳିଙ୍ଗ ପ୍ରଦେଶର ସ୍ତ୍ରୀମାନଙ୍କ ସହିତ କ୍ରିଡ଼ାରତ ଥିବାର ଜଣାପଡୁଛି (ଇନ୍‌ସକ୍ରିପ୍‌ସନସ୍ ଅଫ ଦି କଳଚୁରି ଚେଦି ଏରା, ପୃ-୨୧୧, ଶ୍ଳୋ-୨୪ ।

> ଗୌଡ଼ୀଗାଢ଼ମନୋମନୋରଥକରଃ କର୍ଣ୍ଣାଟକାନ୍ତାକୁଚ
> କ୍ରୀଡ଼ାଶୈଳ ତଟୀ ବିହାରହରିଣୋ ଲାଟୀଲଲାଟାଙ୍କଦଃ ।
> କାଶ୍ମୀରୀବିହିତସ୍ମରବ୍ୟତିକରସ୍ତସ୍ମାଦ୍ କଳିଙ୍ଗାଙ୍ଗନା
> ସଦ୍‌ଗାନବ୍ୟସନୀ ସ ନୀତିନୟନଃ କେୟୂର ବର୍ଷୋଭବଦ୍ ।।)

ଯାର ଅଭିପ୍ରାୟ ଏହା ହୋଇପାରେ ଯେ, ସେ ବଙ୍ଗଳା, କର୍ଣ୍ଣାଟକ, ଗୁଜୁରାଟ, କାଶ୍ମୀର ଓ ଓଡ଼ିଶା ଉପରେ ଆକ୍ରମଣ କରିଥିଲେ ତଥା ଏହି ପ୍ରଦେଶର ସ୍ତ୍ରୀମାନଙ୍କ ସହ ବିବାହ କରିଥିଲେ । ସେ ''ତ୍ରିକଳିଙ୍ଗାଧିପତି'' ପଦବୀ ମଧ ଧାରଣ କରିଥିଲେ ।

୨ୟ ଲକ୍ଷ୍ମଣରାଜ ଏବଂ ୨ୟ ଯୁବରାଜଦେବଙ୍କର 'କାରୀତଲାଈ' ଓ ବିଲହରୀ ଶିଳାଲେଖ ଅନୁଯାୟୀ ଯଥାକ୍ରମେ କୋଶଳ ଏବଂ କଳିଙ୍ଗ ଉପରେ ବିଜୟ ଲାଭ କରିବାର ଯେଉଁ ଚର୍ଚ୍ଚା ହୋଇଛି ଏହାର ସତ୍ୟାସତ୍ୟ ପ୍ରମାଣ ପାଇଁ ଆଉରି ବଳିଷ୍ଠ ପ୍ରମାଣ ଆବଶ୍ୟକ ମନେହୁଏ ।

କାରଣ ବିଲହରୀ ଶିଳାଲେଖ ଅନୁସାରେ ସେ କୋଶଳ (ଛତିଶଗଡ଼ ଏବଂ ପଶ୍ଚିମ ଓଡ଼ିଶା) ତଥା ଉଡ୍ର (ଓଡ଼ିଶା) ରାଜାଙ୍କୁ ପରାସ୍ତ କରିଥିଲେ । ଉଡ୍ର ରାଜାଙ୍କ ଠାରୁ କାଳୀୟନାଗର ସୁବର୍ଣ୍ଣ ରତ୍ନମଣ୍ଡିତ ମୂର୍ତ୍ତି ପାଇଥିଲେ । ଏହି ବିଗ୍ରହଙ୍କୁ ସେ ସମୁଦ୍ରସ୍ନାନ ପରେ ଭଗବାନ ସୋମେଶ୍ୱରଙ୍କ ଦର୍ଶନବେଳେ ଭେଟି ଦେଇଥିଲେ (ତତ୍ରୈବ, ଶ୍ଳୋ-୫୯-୬୨) ।

## ରକ୍ତବାହୁ କ'ଣ ଶବରରାଜ ଶିବଗୁପ୍ତ ?

ଐତିହାସିକ ନଗେନ୍ଦ୍ରନାଥ ବସୁ 'ବିଶ୍ୱ-କୋଷ' ଗ୍ରନ୍ଥରେ ଏହି ପ୍ରସଂଗରେ ଲେଖିଛନ୍ତି ''କଳିଙ୍ଗରେ ବୌଦ୍ଧମାନଙ୍କର ପରାକ୍ରମ ଖର୍ବ ହେବାପରେ ଅନାର୍ଯ୍ୟ ଶବରମାନେ କଳିଙ୍ଗରେ ଆଧିପତ୍ୟ ବିସ୍ତାର କଲେ । କ୍ରମେ ସେମାନେ ଆର୍ଯ୍ୟମାନଙ୍କର ନିକଟତର ହୋଇଗଲେ । ତାଙ୍କ ମତରେ ଏହି ଶବରମାନଙ୍କ ରାଜତ୍ୱ ସମୟରେ ଯବନମାନଙ୍କ ଭୟରେ ପୁରୀରୁ ଜଗନ୍ନାଥଙ୍କୁ ମଧ୍ୟପ୍ରଦେଶର 'ରାଜିମ୍' ନଗରକୁ ନେଇଯାଇ ସେଠାରେ ସେବାପୂଜାର ବ୍ୟବସ୍ଥା କରିଥିଲେ । ଯଯାତି ରାଜା ହେବା ପରେ ଶବର ରାଜଧାନୀ 'ରାଜିମ୍'ରୁ ଦାରୁ ବିଗ୍ରହଙ୍କୁ ଆଣି ପୁନଃ ପ୍ରତିଷ୍ଠା କରିଥିଲେ ।

ମାଦଳାପାଂଜି ବର୍ଣ୍ଣିତ ରକ୍ତବାହୁ ଆକ୍ରମଣକୁ ଶ୍ରୀଯୁକ୍ତ ବସୁ ଶବରରାଜ ଶିବଗୁପ୍ତଙ୍କ ସମୟର ଏବଂ ସ୍ୱୟଂ ଶିବଗୁପ୍ତ ଜଗନ୍ନାଥଙ୍କୁ ରାଜିମ୍ ନଗରକୁ ନେଇ ଯାଇଥିବାର ଅନୁମାନ କରିଛନ୍ତି । (ପ୍ରାଚ୍ୟବିଦ୍ୟା ମହାର୍ଣ୍ଣବ- ଶ୍ରୀନଗେନ୍ଦ୍ରନାଥ ବସୁଙ୍କ ବିଶ୍ୱକୋଷ, ବଙ୍ଗଳା) ।

କିନ୍ତୁ ପ୍ରକୃତରେ ଛତିଶଗଡ଼ର ମହାରାଜା ଶିବଗୁପ୍ତଙ୍କ ଶ୍ରୀପୁର ଶିଳାଲିପି ଅନୁସାରେ ଶିବଗୁପ୍ତଙ୍କ କାଳ ଖ୍ରୀ.୪୭୫ରୁ ୫୦୦ ହେବ ବୋଲି କନିଙ୍ଗହାମ୍ ମତ ଦେଇଛନ୍ତି । ଫ୍ଲିଟ୍‌ଙ୍କ ମତରେ ୮ମ ବା ୯ମ ଶତାବ୍ଦୀ ।

ବସୁଙ୍କ ମତରେ ଶବରରାଜ ଶିବଗୁପ୍ତଙ୍କ ବଂଶ ଉତ୍କଳରେ ରାଜତ୍ୱ କରୁଥିଲେ । କିନ୍ତୁ ଶିବଗୁପ୍ତଙ୍କ ପୂର୍ବପୁରୁଷମାନେ ଏଠାରେ ରାଜତ୍ୱ କରୁଥିବାର ପ୍ରମାଣ ଏ ପର୍ଯ୍ୟନ୍ତ ମିଳିନାହିଁ । ତେଣୁ ବସୁ ମହାଶୟଙ୍କ ମତ ଗ୍ରହଣ କରିବା ସମ୍ଭବ ନୁହେଁ । ଦ୍ୱିତୀୟତଃ ଯଯାତି ରାଜା ହେବାପରେ ଶବର ରାଜଧାନୀ 'ରାଜିମ୍'ରୁ ନୁହେଁ ସୋନପୁରର ଗୋପାଳି ଗ୍ରାମରୁ ଦାରୁ ବିଗ୍ରହଙ୍କୁ ଉଦ୍ଧାର କରିଥିଲେ । ତେଣୁ ବସୁ ମହାଶୟଙ୍କ 'ରାଜିମ୍' ପ୍ରସଙ୍ଗ ଏବେ ମଧ ଗବେଷଣାର ଅପେକ୍ଷା ରଖିଛି ।

## ରକ୍ତବାହୁ କ'ଣ ହୁଣ୍ ଓ ଶକମାନଙ୍କର ସେନାଧ୍ୟକ୍ଷ ?

ଭାରତ ବର୍ଷରେ ହୁଣ୍ ଓ ଶକମାନଙ୍କର ପ୍ରଭାବ ବୃଦ୍ଧି ଓ ରାଜ୍ୟସ୍ଥାପନକୁ ପାଥେୟ କରି ସେହି ସମୟରେ ସେମାନଙ୍କର ବର୍ବରୋଚିତ ଆକ୍ରମଣକୁ ଲକ୍ଷ୍ୟ କରି ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସ ରକ୍ତବାହୁଙ୍କୁ ସେନାଧ୍ୟକ୍ଷ ବୋଲି ତାଙ୍କର (ଶ୍ରୀଜଗନ୍ନାଥ ମନ୍ଦିର ଓ ଜଗନ୍ନାଥତତ୍ତ୍ୱ) ଗ୍ରନ୍ଥରେ ଲେଖିଛନ୍ତି । ତାଙ୍କ ମତରେ ଶୋଭନ ଦେବଙ୍କ ଅମଳରେ ଷଷ୍ଠ ଶତାବ୍ଦୀରେ ରକ୍ତବାହୁ ଜଳପଥରେ ଆସି ଆକ୍ରମଣ କରିଥିଲା । ଶୋଭନ ଦେବଙ୍କ ସମୟରେ ଭାରତ ବର୍ଷରେ ବୈଦେଶିକମାନଙ୍କର ବିଶେଷତଃ ହୁଣ୍ ଓ ଶକମାନଙ୍କର ପ୍ରଭାବ ବୃଦ୍ଧି ପାଇଥିଲା । ଶୋଭନ ଦେବ ଠାକୁରମାନଙ୍କୁ ବୈଦେଶିକମାନଙ୍କ ଆକ୍ରମଣରୁ ରକ୍ଷା କରିବା ପାଇଁ ସୋନପୁର ନେଇ ଯାଇଥିଲେ (ପୃ-୧୭୩)

ତାଙ୍କ ମତରେ କେଶରୀବଂଶର ରାଜତ୍ୱ ଭିତରେ ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧରେ ପ୍ରଥମ ଐତିହାସିକ ଉଲ୍ଲେଖ ଦେଖାଯାଏ । ରକ୍ତବାହୁଙ୍କ ଓଡ଼ିଶା ଆକ୍ରମଣ ବେଳେ ମାଦଳାପାଂଜିରେ ଜଗନ୍ନାଥଙ୍କ ବିଷୟ ଆରମ୍ଭ ହୋଇଛି । ତେଣୁ ରକ୍ତବାହୁ ତତ୍‌କାଳୀନ ସାମ୍ରାଜ୍ୟବାଦୀ ଆକ୍ରମଣକାରୀ ହୁଣ୍ ଓ ଶକମାନଙ୍କର ଜଣେ ସେନାଧ୍ୟକ୍ଷ ହୋଇପାରନ୍ତି । ଏହା କେବଳ ସମ୍ଭାବନା ମାତ୍ର । କାରଣ ହୁଣ୍ ଓ ଶକମାନଙ୍କ ଆକ୍ରମଣକୁ ଏକତ୍ର ବିଚାର କରିହେବ ନାହିଁ । ଅଲଗା ଅଲଗା ବିଚାର କଲେ ସମୟଗତ ପ୍ରଭେଦ ନିଶ୍ଚିତ ରହୁଛି । ପୁନଃ ପଣ୍ଡିତ ମହାଶୟ ନିର୍ଦ୍ଦିଷ୍ଟ କରିଥିବା ''ଷଷ୍ଠ ଶତାବ୍ଦୀ'' ରକ୍ତବାହୁ ଆକ୍ରମଣର ସଠିକ କାଳ ନୁହେଁ, ନିର୍ବିବାଦ ମଧ୍ୟ ହେଉନାହିଁ । ସେ ଷଷ୍ଠ ଶତାବ୍ଦୀର ନିର୍ଦ୍ଦିଷ୍ଟ 'ଦଶକ' ମଧ୍ୟ ଅଙ୍କିତ କରି ନାହାଁନ୍ତି । କେଉଁ ଦୃଷ୍ଟିରୁ ଏହି ସମୟକୁ ଆଧାର କରି ହୁଣ୍ ଶକମାନଙ୍କର ଜଣେ ସେନାଧ୍ୟକ୍ଷଙ୍କୁ 'ରକ୍ତବାହୁ' ବୋଲି ମତ ଦେଲେ ତାହା ସ୍ପଷ୍ଟ ହୋଇ ନଥିଲେ ମଧ୍ୟ ଏହା ସଂପୂର୍ଣ୍ଣ ଅସତ୍ୟ ବୋଲି କହି ହେବ ନାହିଁ । ଇତିହାସ ଏ ପର୍ଯ୍ୟନ୍ତ ଏହାର ଅନ୍ତିମ ବିନ୍ଦୁକୁ ସ୍ପଷ୍ଟ କରିନାହିଁ ।

ଏହି ମତକୁ ପର୍ଯ୍ୟାଲୋଚନା କରି ପ୍ରାଧ୍ୟାପକ ମୃତ୍ୟୁଂଜୟ ନାୟକ ସମ୍ଭାବନା କରିଛନ୍ତି ଯେ ଷଷ୍ଠ ଶତାବ୍ଦୀରେ ହୁଣ୍ ଓ ଶକମାନଙ୍କ ମଧ୍ୟରୁ ରକ୍ତବାହୁ ନାମକ ଜଣେ ସେନାଧ୍ୟକ୍ଷ ପ୍ରଥମେ ରାଜା ଶୋଭନା ଦେବଙ୍କ ସମୟରେ ପୁରୀ ଆକ୍ରମଣ କରିଥିଲେ (ମାଦଳାପାଂଜି, ପୃ-୧୫୫, ସଂପାଦନା-ମୃତ୍ୟୁଂଜୟ ନାୟକ) ।

ଶ୍ରୀ ଦାମୋଦର ସାହୁ, 'ଶ୍ରୀଜଗନ୍ନାଥଙ୍କ ପାତାଳୀ ବିଜେ ଏକ ଐତିହାସିକ ତର୍କଣା' ପ୍ରବନ୍ଧରେ ମାଦଳାପାଂଜି ବର୍ଣ୍ଣିତ ରକ୍ତବାହୁ ପ୍ରସଙ୍ଗକୁ ଆଲୋଚନା କରି ଲେଖିଛନ୍ତି, ଶୋଭନା ଦେବ ବୋଧହୁଏ ଭୌମକର ରାଜବଂଶୀ ଥିଲେ । ଯାହାଙ୍କର ନାମ ଇତିହାସ ପୃଷ୍ଠାରେ ଶୁଭଙ୍କର ଦେବ । ଶ୍ରୀ ସାହୁ ମଧ୍ୟ ମାଦଳା ବର୍ଣ୍ଣିତ ମୋଗଲ ରକ୍ତବାହୁଙ୍କୁ ମୋଗଲ ରୂପେ ସ୍ୱୀକାର କରିନାହାନ୍ତି । ବସ୍ତୁତଃ ରକ୍ତବାହୁ ମୋଗଲ ନଥିଲା । ସେତେବେଳ ପର୍ଯ୍ୟନ୍ତ ଭାରତକୁ ମୋଗଲମାନଙ୍କ ଆଗମନ ହୋଇନଥିଲା । ଓଡ଼ିଶାକୁ ମୋଗଲମାନେ କରାୟତ କଲେ ମୋଗଲ ସମ୍ରାଟ ଆକବରଙ୍କ ସମୟରେ । ଭାରତରେ ମୋଗଲ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା ବାବରଙ୍କ ପାନିପଥ ଯୁଦ୍ଧ ପରେ ଅର୍ଥାତ୍ ୧୫୨୬ ଖ୍ରୀଷ୍ଟାବ୍ଦରେ ।

## ରକ୍ତବାହୁ କ'ଣ ରାଷ୍ଟ୍ରକୂଟ ବଂଶଜ ?

ଶ୍ରୀଯୁକ୍ତ ଦାମୋଦର ସାହୁ ରକ୍ତବାହୁଙ୍କୁ ରାଷ୍ଟ୍ରକୂଟ ବଂଶଜ ବୋଲି ପ୍ରମାଣିତ କରିଛନ୍ତି । ତାଙ୍କ ମତରେ ଭୌମକର ରାଜତ୍ୱ ସମୟରେ ବୌଦ୍ଧଧର୍ମ ବୈଷ୍ଣବଧର୍ମ ଉପରେ ଏକ ପ୍ରଗାଢ଼ ବଳୟ ସ୍ଥାପନ କରି ଏକଦା ସାଂସ୍କୃତିକ ଓ ଧାର୍ମିକ ଚିନ୍ତାଧାରାରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲା । ମାତ୍ର ଏହା ବେଶିଦିନ ରହିପାରିଲା ନାହିଁ କାରଣ ଶୁଭକର ଦେବଙ୍କ ପରେ ଭୌମରାଜବଂଶ ଏକପ୍ରକାର ଦୁର୍ବଳ ହୋଇପଡ଼ିଲା । ଏପରିକି ପରିଶେଷରେ ଭୌମରାଣୀମାନେ ଶାସନ କରିଥିଲେ । ଏହି ଦୁର୍ବଳତାର ସୁଯୋଗ ନେଲେ ଦାକ୍ଷିଣାତ୍ୟର ବଳିଷ୍ଠ ହିନ୍ଦୁପ୍ରେମୀ ରାଷ୍ଟ୍ରକୂଟ ଶାସକମାନେ । ରାଷ୍ଟ୍ରକୂଟମାନେ ଉତ୍ତର ଦାକ୍ଷିଣାତ୍ୟ ନିକଟବର୍ତ୍ତୀ ଆଧୁନିକ ନାସିକ ଅଞ୍ଚଳରେ ରାଜୁତି କରୁଥିଲେ । ସେତେବେଳେ ସେମାନଙ୍କର ମୁଖ୍ୟତଃ ପ୍ରତିହାର ଓ ପାଳରାଜବଂଶ ସହିତ କନଉଜ ଓ ଗଙ୍ଗା ପ୍ରଭୃତି ଅଞ୍ଚଳ ଦଖଲ ପାଇଁ ତୁମୁଳ ପ୍ରତିଯୋଗିତା ଚାଲୁଥିଲା । ପ୍ରତିହାରମାନେ ଆଧୁନିକ ରାଜସ୍ଥାନ ଓ ପାଳମାନେ ଆଧୁନିକ ବେଙ୍ଗଲ ଓ ବିହାରର କିଛି ଅଂଶରେ ଶାସନ କରୁଥିଲେ ।

ଏହି ପାଳରାଜବଂଶ ବେଙ୍ଗଲରେ ବୌଦ୍ଧଧର୍ମର ପୃଷ୍ଠପୋଷକ ଭାବେ ଶାସନ କରୁଥିଲେ । ଅପର ପକ୍ଷରେ ଦାକ୍ଷିଣାତ୍ୟରେ ସେତେବେଳକୁ ପ୍ରଗାଢ଼ ବୈଷ୍ଣବୀୟ ଚିନ୍ତାଧାରାର ପ୍ରତିଫଳନ ଘଟିବା ସଙ୍ଗେ ସଙ୍ଗେ ରାଧାକୃଷ୍ଣଙ୍କ ଘଟଣାବଳୀକୁ ଭଗବାନ ବିଷ୍ଣୁଙ୍କର ମାନବୀୟ ଲୀଳାଭାବେ ଗ୍ରହଣ କରା ଯାଇଥିଲା । ବୌଦ୍ଧଧର୍ମ ବଜ୍ରଯାନପନ୍ଥୀ ମାନଙ୍କର ତନ୍ତ୍ର-ମନ୍ତ୍ର-ଯନ୍ତ୍ରର ଅଲୌକିକ ଶକ୍ତି ପ୍ରୟୋଗ ଭ୍ରଷ୍ଟାଚାରୀମାନଙ୍କୁ ଆଲୋଡ଼ିତ କରିବା ବେଳେ, ଦାକ୍ଷିଣାତ୍ୟରେ ଭକ୍ତି ରସଭରା ବୈଷ୍ଣବୀୟ ଚିନ୍ତାଧାରର ଉଦ୍‌ବେଳନ ଘଟିଥିଲା, ତେଣୁ ମହାନ୍ ବୈଷ୍ଣବୀୟ ହିନ୍ଦୁତତ୍ତ୍ୱ ପ୍ରଣୋଦିତ ରାଷ୍ଟ୍ରକୂଟମାନେ କଳୁଷିତ ବୌଦ୍ଧଧର୍ମର ବିଲୋପ କରି ହିନ୍ଦୁତ୍ୱ ସ୍ରୋତକୁ ପ୍ରଖର କରିବା ପାଇଁ ଶୁଭଙ୍କର ଦେବଙ୍କ ଦ୍ୱିତୀୟ ଅଙ୍କରେ ଓଡ଼ିଶା ଆକ୍ରମଣ କରିଥିଲେ । ଏହି ଆକ୍ରମଣ ମୁଖ୍ୟତଃ ବୌଦ୍ଧଧର୍ମ ବିରୋଧି ଥିଲା । ଯେହେତୁ ରାଷ୍ଟ୍ରକୂଟମାନେ ବଳିଷ୍ଠ ହିନ୍ଦୁ ତତ୍ତ୍ୱବାଦୀ ବୈଷ୍ଣବୀୟ ପ୍ରେମସ୍ରୋତରେ ସଂଚାରକ, ତେଣୁ ସେମାନେ ଶ୍ରୀଜଗନ୍ନାଥଙ୍କ ପ୍ରତି କେବେହେଲେ ଅସଦାଚରଣ କରିବାକୁ ଚାହିଁ ନଥିବେ, କେବଳ ଭୌମକରମାନଙ୍କ ପ୍ରଗାଢ଼ ବୌଦ୍ଧନୀତି ଶ୍ରୀଜଗନ୍ନାଥଙ୍କ ଉପରେ ଏକ ବଳିଷ୍ଠ ବଳୟ ଅଚ୍ଛାଦିତ କରିଥିବାରୁ ସେମାନେ ଓଡ଼ିଶା ଆକ୍ରମଣ କରିଥିଲେ ।

ରାଷ୍ଟ୍ରକୂଟମାନେ ନୈଷ୍ଠିକ ହିନ୍ଦୁ ଓ ଘୋର ବୌଦ୍ଧ ବିରୋଧୀଭାବେ ପରିଚିତ ହୋଇ ଏଲୋରା ଗୁମ୍ଫାର ଏକ ବୌଦ୍ଧ ମନ୍ଦିରକୁ ହିନ୍ଦୁ ମନ୍ଦିରରେ ପରିଣତ କରିଥିବା ଦୃଷ୍ଟାନ୍ତ ଇତିହାସରୁ ମିଳିଥାଏ । ଏହି ଜଗନ୍ନାଥ ତତ୍ତ୍ୱପ୍ରେମୀ ରାଷ୍ଟ୍ରକୂଟମାନଙ୍କୁ ମାଦଳାପାଞ୍ଜିକାରମାନେ ମୋଗଲ ବା ଯବନ ରକ୍ତବାହୁ ନାମରେ ନାମିତ କରିଛନ୍ତି ।

ଏହି ମତକୁ ବଳିଷ୍ଠ କରିବା ପାଇଁ ଶ୍ରୀ ସାହୁ 'ମ୍ଳେଚ୍ଛ' ପ୍ରସଙ୍ଗକୁ ଅବତାରଣା କରିଛନ୍ତି । ତାଙ୍କ ମତରେ ''ଏହି ସମୟରେ ବୌଦ୍ଧଧର୍ମ ପ୍ରଭାବ ପାଇଁ କଳିଙ୍ଗର ଅଧିବାସୀମାନଙ୍କୁ ବୋଧହୁଏ ମ୍ଳେଚ୍ଛ ବୋଲି କୁହା ଯାଉଥିଲା । ଏହି ମ୍ଳେଚ୍ଛମାନଙ୍କ ରାଜ୍ୟକୁ ଗମନ କଲେ ମନୁଷ୍ୟ

ଅପବିତ୍ର ହେବାର ଆଶଙ୍କା କରି ସେଥିରୁ ମୁକ୍ତି ପାଇବା ପାଇଁ ମହୋଦଧିରେ ସ୍ନାନ କରି ପରମ ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କ ଦର୍ଶନ କଲେ ଅପବିତ୍ରତା ଦୂର ହୁଏ ବୋଲି ପୁରାଣରେ ବର୍ଣ୍ଣିତ ଅଛି । ତେଣୁ ରାଷ୍ଟ୍ରକୂଟମାନେ ଶ୍ରୀଜଗନ୍ନାଥଙ୍କଠାରୁ କଳୁଷିତ ବୌଦ୍ଧତନ୍ତ୍ରର କାଳିମା ଅପସାରଣ କରି ତାଙ୍କୁ ଏକ ହିନ୍ଦୁଚେତନାରେ ଅବଧାରଣ କରିବା ପାଇଁ ଓଡ଼ିଶା ଆକ୍ରମଣ କରିଥିଲେ, ଯାହାକୁ ମାଦଳାପାଂଜିକାରମାନେ ଏକ କୁତ୍ସିତ କଦର୍ଥ ଭାବେ ବର୍ଣ୍ଣନା କରିଛନ୍ତି ବୋଲି ମନେହୁଏ ।'' ଉପର ବର୍ଣ୍ଣିତ ତଥ୍ୟ ଅନୁଯାୟୀ ଭୌମକରମାନଙ୍କ ପ୍ରଗାଢ଼ ବୌଦ୍ଧନୀତି ଶ୍ରୀଜଗନ୍ନାଥଙ୍କ ଉପରେ ଏକ ବଳିଷ୍ଠ ବଳୟ ଆଚ୍ଛାଦିତ କରିଥିବାରୁ ରାଷ୍ଟ୍ରକୂଟମାନେ ଓଡ଼ିଶା ଆକ୍ରମଣ କରିଥିଲେ । ଏହା ସତ୍ୟ ହୋଇପାରେ, କିନ୍ତୁ ଏହି ଜଗନ୍ନାଥ ତତ୍ତ୍ୱପ୍ରେମୀ ରାଷ୍ଟ୍ରକୂଟମାନଙ୍କୁ ମାଦଳାପାଂଜିକାରମାନେ ମୋଗଲ ବା ଯବନ ରକ୍ତବାହୁ ନାମରେ ନାମିତ କରିଛନ୍ତି ବୋଲି ଶ୍ରୀ ସାହୁଙ୍କ ମତକୁ ଗ୍ରହଣ କରିବା ସମ୍ଭବ ହେଉନାହିଁ । ଯେଉଁମାନେ ବାସ୍ତବରେ ଜଗନ୍ନାଥପ୍ରେମୀ ଏବଂ ବୌଦ୍ଧ ବିରୋଧି ସେମାନଙ୍କୁ ମାଦଳାପାଂଜିକାର ମାନେ ଆକ୍ରମଣକାରୀ ଯବନ ବା ମୋଗଲ ନାମରେ ନାମିତ କରିବେ ବା କାହିଁକି ? ମାଦଳାପାଂଜିକାରମାନେ ଜଗନ୍ନାଥଙ୍କ ଭକ୍ତ ଏବଂ ଜଗନ୍ନାଥ ମନ୍ଦିର ରୀତିନୀତି ସହ ପରିଚିତ । ପାଂଜି ଲେଖିବା ତାଙ୍କର ଏକ ସେବା ମଧ୍ୟ ଥିଲା, ସେଥିପାଇଁ ସେମାନେ ପ୍ରାପ୍ୟ ପାଉଥିଲେ । ତେଣୁ ସେମାନେ ନିଜ ଦେବତା, ନିଜ ମନ୍ଦିର, ନିଜ ପରମ୍ପରା ସଂସ୍କୃତିର ପୃଷ୍ଠପୋଷକ ରାଷ୍ଟ୍ରକୂଟମାନଙ୍କୁ ଆକ୍ରମଣକାରୀ ଯବନ ଲେଖିବେ ବା କାହିଁକି ? ଅଧିକନ୍ତୁ ଶ୍ରୀଜଗନ୍ନାଥଙ୍କ ଉପରେ ବୌଦ୍ଧଧର୍ମର ବଳିଷ୍ଠ ବଳୟ ସୃଷ୍ଟି କରାଉଥିବା ଭୌମକରମାନଙ୍କୁ ସେହିପରି ବିଶେଷଣ ଦେଇ ଚିତ୍ରିତ କରି ପାରିଥାନ୍ତେ । କାରଣ ରାଜ ପରିବାର ରାଜବଂଶର ବହୁ ଅପକୀର୍ତ୍ତିକୁ ମାଦଳାକାରମାନେ ଲେଖିଥିବାରୁ ଭୌମକର ବଂଶ ଶାସନ କରୁଥିବାରୁ ଶାସନକୁ ଡ଼ରି ଯେ ସେମାନେ ଭୌମକର ରାଜାମାନଙ୍କୁ ଆକ୍ରମଣକାରୀ ଯବନ କହିଲେ ନାହିଁ ସେପରି କହିହେବ ନାହିଁ ।

ଅପରନ୍ତୁ ଭୌମକର ବଂଶର ରାଣୀମାନେ ହିନ୍ଦୁ ଧର୍ମାଶ୍ରୟୀ ଥିଲେ । ଭୌମକର ଶାସନ ଉଭୟ ଧର୍ମକୁ ମର୍ଯ୍ୟାଦା ଦେଉଥିଲେ ଆମେ ଏହା ପୂର୍ବରୁ ଲେଖିଛୁ । ସେଥିପାଇଁ ସେ ଭୌମକରମାନଙ୍କୁ ଆକ୍ରମଣକାରୀ ଲେଖି ନାହାଁନ୍ତି । ଅତଏବ ବୌଦ୍ଧଧର୍ମାବଲମ୍ବୀ ଭୌମକରମାନଙ୍କୁ ଆକ୍ରମଣକାରୀ ଯବନ ବୋଲି ଯିଏ ଲେଖିଲେ ନାହିଁ ସିଏ ପ୍ରକୃତ ହିନ୍ଦୁ ଜଗନ୍ନାଥ ପ୍ରେମୀ ରାଷ୍ଟ୍ରକୂଟମାନଙ୍କୁ ଆକ୍ରମଣକାରୀ ଯବନ ବା ମୋଗଲ ବୋଲି ଲେଖିଦେଲେ ଏହାକୁ କିପରି ବିଶ୍ୱାସ କରିହେବ !

ତେଣୁ ମାଳଦାକାରମାନେ ସେତେବେଳେ ଖୁବ୍ ଶିକ୍ଷିତ ନଥାଇ ପାରନ୍ତି, କିନ୍ତୁ ନିଶ୍ଚିତ ବୁଦ୍ଧିଜୀବୀ ଥିଲେ । ଲେଖାପଢ଼ା ଜାଣିଥିଲେ, ରାଜନୀତି, ସଂସ୍କୃତି ଏବଂ ଧର୍ମ ଉପରେ ଖୁବ ସଚେତନ ନିଶ୍ଚିତ ଥିଲେ । ତେଣୁ ସେ ନିଜ ଦିଅଁ, ନିଜ ମନ୍ଦିର, ନିଜ ଧର୍ମ, ନିଜ ସଂସ୍କୃତିର ପୃଷ୍ଠପୋଷକଙ୍କୁ ବା କାହିଁକି ଯବନ ଆଖ୍ୟା ଦେବେ ?

ଦ୍ୱିତୀୟ- ରକ୍ତବାହୁ ଏକ ବ୍ୟକ୍ତିଗତ ନାମ । ଶ୍ରୀ ସାହୁ ରାଷ୍ଟ୍ରକୂଟମାନଙ୍କ ମଧ୍ୟରେ ରକ୍ତବାହୁଙ୍କୁ ସ୍ପଷ୍ଟ ଚିହ୍ନଟ ନ କରି ରାଷ୍ଟ୍ରକୂଟ ଯବନ ରକ୍ତବାହୁ ବୋଲି ଲେଖିଛନ୍ତି ।

ଶ୍ରୀଜଗନ୍ନାଥଙ୍କଠାରୁ ବୌଦ୍ଧତନ୍ତ୍ରର କାଳିମା ଅପସାରଣ କରିବା ପାଇଁ ରାଷ୍ଟ୍ରକୂଟମାନେ ଆକ୍ରମଣ କରିଥିଲେ ଏହା ସେତେ ବଳିଷ୍ଠ ମନେହେଉ ନାହିଁ । ବୌଦ୍ଧତନ୍ତ୍ରର କାଳିମା ଯୋଗୁଁ ଯେ ଯେ ଭୂମିକୁ ମ୍ଳେଚ୍ଛ କୁହା ଯାଉଥିଲା ଏବଂ ତୀର୍ଥଯାତ୍ରା ବ୍ୟତୀତ ଅନ୍ୟ ଯେ କୌଣସି ପ୍ରସଂଗରେ ଯେ ଭୂଇଁକୁ ଆସିଲେ ପ୍ରାୟଶ୍ଚିତ କରିବାକୁ ପଡୁଥିଲା ଏହା ସର୍ବମାନ୍ୟ ହୋଇ ନ ପାରେ ।

ଯେଉଁ ରାଜବଂଶରେ ରାଜାମାନେ ବୌଦ୍ଧବାଦୀ ଥିବାବେଳେ ଶେଷ ରାଣୀମାନେ ପରମ ବୈଷ୍ଣବୀ ଥିଲେ ସେ ରାଜବଂଶ ବୈଷ୍ଣବପୀଠର ପୁନରୁଦ୍ଧାର କରିବା ପାଇଁ ଚାହୁଁଥିବା ରାଷ୍ଟ୍ରକୂଟମାନଙ୍କୁ ଯବନ ଆଖ୍ୟାଦେବା ସହଜ ମନେ ହେଉନାହିଁ, କିମ୍ୱା ତାଙ୍କ ସେନାପତିଙ୍କୁ ଲୁଣ୍ଠନକାରୀ ରକ୍ତବାହୁ କହିବା କେତେଦୂର ଯୁକ୍ତିଯୁକ୍ତ ଏହା ଅନେକବାର ଚିନ୍ତା କରିବାକୁ ହେବ । ଶ୍ରୀ ସାହୁ ସୋନପୁରରେ ଶ୍ରୀଜଗନ୍ନାଥଙ୍କୁ ପାତାଳି କରାଯିବା ସମ୍ପର୍କରେ ଦୁଇଟି ମତ ଦେଇଛନ୍ତି -

୧. ଶ୍ରୀଜଗନ୍ନାଥଙ୍କୁ ଗୋପନ କରି ନଥିଲେ ବୋଧହୁଏ ଭୌମକରମାନେ ରାଷ୍ଟ୍ରକୂଟମାନଙ୍କୁ ଧର୍ମ ବିଦ୍ୱେଷୀ ଭାବେ ସ୍ୱୀକାରୋକ୍ତି ଦେଇ ପାରି ନଥାନ୍ତେ ଓ ତତ୍‌କାଳୀନ ଉତ୍କଳୀୟ ଜନଚେତନାକୁ ରାଷ୍ଟ୍ରକୂଟ ବିରୋଧି ଭାବନାରେ ଦ୍ରବୀଭୂତ କରାଇ ପାରିନଥାନ୍ତେ ।

୨. ଦ୍ୱିତୀୟ କାରଣଟି ହେଲା, ସେତେବେଳେ ସୋନପୁର ଅଞ୍ଚଳରେ ସୋମବଂଶୀମାନେ ଶାସନ କରୁଥିଲେ । ଏହି ସୋମବଂଶୀମାନେ ବୌଦ୍ଧଧର୍ମ ବିରୋଧି ନଥିଲେ ଏବଂ ଏମାନଙ୍କର ଭୌମକରମାନଙ୍କ ସହ ଉତ୍ତମ ସଦ୍‌ଭାବ ଥିଲା (ଏପରିକି ବୈବାହିକ ସମ୍ପର୍କ ଥିଲା) । ପୁରୀଠାରୁ ସୋନପୁର ଦୂରତା ଅଧିକ ହୋଇଥିବାରୁ ହୁଏତ ଶ୍ରୀଜଗନ୍ନାଥଙ୍କ ଆତ୍ମଗୋପନ ପାଇଁ ସୁରକ୍ଷିତ ସ୍ଥାନ ହୋଇ ପାରିଥାଏ ।

ଓଡ୍ରଦେଶ ରାଜବଂଶାବଳୀ (ସଂପାଦନା - ଡ଼କ୍ଟର କାହ୍ନୁ ଚରଣ ମିଶ୍ର, ୧୯୮୩ । ଯାହାକି ତେଲୁଗୁ ଲିପି ସଂସ୍କୃତ ଭାଷାରେ ରଚିତ ଥିଲା, ଡ଼.ମିଶ୍ର ଦେବନାଗରୀ ଲିପିରେ ଓଡ଼ିଆ ଅନୁବାଦ ଦେଇ ପ୍ରକାଶ କରିଛନ୍ତି) । ଅନୁଧ୍ୟାନ କଲେ ଶ୍ରୀ ସାହୁଙ୍କର ପ୍ରଥମ ମତଟି ଆଉ ବଳିଷ୍ଠ ହୋଇ ରହୁନାହିଁ । ସେଥିରେ ଲେଖାଅଛି -

''ଅନନ୍ତରଂ ଶୋଭନଦେବ ନାମା ରାଜା ରାଜ୍ୟଂ ଚକାର । ଅସ୍ୟ ରାଜ୍ୟକାଳାବସରେ ପୋତମାରୂଢ଼େନ ହସ୍ତ୍ୟଶ୍ୱାଦି ସେନୟା ସହ ରକ୍ତବାହୁ ନାମକ ମ୍ଳେଚ୍ଛାଧିପେନ ସମୁଦ୍ରମାର୍ଗେଣ ଗତ୍ୱା କନକାଖ୍ୟର - ରାଜ୍ୟସୀମସମୁଦ୍ରେ ଉତ୍ତୀର୍ଣ୍ଣମ୍ । ସମୁଦ୍ରମଧ୍ୟେ ଆଗମନସମୟେ ହସ୍ତୀପୁରୁଷାଦିକଂ ଶ୍ରୀପୁରୁଷୋତ୍ତମକ୍ଷେତ୍ରେ ସ୍ୱର୍ଗଦ୍ୱାରସନ୍ନେ ଲବଣୋଦ-ବେଳାୟାଂ ଲଗ୍ନଂ ଦୃଷ୍ଟ୍ୱା ରାଜାମାତ୍ୟାଦିଭିଃ ଦାରୁମୟସ୍ଥୟିତ୍ୱା ଭଗବତୋ ନୀଳାଦ୍ରିନାୟକସ୍ୟ ଶ୍ରୀମୂର୍ତ୍ତିଂ ସୁବର୍ଣ୍ଣପୁରନାୟକସ୍ୟ ରାଜ୍ୟେଷୁ ଗୋପୁରେ ଗ୍ରାମେ ଭୂମ୍ୟନ୍ତଂ ପାଷାଣନିର୍ମିତ ସୁଧାବିଗ୍ରହେ ସ୍ଥାପୟିତ୍ୱା ତଦୁପରି ମୃତ୍ତିକାଦୀନ୍ ଦତ୍ତ୍ୱା ବଟ ବୃକ୍ଷରୋପଣଂ କୃତମ୍ । ସେବକୈଃ ଦେଶାନ୍ତରଂ ଗତମ୍ ରାଜାପି ଅରଣ୍ୟମଧ୍ୟେ ପ୍ରବିଷ୍ଟମ୍'' (ପୃଷ୍ଠା ୩-୪) ।

ଅର୍ଥାତ୍ ଅନନ୍ତର ଶୋଭନ ଦେବ ନାମକ ରାଜା ରାଜ୍ୟ କରିଥିଲେ । ଏହାଙ୍କ ରାଜୁତି ସମୟରେ ନୌକାରେ ହସ୍ତି ଅଶ୍ୱ ପ୍ରଭୃତି ସେନା ସଜ କରି ରକ୍ତବାହୁ ନାମକ ମ୍ଳେଚ୍ଛ ରାଜା ସମୁଦ୍ର ବାଟରେ ଯାଇ କନିକା ରାଜ୍ୟର ପ୍ରାନ୍ତ ସମୁଦ୍ରରେ ପାର ହୋଇଥିଲେ । ସମୁଦ୍ର ମଧ୍ୟରେ ଆସୁଥିବା ବେଳେ ତାଙ୍କର ହାତୀ ଓ ଲୋକମାନେ ପୁରୁଷୋତ୍ତମ କ୍ଷେତ୍ରସ୍ଥ ସ୍ୱର୍ଗଦ୍ୱାର ସନ୍ନିକଟ ଲବଣସାଗର ତୀରରେ ଲାଗିବା ଦେଖି ରାଜା ମନ୍ତ୍ରୀ ପ୍ରଭୃତିଙ୍କୁ ସହ ମନ୍ତ୍ରଣା କରି ଭଗବାନ ନୀଳାଦ୍ରିନାଥଙ୍କ ଶ୍ରୀମୂର୍ତ୍ତିକୁ ସୁବର୍ଣ୍ଣପୁର ନାମକ ରାଜ୍ୟକୁ ନେଇ 'ଗୋପୁର' ନିକଟ ଭୂମି ଗର୍ଭରେ ଚୂନ ଧଉଳା ହୋଇଥିବା ପାଷାଣ ନିର୍ମିତ ଗୃହରେ ସ୍ଥାପନ କରାଇ ତାହା ଉପରେ ମାଟି ପ୍ରଭୃତି ଦେଇ ବଟବୃକ୍ଷ ରୋପଣ କରିଥିଲେ । ସୁବର୍ଣ୍ଣପୁର ରାଜା ସେବକମାନଙ୍କ ସହିତ ଦେଶାନ୍ତର ଗଲେ । ରାଜା ମଧ୍ୟ ଅରଣ୍ୟରେ ପ୍ରବେଶ କଲେ । (ପୃ-୪୩)

ଏହା ପରବର୍ତ୍ତୀ ସଂସ୍କୃତ ଭାଷାରେ ଲିଖିତ ଘଟଣାର ଅନୁବାଦ ହେଲା- ''ତା ପରେ ରକ୍ତବାହୁ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଆସି ପ୍ରାସାଦଶୂନ୍ୟ ଥିବାର ଦେଖି ତାଙ୍କର ଆଗମନ କଥା ଜଣାଯାଇଛି ବୋଲି ଜାଣିଥିଲେ । ସମୁଦ୍ର ଏକଥା କହିଲେ ବୋଲି ଭାବି, ତା ଉପରେ 'ଗୁଣ୍ଡ' ନାମକ ଆଗ୍ନେୟ ଅସ୍ତ୍ର ପ୍ରଭୃତି ନିକ୍ଷେପ କରିଥିଲେ । ସେ ସମୟରେ ସମୁଦ୍ର, ବେଳା ଅତିକ୍ରମ କରି ଦୁଇ ପୁରୁଷ ପରିମାଣରେ ମାଡ଼ି ଆସିଥିଲା ଏବଂ ପରିଖାପରି ଦେଉଳକୁ ଘେରି ଥିଲା । ରକ୍ତବାହୁ ତାହା ଦେଖି ମନ୍ଦିରରେ ପ୍ରବେଶ କରି ନପାରି ବ୍ୟତିବ୍ୟସ୍ତ ହୋଇଥିଲା । ସେ ଜଳପ୍ରବାହ ଦଶପଲ୍ଲୀ ରାଜ୍ୟ ପର୍ଯ୍ୟନ୍ତ ଯାଇଥିଲା । ତାହା ପରେ ଏହିପରି ଫେରି ଆସୁଥିବା ସମୟରେ ଜଳସ୍ରୋତର ବେଗରେ ଦଶ ଯୋଜନ ପର୍ଯ୍ୟନ୍ତ ପରିଧି କ୍ରମରେ ଗୋଟିଏ ଖାତ ହୋଇ ଯାଇଥିଲା । ତାହାର ନାମ 'ଜଳବା' ବୋଲି ଲୋକରେ ପ୍ରସିଦ୍ଧି ଲାଭ କଲା । ରାଜା ଅରଣ୍ୟରେ ପ୍ରାଣତ୍ୟାଗ କଲେ । (ତତ୍ରୈବ) ।

ସୁବର୍ଣ୍ଣପୁରରେ ଗୋପାଳି ଗ୍ରାମରେ ଜଗନ୍ନାଥଙ୍କ ଅବସ୍ଥିତି ସମ୍ବନ୍ଧରେ ଏହି ବଂଶାବଳୀରୁ ଜଣାଯାଉଛି ସେଠାରେ ୧୯୨ ବର୍ଷ ରହିଥିଲେ । ଯଥା -

''ଇତଃ ପରଂ ଯବନଭୋଗ୍ୟୋ ଜାତୋଽୟଂ ଦେଶଃ । ତଦାନୀଂ ବ୍ରାହ୍ମଣାଦୟଃ ପ୍ରାୟେଣ ଦେଶାନ୍ତରଂ ଗତାଃ । ଶ୍ରୀପୁରୁଷୋତ୍ତମକ୍ଷେତ୍ରଂ ଉତ୍ସନ୍ନପ୍ରାୟଂ, ଜାତମ୍ । ଯବନାନାଂ ରାଜ୍ୟ ଭୋଗକାଳଃ ଷଟ୍ଚତ୍ୱାରିଂଦଶଧିକଶତଂ ବର୍ଷାଣି । ଏତ୍ଦଯୋଗେ ଗତ ଶକାବ୍ଦ୍ୟାଃ ରସାଙ୍କବହ୍ନୟଃ । ସୁବର୍ଣ୍ଣପୁରଗ୍ରାମସ୍ଥ ଗୋପବିଗ୍ରାମେ ଶ୍ରୀମୂର୍ତ୍ତିସ୍ଥିତିଃ ଦ୍ୱିନବତ୍ୟଧିକଶତଂ ବର୍ଷାଣି (ପୃ- ୪) ।

ଅର୍ଥାତ୍, ଏହାପରେ ଏ ଦେଶ ଯବନଙ୍କର ଅଧୀନ ହେଲା । ସେ ସମୟରେ ବ୍ରାହ୍ମଣ ପ୍ରଭୃତି ପ୍ରାୟ ଅନ୍ୟ ଦେଶକୁ ଚାଲି ଯାଇଥିଲେ । ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ପ୍ରାୟ ନଷ୍ଟଭ୍ରଷ୍ଟ ହୋଇ ଯାଇଥିଲା । ଯବନମାନଙ୍କ ରାଜ୍ୟଭୋଗକାଳ ଷଟ୍ ଚତ୍ୱାରିଂଶଦଧିକଶତବର୍ଷ ଅର୍ଥାତ୍ ୧୪୬ ବର୍ଷ । ମୋଟ ଶକାବ୍ଦ ଗତ ହେଲା ରସାଙ୍କ ବହ୍ନିପରିମିତ ୩୯୬ ବର୍ଷ । ସୁବର୍ଣ୍ଣପୁର ଗ୍ରାମସ୍ଥ ଗୋପଳି ଗ୍ରାମରେ ଶ୍ରୀମୂର୍ତ୍ତିଙ୍କର ଅବସ୍ଥିତି ହେଲା ଦ୍ୱିନବତ୍ୟଧିକ ଶତବର୍ଷ ଅର୍ଥାତ୍ ୧୯୨ ବର୍ଷ । (ପୃ- ୪୪)

ଅତଏବ ଉପରେ କୁହାଗଲା ଗୋପୁର ନିକଟ ଭୂମିଗର୍ଭରେ ପାଷାଣ ନିର୍ମିତ ଗୃହରେ ମହାପ୍ରଭୁଙ୍କୁ ସ୍ଥାପନ କରାଇବା ପରେ ସୁବର୍ଣ୍ଣପୁର ରାଜା ସେବକମାନଙ୍କ ସହ ଦେଶାନ୍ତର ଗଲେ । ରାଜା ମଧ୍ୟ ଅରଣ୍ୟରେ ପ୍ରବେଶ କଲେ । ଯେଥିରୁ ଜଣାପଡୁଛି ଦୁଇଜଣ ରାଜା ଏହି କାର୍ଯ୍ୟରେ ପ୍ରତ୍ୟକ୍ଷ ସଂଶ୍ଳିଷ୍ଟ । ଜଣେ ସୁବର୍ଣ୍ଣପୁର ରାଜା । ସେତେବେଳେ ସୁବର୍ଣ୍ଣପୁରରେ ଭୌମକର ବଂଶ ରାଜତ୍ୱ କରୁଥିଲେ, ତେଣୁ ଭୌମକର ବଂଶର ତତ୍‌କାଳୀନ ରାଜା ହିଁ ଉପର ବର୍ଣ୍ଣିତ ସୁବର୍ଣ୍ଣପୁର ରାଜା । ଯେକି ସେବକମାନଙ୍କ ସହିତ ଦେଶାନ୍ତର ଯାଇଥିଲେ । ଯାଙ୍କ ସହତ 'ସେବକ'ମାନେ ଥିବାରୁ ସେବକମାନଙ୍କ ସହାୟତାରେ ଯେ ହିଁ ମହାପ୍ରଭୁଙ୍କୁ ପୁରୀରୁ ସ୍ଥାନାନ୍ତରିତ କରାଇ ଗୋପୁରରେ ପାତାଳି କରାଇବା ଅଧିକ ଯୁକ୍ତିଯୁକ୍ତ ମନେ କରାଯାଇ ପାରେ । ମାତ୍ର ସେଠାରେ ଆଉ ଜଣେ ରାଜା ଥିଲେ ଯେ କି ଅରଣ୍ୟରେ ପ୍ରବେଶ କଲେ ସେ ରାଜା କିଏ ତାହା ନିର୍ଦ୍ଦିଷ୍ଟ ହୋଇ ନାହିଁ । ଉକ୍ତ ଗ୍ରନ୍ଥର ପରବର୍ତ୍ତୀ ବର୍ଣ୍ଣନାରୁ ଜଣାଯାଉଛି ସେ ରାଜା "ଅରଣ୍ୟରେ ପ୍ରାଣତ୍ୟାଗ କଲେ" । ଆମ୍ଭର ମନେହୁଏ ଉକ୍ତ ରାଜା ସୁବର୍ଣ୍ଣପୁର ରାଜାଙ୍କର ଜଣେ କରଦ ରାଜା ହୋଇଥିବେ କିମ୍ବା 'ଉତ୍କଳ'ର ରାଜା ହୋଇଥିବେ । ଦ୍ୱିତୀୟ ସମ୍ଭାବନାଟି ଯୁକ୍ତିଯୁକ୍ତ । ଉତ୍କଳ ରାଜା ଜଗନ୍ନାଥଙ୍କ ରାଜା ହୋଇଥିବାରୁ ସୁବର୍ଣ୍ଣପୁର ରାଜାଙ୍କର ସର୍ବଧର୍ମପ୍ରୀତି ଯୋଗୁଁ ସ୍ୱତନ୍ତ୍ର ରାଜା ହୋଇ ରହିଥିବେ ଏବଂ ସୁସମ୍ପର୍କ ମଧ୍ୟ ଥିବ । ସେତେବେଳେ କିପରି ସୁବର୍ଣ୍ଣପୁର ରାଜା ଉତ୍କଳ ପ୍ରାନ୍ତକୁ ସିଧା ଶାସନ ନ କରି ଅନ୍ୟାନ୍ୟ ଦକ୍ଷିଣ, ମଧ୍ୟ ଓ ମହାକାନ୍ତାର ପ୍ରାନ୍ତକୁ ସିଧାସଳଖ ଶାସନ କରୁଥିଲେ ତାହାର ଏକ ସୁବିସ୍ତୃତ ଚିତ୍ର ଆଗକୁ ଦିଆଯାଇଛି ।

ତେଣୁ ମହାପ୍ରଭୁଙ୍କ ପାତାଳି ବିଜେର ଦୁଇ ଜଣ ରାଜା ସଂଶ୍ଳିଷ୍ଟ ଥିଲେ । ଜଣେ ଦେଶାନ୍ତର ଯିବାବେଳେ ଜଣେ ଅରଣ୍ୟରେ ପ୍ରବେଶ କରିଥିଲେ, ତେଣୁ ରକ୍ତବାହୁ ପ୍ରବଳ ଆକ୍ରମଣ କିପରି ଲୋମହର୍ଷଣକାରୀ ଥିବ ତାହା ଅନୁମେୟ ।

ରକ୍ତବାହୁର ହାତୀ ଓ ଲୋକମାନେ ପୁରୁଷୋତ୍ତମ କ୍ଷେତ୍ରର ସ୍ୱର୍ଗଦ୍ୱାରରେ ଲାଗିବାରୁ ରାଜା ମନ୍ତ୍ରୀ ପ୍ରଭୃତିଙ୍କ ସହ ମନ୍ତ୍ରଣା କରିଥିଲେ । ତେଣୁ ଏହି ରାଜା କେବେ ସୁବର୍ଣ୍ଣପୁର ରାଜା ହୋଇ ନଥିବେ । ନିଶ୍ଚିତ ସ୍ଥାନୀୟ ରାଜା ହୋଇଥିବେ । ସ୍ଥାନୀୟ ରାଜା ହିଁ ମହାପ୍ରଭୁଙ୍କ ଉପରେ ବିପଦ ଦେଖି ମହାପ୍ରଭୁଙ୍କୁ ବନ୍ଧୁତ୍ୱ ଥିବା ସୁବର୍ଣ୍ଣପୁର ରାଜାଙ୍କ ମାରଫତରେ (ସେବକମାନଙ୍କ ସହାୟତାରେ) ଟେକିଦେଇ ଅରଣ୍ୟରେ ପ୍ରବେଶ କରିଛନ୍ତି । ତେଣୁ ଭୌମକରମାନେ ଯେଉଁଠି ସିଧାସଳଖ ସଂପୃକ୍ତ ନୁହଁନ୍ତି ସେଠି ରାଷ୍ଟ୍ରକୂଟମାନଙ୍କୁ ଧର୍ମବିଦ୍ୱେଷୀ ଭାବେ ସ୍ୱୀକାରୋକ୍ତି ଦେବା ପାଇଁ ଶ୍ରୀଜଗନ୍ନାଥଙ୍କୁ ଯେ ଗୋପନ କରିଥିଲେ କହିବା ପାଇଁ ଆଉରି ବଳିଷ୍ଠ ପ୍ରମାଣ ଦରକାର ।

ଯେଠି ଆଉ ଗୋଟିଏ କଥା ସ୍ପଷ୍ଟ ହେଉଛି ଯେ ରକ୍ତବାହୁ ଆକ୍ରମଣ ପରେ ଏ ଦେଶ ଯବନ ଅଧୀନ ହେଲା । ବ୍ରାହ୍ମଣମାନେ ଅନ୍ୟଦେଶକୁ ଚାଲି ଯାଇଥିଲେ । କ୍ଷେତ୍ର ନଷ୍ଟଭ୍ରଷ୍ଟ ହୋଇ ଯାଇଥିଲା । ଅର୍ଥାତ୍ ରକ୍ତବାହୁର ଆକ୍ରମଣରେ ଅନେକ ମରିଥିବେ । କେତେକ ଦେଶ ଛାଡ଼ି ଚାଲିଯିବା ପରେ ରାଜା ନଥିବାରୁ ମନ୍ଦିର ସମେତ ଅନ୍ୟାନ୍ୟ ସ୍ଥାନରୁ ମଧ୍ୟ ରକ୍ତବାହୁ ନିର୍ଦ୍ୱନ୍ଦରେ ଲୁଣ୍ଠନ କରିଥିବ ।

## ଶ୍ରୀଜଗନ୍ନାଥଙ୍କ ଶ୍ରୀକ୍ଷେତ୍ର ବିଜେ :

ଭୌମକର ରାଜତ୍ୱ ଅଷ୍ଟମ ଶତାବ୍ଦୀରେ ଅର୍ଥାତ୍ ଶୁଭାକର ଦେବଙ୍କ ରାଜତ୍ୱ ସମୟରେ ଜଗନ୍ନାଥ ସୋନପୁରରୁ ସ୍ଥାନାନ୍ତର ହୋଇଥିଲେ, ଏହାର ୧୪୪ ବର୍ଷ ପରେ ଅର୍ଥାତ୍ ୯ମ ଶତାବ୍ଦୀର ମଧ୍ୟ ଭାଗରେ ଶ୍ରୀଜଗନ୍ନାଥ ପୁରୀକୁ ବିଜେ କରିଥିଲେ । ସେତେବେଳକୁ କେଶରୀମାନଙ୍କ ଉନ୍ମେଷ କାଳ । ଏହି ସମୟରେ ଶଙ୍କରାଚାର୍ଯ୍ୟ ମଧ୍ୟ ପୁରୀକୁ ଆସିଛନ୍ତି । (ତାଙ୍କର ଅନ୍ତିମ କାଳକୁ ୮୩୯ ଖ୍ରୀ. ଧରାଯାଇଛି ।) ଅନେକ ଶଙ୍କରାଚାର୍ଯ୍ୟଙ୍କ କାଳ ଖ୍ରୀ ୭୮୮ରୁ ଖ୍ରୀ ୮୨୦ ବୋଲି ମତ ଦେଇଛନ୍ତି ।

ଶୋଭନଦେବଙ୍କ ପରେ ଚନ୍ଦ୍ରକର ଦେବ ରାଜା ହେଲେ ତେର ବର୍ଷ । ତାଙ୍କ ରାଜତ୍ୱରେ ମଧ୍ୟ ସୋନପୁରରୁ ପ୍ରଭୁଙ୍କୁ ଅଣାଯାଇ ନାହିଁ । ଚନ୍ଦ୍ରକରଙ୍କ ପରେ ୩୫ ବର୍ଷ ମୋଗଲମାନେ ରାଜତ୍ୱ କଲେ । ଏହିପରି ଶୋଭନଦେବ ୯୬ ବର୍ଷ + ଚନ୍ଦ୍ରକର ୧୩ବର୍ଷ + ମୋଗଲମାନେ ୩୫· ବର୍ଷ = ୧୪୪ ବର୍ଷ ପ୍ରଭୁ ପାତାଳି ହୋଇ ରହିଲେ । ଯବନମାନଙ୍କ ରାଜତ୍ୱରେ ଠାକୁରମାନଙ୍କୁ ଓଡ଼ିଶା ରାଜା ପୁନଃ ରତ୍ନସିଂହାସନରେ ବସାଇପାରି ନାହାନ୍ତି ।

ଐତିହାସିକ ହଣ୍ଟରଙ୍କ ମତରେ ମହାରାଜା ଯଯାତି ହେଉଛନ୍ତି କେଶରୀବଂଶର ପ୍ରତିଷ୍ଠାତା । ଯବନମାନଙ୍କୁ ବିତାଡ଼ିତ କରି ରାଜା ଯଯାତି ଜଗନ୍ନାଥଙ୍କୁ ପୁନଃ ପ୍ରତିଷ୍ଠା କରିବା ଯୋଗୁ ତାଙ୍କୁ ୨ୟ ଇନ୍ଦ୍ରଦ୍ୟୁମ୍ନ କୁହାଯାଇଛି ବୋଲି ହଣ୍ଟର ଅନୁମାନ କରିଛନ୍ତି । ତାଙ୍କ ମତରେ ଯଯାତି ଜଗନ୍ନାଥଙ୍କୁ ପୁନଃ ପ୍ରତିଷ୍ଠା କରିବାରେ ଅନ୍ତତଃ ଦୁଇଟି କଥା ମିଶିଛି । ୨ୟ କଥାଟି ହେଲା ଖ୍ରୀ ୩୧୮ରୁ ୪୭୩ ପର୍ଯ୍ୟନ୍ତ ଓଡ଼ିଶାରେ ଯବନମାନଙ୍କର ଆଧିପତ୍ୟର ସୂଚନା ଦେଉଛି ।

ହଣ୍ଟରଙ୍କର ଉକ୍ତ ୨ୟ କଥାଟିର ସତ୍ୟତା ରହିଛି ବୋଲି ଆମ୍ଭେ ମନେ କରୁ । କିନ୍ତୁ ଏହି ଯବନମାନେ ମୁସଲମାନ ନୁହନ୍ତି । ମୋଗଲ ବି ନୁହନ୍ତି । ୫ମ୍ ଶତାବ୍ଦୀର ଏହି ଯବନମାନଙ୍କ ସମ୍ବନ୍ଧରେ ପୂର୍ବରୁ ବିସ୍ତୃତ ଆଲୋଚନା ଆମେ କରିଛୁ । ସେମାନେ ଭାରତୀୟ ଧର୍ମଧାରାରୁ ବିଚ୍ଛିନ୍ନ ହୋଇଥିବା ଏକ ଆକ୍ରମଣକାରୀ ସାମ୍ରାଜ୍ୟବାଦୀ ଗୋଷ୍ଠୀ । ଯେଉଁମାନେ ପରସ୍ୱ-ଅପହରଣରେ ନିଜର ଉନ୍ନତି ଦେଖୁଥିଲେ ।

କିନ୍ତୁ ନୀଳମାଧବଙ୍କ ଅନ୍ତର୍ଦ୍ଧାନ ଓ ଜଗନ୍ନାଥଙ୍କ ଆବିର୍ଭାବ ପ୍ରସଂଗ ତାଙ୍କର ଠିକ୍ ନୁହେଁ । ଏହି ପ୍ରସଙ୍ଗରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ମତ ଗ୍ରହଣଯୋଗ୍ୟ । ତାଙ୍କ ମତରେ ଚତୁର୍ଦ୍ଧା ମୂର୍ତ୍ତି ଯଯାତିଙ୍କ ଆଗରୁ ଥିଲେ । ଯବନମାନଙ୍କ ଅମଳରେ ଏହି ବିଗ୍ରହମାନଙ୍କୁ ଲୁଚାଇ ରଖା ଯାଇଥିଲା । ଯଯାତି କେବଳ ସେମାନଙ୍କୁ ଆଣି ପୁନଃପ୍ରତିଷ୍ଠା କରିଥିଲେ । ଯଯାତି ଇନ୍ଦ୍ରଦ୍ୟୁମ୍ନ ନୁହଁନ୍ତି କିମ୍ବା ଇନ୍ଦ୍ରଦ୍ୟୁମ୍ନ ୪ର୍ଥ ଶତାବ୍ଦୀର ରାଜା ନୁହଁନ୍ତି । କାରଣ ଯଯାତିଙ୍କର ବହୁ ପୂର୍ବରୁ ରଚିତ ପୁରାଣ ଗ୍ରନ୍ଥରେ ଇନ୍ଦ୍ରଦ୍ୟୁମ୍ନ ଚରିତ୍ରର ଅସ୍ତିତ୍ୱ ରହିଥିଲା ।

ପଣ୍ଡିତ ମହାଶୟଙ୍କ ମତ ମଧ ଓଡ୍ରଦେଶ ରାଜବଂଶାବଳୀ ବର୍ଣ୍ଣନା ଦୃଷ୍ଟିରୁ ସଠିକ୍ ଜଣାପଡୁଛି । ଯଥା - 'ଯାଜପୁର କ୍ଷେତ୍ରରେ ଯଯାତି କେଶରୀ ରାଜ୍ୟ ପାଇଥିଲେ । ଏହାଙ୍କ ପ୍ରଥମ ଅବସ୍ଥାରେ ରାଜକର୍ମ ଛାଡ଼ି ଯଜ୍ଞ କରିଥିଲେ । ରାଜାଙ୍କର ଏପରି ଭାବ ଦେଖି ସେଠାରେ ଉପସ୍ଥିତ ଥିବା ବ୍ରାହ୍ମଣମାନେ ରାଜାଙ୍କୁ କହିଥିଲେ, ''ଛାମୁ ! ବହୁକାଳରେ ପୁରୁଷୋତ୍ତମ କ୍ଷେତ୍ରରେ ଦକ୍ଷିଣ ମହୋଦଧିରେ ''ଗୋବିନ୍ଦ ଦ୍ୱାଦଶୀ'' ନାମକ ସ୍ନାନଯୋଗ ଉପସ୍ଥିତ ହେଉଅଛି । ତାହା ଶୁଣି ରାଜା ବ୍ରାହ୍ମଣମାନଙ୍କ ସହିତ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଲେ । ଫାଲଗୁନ ଶୁକ୍ଳ ଦ୍ୱାଦଶୀରେ ପଡ଼ିଥିବା ଗୋବିନ୍ଦ ଦ୍ୱାଦଶୀ ଯୋଗରେ ସମୁଦ୍ର ନିକଟରେ ବହୁତ ଦାନପୁଣ୍ୟ କରିଥିଲେ ।''

ତାହାପରେ କ୍ଷେତ୍ରର ଅବସ୍ଥା ଅତି ଖରାପ ହୋଇଥିବା ଓ ମନ୍ଦିର ଭାଙ୍ଗି ଯାଇଥିବା ଦେଖି, ସନ୍ନ୍ୟାସୀ ଓ ବ୍ରାହ୍ମଣ ପ୍ରଭୃତିଙ୍କୁ ପଚାରିଥିଲେ । ଦୁଃଖର କଥା ମନ୍ଦିରଟି ଭାଙ୍ଗିଲା ପରି ହୋଇପଡ଼ିଛି । ଭଗବାନଙ୍କର ଶ୍ରୀମୂର୍ତ୍ତି କେଉଁଠାରେ ଅଛି ! (ଅନନ୍ତରଂ କ୍ଷେତ୍ର ମୁତ୍‌ସନ୍ନପ୍ରାୟଂ ଦୃଷ୍ଟ୍ୱା ପ୍ରାସାଦଭଗ୍ନଂ ଚ ଦୃଷ୍ଟ୍ୱା ସନ୍ନ୍ୟାସିବ୍ରାହ୍ମଣାଦୀନ୍ ପୃଷ୍ଟବାନ୍ । ଅହୋ ! ପ୍ରସାଦସ୍ତୁ ଭଗ୍ନ ପ୍ରାୟଃ । ଭଗବତଃ ଶ୍ରୀମୂର୍ତ୍ତିଂ କୁତ୍ର ସ୍ଥାପିତେତି ।) ତାହା ଶୁଣି ସେମାନେ କହିଲେ ଯେତେବେଳେ ରକ୍ତବାହୁ ଆସିଥିଲା ସେହି ଦିନଠାରୁ ଏଠାରୁ ନେଇ ସୁବର୍ଣ୍ଣପୁର ରାଜ୍ୟ ମଧ୍ୟରେ କେଉଁଠି ରଖା ଯାଇଛନ୍ତି ବୋଲି ପରମ୍ପରା କ୍ରମେ ଶୁଣାଯାଏ । ତାହା ଶୁଣି ରାଜା ସେଠାକୁ ଯାଇ ସେଠାକାର ଲୋକଙ୍କୁ ଡ଼ାକି ପଚାରିଥିଲେ । ଆହେ ! କେଉଁଠି ଜଗନ୍ନାଥ ମୂର୍ତ୍ତି ରହିଛନ୍ତି ବୋଲି ଶୁଣିଛ ? ସେମାନେ କହିଲେ, ଆମ୍ଭମାନେ ଶୁଣି ନାହୁଁ । ତାହାପରେ ଖଣ୍ଡାଧିପଙ୍କୁ ଡାକି ପଚାରିଲେ, ଶ୍ରୀଜଗନ୍ନାଥଙ୍କ ପ୍ରତିମା କେଉଁଠି ଅଛନ୍ତି ତୁମ୍ଭେମାନେ ଶୁଣିଛ । ସେମାନେ କହିଲେ, ଏହା ଆମ୍ଭମାନଙ୍କୁ ଅଜଣା । କିନ୍ତୁ ଆମ୍ଭର ପିତାମହ ପ୍ରଭୃତି କହୁଥିଲେ 'ଗୋପିବି' ଗ୍ରାମରେ ଶ୍ରୀମୂର୍ତ୍ତି ଅଛନ୍ତି ବୋଲି ଶୁଣିଥିଲେ । ଏହା ଶୁଣି ରାଜା ସେଠାକୁ ଗଲେ । ସେଠାରେ ଲୋକମାନଙ୍କୁ ଡ଼ାକି ପଚାରିଲେ । ଆହେ, ଶ୍ରୀମୂର୍ତ୍ତି କେଉଁଠି ସ୍ଥାପିତ ହୋଇଅଛନ୍ତି ? ସେମାନେ କହିଲେ ଆମ୍ଭମାନେ ଶୁଣି ନାହୁଁ । ତାହା ଶୁଣି ଶ୍ରୀମୂର୍ତ୍ତି ଦର୍ଶନ ନ ପାଇବାରୁ ଦୁଃଖରେ ଉପବାସ କରି ଶୋଇ ରହିଲେ । ସେହି ରାତିରେ ସ୍ୱପ୍ନାଦେଶ ହେଲା । ହେ ରାଜା ! ତୁମ୍ଭେ କାଲି ପୋଖରୀ କୂଳରେ ବସିବ । ସେଠାକୁ ଜଣେ ବୁଢ଼ୀ ଗାଧୋଇ ଆସିବ । ତାକୁ ପଚାରିବ । ରାଜା ସେହିପରି ସେହି ସମୟରେ କଲେ । ସକାଳେ ଗାଧୋଇବା ପାଇଁ ଗୋଟିଏ ବୁଢ଼ୀ ଆସିଲା । ପୋଖରୀରେ ସ୍ନାନସାରି ତା ଉପର ପଟରେ ଥିବା ବରଗଛ ପାଖରେ ମୁଣ୍ଡ ଲଗାଇ ପ୍ରଣାମ କଲା, ତାହା ଦେଖି ରାଜା କହିଲେ ବୃକ୍ଷକୁ ନମସ୍କାର କାହିଁକି କରୁଛୁ ? ତାପରେ ସେ ବୁଢ଼ୀ କହିଲା, ମୋର ବୁଢ଼ାବାପା କହିଛନ୍ତି, ଏ ଗଛର ତଳକୁ ପୁରୁଷୋତ୍ତମ ବୋଲି ଜାଣିମ, ଶ୍ରୀଜଗନ୍ନାଥମୂର୍ତ୍ତି ଏଠାରେ ରହିଅଛନ୍ତି । ଏହି କାରଣରୁ ମୁଁ ଏଠାରେ ପ୍ରତିଦିନ ପୂଜା ଓ ପ୍ରଣାମ କରେ ।

(ଅବିକଳ ପୃ - ୪୫)

''ପ୍ରାତଃ କାଳେ ସ୍ନାନାର୍ଥମେକା ବୃଦ୍ଧା ଆଗତ୍ୟ ପୁଷ୍କରିଣ୍ୟାଂ ସ୍ନାତ୍ୱା ତଦୁପରିଭାଗେ ବଟବୃକ୍ଷେ ଶିରସା ବନ୍ଦନଂ କୃତମିତି । ତଦ୍ ଦୃଷ୍ଟ୍ୱା ରାଜ୍ଞୋକ୍ତମ୍ । ବୃକ୍ଷବନ୍ଦନଂ କିମର୍ଥଂ କୃତମିତି ।

ତୟୋକ୍ତଂ ମଦୀୟପିତାମହେନୋକ୍ତମେତଦ୍ ବୃକ୍ଷାଧଃ ଶ୍ରୀପୁରୁଷୋତ୍ତମାଦାନୀୟ ଶ୍ରୀଜଗନ୍ନାଥମୂର୍ତ୍ତିଃ ସ୍ଥାପିତେତି । ଅତଃ କାରଣାତ୍ ଇହ ମୟା ପ୍ରତ୍ୟହଂ ବନ୍ଦନଂ କ୍ରିୟତେ ଇତି ।''
(ପୃ-୬)

ତାହା ଶୁଣି ସେଠାରେ ଥିବା ଆରଣ୍ୟକ ବ୍ରାହ୍ମଣମାନଙ୍କୁ ଡ଼କାଇ ବରଗଛକୁ କଟାଇ ଖୋଳାଇଥିଲେ । ତାହାପରେ ସୁଧାଲିପ୍ତ ଗୃହ ମଧ୍ୟରେ ଭଗବାନଙ୍କର ଶ୍ରୀମୂର୍ତ୍ତି ଚତୁଷ୍ଟୟକୁ ଦେଖି ଆନନ୍ଦିତ ହୋଇଥିଲେ । ତାପରେ ପ୍ରତିମାକୁ ସେଠାରୁ ଆଣିବା ପାଇଁ ସେବକମାନଙ୍କର ଅନ୍ୱେଷଣ କରିଥିଲେ । ତେବେ ସୁଦ୍ଧା ସେବକ ମିଳି ନଥିଲେ । ତଦନନ୍ତର ରାଜା ଭଗବାନଙ୍କୁ ଜଣାଇ ଉପବାସ କରି ରାତିରେ ଶୋଇଲେ । ତାହାପରେ ସ୍ୱପ୍ନାଦେଶ ବଳରେ ସେବକ ସଂଗ୍ରହ କଥା ବର୍ଣ୍ଣିତ ହୋଇଛି । ସେବକମାନେ 'ଚାରିବନ୍ଧକ' ଗ୍ରାମରେ ଥିଲେ ମୋଟ ପାଞ୍ଚଜଣ ।

ଅନନ୍ତର କିଛି କାଳପରେ, ଅତିଜୀର୍ଣ୍ଣ ଶ୍ରୀଭଗବାନଙ୍କ ବିଗ୍ରହ ଚତୁଷ୍ଟୟକୁ ପାଟ ଲୁଗାରେ ଗୁଡ଼ାଇ ବିଦ୍ୟାପତି ବଂଶୀୟ ବିଶ୍ୱାବସୁ କୁଳଜାତ ସେଠାକାର ଆରଣ୍ୟକ ବ୍ରାହ୍ମଣମାନଙ୍କ ସହିତ ମୋଟ ଏଗାର ଜଣ, ସୁଆରୀରେ ଥୋଇ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଆଣିଥିଲେ ।
(ପୃ-୪୬)

''ଅନନ୍ତରଂ କାଳବଶେନାତିଜୀର୍ଣ୍ଣଂ ଶ୍ରୀଭଗବତୋ ବିଗ୍ରହ ଚତୁଷ୍ଟୟଂ ପଟ୍ଟବସ୍ତ୍ରାଦିନା ବେଷ୍ଟୟିତ୍ୱା ବିଦ୍ୟାପତି-ବଂଶ୍ୟେନ ବିଶ୍ୱାବସୁକୁଳୋତ୍ପନ୍ନେନ ତତ୍ରତ୍ୟାରଣ୍ୟକ ର୍ବ ରିହସ୍ତ ବ୍ରାହ୍ମଣୈଃ ସମ୍ଭୂୟୈକାଦଶଭିଃ ଶିବିକାୟାମାରୋପ୍ୟ ଶ୍ରୀପୁରୁଷୋତ୍ତମକ୍ଷେତ୍ରଂ ପ୍ରତ୍ୟାନୀତମ୍ ।।
(ପୃ-୭)

ଯେଥିରୁ ସ୍ପଷ୍ଟ ହେଉଛି ଯେ ଯଯାତିଙ୍କ ପୂର୍ବରୁ ଚତୁର୍ଦ୍ଧାମୂର୍ତ୍ତି ପୂଜିତ ହେଉଥିଲେ । ଯେଉଁ ଚତୁର୍ଦ୍ଧାମୂର୍ତ୍ତିଙ୍କି ସେ 'ସୁଆରୀ'ରେ ଥୋଇ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଆଣିଥିଲେ । କିନ୍ତୁ ଓଡ୍ରଦେଶ ରାଜବଂଶାବଳୀ ବର୍ଣ୍ଣନାରୁ ଜଣାଯାଉ ନାହିଁ ଯେ ଉକ୍ତ ଚତୁର୍ଦ୍ଧାମୂର୍ତ୍ତି 'ଦାରୁବିଗ୍ରହ' ଥିଲେ ନାଁ ପାଷାଣ ବିଗ୍ରହ ଥିଲେ । କେବଳ 'ଅତିଜୀର୍ଣ୍ଣ' ଶବ୍ଦରୁ ଅନୁମାନ କରାଯାଇ ପାରେ ଯେ 'ଦାରୁବିଗ୍ରହ' ଥିଲେ । ବଂଶାବଳୀର ପରବର୍ତ୍ତୀ ବର୍ଣ୍ଣନାରୁ ଜଣାପଡୁଛି ନୂତନ ଦାରୁ ଛେଦନ କରି ନୂତନ ବିଗ୍ରହ ପ୍ରତିଷ୍ଠା କରା ଯାଇପାରେ । କିନ୍ତୁ ଏହାକୁ ଶେଷ ସିଦ୍ଧାନ୍ତ ରୂପେ ଗ୍ରହଣ କରିବା କଷ୍ଟକର । କାରଣ ପୂର୍ବରୁ ଆମେ ବର୍ଣ୍ଣନା କରିଛୁ ଯେ, ଡ଼. ସତ୍ୟନାରାୟଣ ରାଜଗୁରୁଙ୍କ ମତରେ ୧୩ଶ ଶତାବ୍ଦୀର ଶେଷାର୍ଦ୍ଧ ପର୍ଯ୍ୟନ୍ତ ତିନୋଟି ପାଷାଣ ବିଗ୍ରହ ପୂଜିତ ହେଉଥିଲେ । ସେ ସମ୍ବନ୍ଧରେ ଅନ୍ତିମ ନିର୍ଣ୍ଣୟରେ ପହଞ୍ଚିବା ପାଇଁ ଗବେଷଣା ଅବ୍ୟାହତ ରହିଛି ।

ସୋନପୁରର ଗୋପାଳି ଗ୍ରାମରୁ ଶ୍ରୀଜଗନ୍ନାଥଙ୍କ ଉଦ୍ଧାର ଓ ପୁରୀ ଆଗମନ ବିଷୟରେ ମାଦଳାପାଂଜି କହେ - ''ଏହାଶୁଣି ରାଜା କଟୁରିଆ ବ୍ରାହ୍ମଣଙ୍କୁ ଆଣି ସେ ଗଛ ଖୋଳାଇଲେ । ପରମେସରଙ୍କୁ ବାହାର କଲେ । ସେ ଦିନେ ଶ୍ରୀମୂର୍ତ୍ତିମାନ ମାଟି ଖାଇ ଛିନ୍ନଭିନ୍ନ ହୋଇଛନ୍ତି । ପେଅମାନଙ୍କୁ ଲୁଗା ଗୁଡ଼ାଇ ମୁଣାରେ ପୁରାଇ ମୁଦାଇଲେ । ଏ ଉତ୍ତାରୁ ଦଇତାପତିଙ୍କୁ

ଲୋଡ଼ାଇଲେ । ଏମାନଙ୍କୁ ଅଣାଇ ବିଧିପତ୍ର ପ୍ରମାଣେ ଦାରୁଚ୍ଛେଦନ କରାଇ ପରମେଶ୍ୱରଙ୍କୁ ସୁମୂର୍ତ୍ତି କରାଇଲେ । ଶ୍ରୀପୁରୁଷୋତ୍ତମେ ହା ୩୮ଥ କରି ପଟୋଳ ଗୋଟିଏ ତୋଳି ପ୍ରତିଷ୍ଠା କରି ପରମେସରଙ୍କୁ ବିଜେ କରାଇଲେ ।''

ଏହି ଗୋପାଳି ଗ୍ରାମକୁ ଐତିହାସିକ ଦୀପକ ଭଟ୍ଟାଚାର୍ଯ୍ୟ 'କିମ୍ବଦନ୍ତୀ'ର ବିଷୟ ବୋଲି ଏକ ବିଶେଷଣ ସଂଯୋଗ କରି ଐତିହାସିକ ଏବଂ ପୁରାଣତତ୍ତ୍ୱ ବିଶେଷଜ୍ଞମାନେ ଏହି ସ୍ଥାନଟିକୁ ଖୋଜି ବାହାର କରିବାରେ ଉଦ୍ୟମ ଅବ୍ୟାହତ ରଖିଛନ୍ତି ବୋଲି 'ଝୁରୁଅଛି ଦେଉଳଝରି' ନାମକ ପ୍ରବନ୍ଧରେ (ଉତ୍କଳିକା ୮-୬-୯୮) ଉଲ୍ଲେଖ କରିଛନ୍ତି । ସେ ଏହି ପ୍ରବନ୍ଧରେ 'ମାହେଶ୍ୱରୀ ମାଦଳା' ଏବଂ ମୌଖିକ କିମ୍ବଦନ୍ତୀକୁ ଆଧାର କରି ଯେଉଁ କେତୋଟି ମତର ଅବତାରଣା କରିଛନ୍ତି, ସେଗୁଡ଼ିକ ହେଲା -

୧. ଦେଉଳଝରି ଠାରେ ମହାନଦୀ ବଙ୍କା ହୋଇ ବୁଲିଥିଲା, ତେଣୁ ସ୍ଥାନୀୟ ଲୋକେ 'ବାଙ୍କୀମୁହାଁଣ' ବୋଲି ଆଖ୍ୟା ଦେଇଛନ୍ତି ।

୨. ଏଇ ବାଙ୍କୀମୁହାଁଣ ଠାରେ କୁଆଡ଼େ ଲାଗିଥିଲା 'ଶବରଶର ଭେଦୀ ଦାରୁବ୍ରହ୍ମରେ ପରିଣତ କେଶବଙ୍କ ମରଦେହ ।

୩. ଢାରୁ (ଢାରା) ଶବର କୁଆଡ଼େ ଏହି ଦାରୁବ୍ରହ୍ମଙ୍କୁ ନଦୀ ସ୍ରୋତରୁ ଉଦ୍ଧାର କରି ପୂଜାର୍ଚ୍ଚନା କରୁଥିଲା ।

୪. ନୀଳମାଧବ ଶବ୍ଦକୁ ଆଧାର କରି ସେ ଲେଖିଛନ୍ତି 'ଆଶ୍ଚର୍ଯ୍ୟର କଥା ଦେଉଳଝରି (ଓଡ଼ିସିଙ୍ଗା ଗାଁ)ର ପୃଷ୍ଠଭୂମିକୁ ଚାହିଁଲେ ଚତୁଃପାର୍ଶ୍ୱରେ ଦୃଷ୍ଟିଗୋଚର ହୁଏ ସୁଉଚ୍ଚ ନୀଳ ପର୍ବତ ଶ୍ରେଣୀ (ନୀଳଶୈଳ ଶ୍ରେଣୀ) ।

୫. ଦକ୍ଷିଣ-ପଶ୍ଚିମ ଭାରତର ରାଷ୍ଟ୍ରକୂଟରାଜା ଗୋବିନ୍ଦ (ତୃତୀୟ) ନବମ ଶତାବ୍ଦୀରେ ପଶ୍ଚିମ ଓଡ଼ିଶା ଉପରେ ସାଫଲ୍ୟର ସହିତ ଆକ୍ରମଣ କରିଥିଲେ । ସମ୍ଭବତଃ 'ମାଦଳାପାଂଜି'ରେ ଏହି ଆକ୍ରମଣକୁ 'ରକ୍ତବାହୁ'ର ଭୟାବହ ଆକ୍ରମଣ ଭାବରେ ବର୍ଣ୍ଣିତ କରାଯାଇଛି । ବାସ୍ତବରେ ମନେହୁଏ ରକ୍ତବାହୁର ଭୟାବହ ଆକ୍ରମଣ ସମୟରେ ଦାରୁ ମହାପ୍ରଭୁଙ୍କୁ ଏହି ପ୍ରାକୃତିକ ସୁରକ୍ଷିତ ସ୍ଥାନକୁ ସ୍ଥାନାନ୍ତରିତ କରା ଯାଇଥିଲା । ଦାରୁ ମହାପ୍ରଭୁ ଶବର ଓ କନ୍ଧଙ୍କର ଆରାଧ୍ୟ ଦେବତା ଥିଲେ ।

୬. ଦାରୁବ୍ରହ୍ମଙ୍କର ପ୍ରଥମ ପୂଜକ ଢାରୁ (ଢାରା) କନ୍ଧଙ୍କର ଗାଁ ଥିଲା ଆଠମଲ୍ଲିକ ମହକୁମା ଅନ୍ତର୍ଗତ ଚୁନିବେଡ଼ା ଗାଁ । ଏହି ଚୁନିବେଡ଼ାର ଅଳ୍ପଦୂରରେ ଅଛି ମାଦଳାପାଂଜି ବର୍ଣ୍ଣିତ ଗୋପାଳପୁର ଗାଁ (ଗୋପାଳି) । ଏହି ଗାଁର ପ୍ରତ୍ୟେକ ପରିବାର ଜାତିରେ ଗୋପାଳ ବେହେରା, ଅଥଚ ପ୍ରତ୍ୟେକଙ୍କର ଆପାଦମସ୍ତକ ଖାଣ୍ଟି ଶତପ୍ରତିଶତ କନ୍ଧକାୟା । ଶ୍ରୀଭଟ୍ଟାଚାର୍ଯ୍ୟ ମହାଶୟ ବହୁ ପଚରା ଉଚୁରା କରିବା ପରେ ବଡ଼ କଷ୍ଟରେ ମନ ବ୍ୟଥା ସହିତ ସେମାନେ ଇଙ୍ଗିତ କଲେ - ପ୍ରଭୁ ତାଙ୍କୁ ଛାଡ଼ି ଚାଲି ଯାଇଛନ୍ତି ।

୭. ଆଉରି ଏକ କିମ୍ବଦନ୍ତୀର ଅବତାରଣା କରି ସେ କହିଛନ୍ତି ଯେ, ଉକ୍ତ ଦେଉଳଝରି ଗାଁକୁ 'ପୁରୀ' ଭାବରେ ଆଖ୍ୟା କରାଯାଇଛି । ୧୯୮୧ ମସିହାରେ ସଂଘଟିତ ଏକ ଭୟାବହ ଅଗ୍ନିକାଣ୍ଡରେ ଏହି ଗାଁଟି ପୁରାତନ ସ୍ଥାନରୁ ଘୁଞ୍ଚି ଚାରି ଭାଗରେ ବିଭକ୍ତ ହୋଇଥିଲା ।

୧. ଓଡ଼ିଶିଙ୍ଗା (ଏହି ଗାଁକୁ 'ବା' ଲଗାଇ ଦେଉଳଝରି କହିଛନ୍ତି)
୨. ନୂଆଭୂଇଁ
୩. ମଳିପଦର
୪. ଚିଲଖଣ୍ଡି

ଉପରୋକ୍ତ ଓଡ଼ିଶିଙ୍ଗା ଗ୍ରାମ ଯେଉଁ ମୂଳସ୍ଥାନରୁ ସ୍ଥାନାନ୍ତରିତ ହୋଇଥିଲା ସେଇ ସ୍ଥାନରେ ବାଇଶିପାହାଚ ନାମରେ ଏକ ସଂପୂର୍ଣ୍ଣ ଅବହେଳିତ ଓ ଭଗ୍ନ ଦେବସ୍ଥଳୀ ଆଜି ବି ଦୃଶ୍ୟମାନ । ସମସ୍ତ ଗ୍ରାମବାସୀମାନଙ୍କ ମତ ଯେ ପ୍ରଭୁ ଜଗନ୍ନାଥ ଉକ୍ତ ବାଇଶିପାହାଚରେ ଆସୀନ ଥିଲେ । ଏହି ବାଇଶିପାହାଚ ଓଡ଼ିଶିଙ୍ଗା ଗାଁର ଦକ୍ଷିଣ ପୂର୍ବ ଦିଗକୁ ଏକ ଭଗ୍ନ ଦେବସ୍ଥଳୀ ଭାବେ ଦୃଶ୍ୟମାନ ।

ଏଇଠି ବିଚାର୍ଯ୍ୟ ଯେ ଲେଖକ ବାଇଶିପାହାଚ ନାମକ ଦେବସ୍ଥଳୀକୁ ନିର୍ଦ୍ଦେଶ କରି ସେ ସ୍ଥାନରେ ଜଗନ୍ନାଥ ଆସୀନ ଥିଲେ ବୋଲି କହିଛନ୍ତି । ବାଇଶିପାହାଚ ଏକ ଦେବସ୍ଥଳୀ ହୋଇ ନ ପାରେ । ଦେବସ୍ଥଳୀକୁ ଯିବାପାଇଁ ଏକ ଏକ ପାହାଚ ହୋଇପାରେ । ଲେଖକ ଯେଉଁ ସମୟ ଦେଉଛନ୍ତି ସେ ସମୟକୁ ଜଗନ୍ନାଥ ଚେତନାରେ 'ବାଇଶିପାହାଚ' ପ୍ରସଙ୍ଗ ଆସି ନଥିଲା । ବାଇଶିପାହାଚ ବାସ୍ତବିକ ଏକ କଳ୍ପନା, ଭାବର ଭାବଧାରା, ଶ୍ରୀମନ୍ଦିରରେ ଯାହାକୁ ବାଇଶିପାହାଚ କୁହାଯାଉଛି ତାର ସଂଖ୍ୟା ବାଇଶି ନୁହେଁ । ତାହା ଏକ ଅପଭ୍ରଂଶ ଶବ୍ଦ । 'ବହିଃସ୍ଥପାବଚ୍ଛ' ପରବର୍ତ୍ତୀ କାଳରେ ପୁରୀ ସଂସ୍କୃତିରେ ଭାଷାବିଜ୍ଞାନ ଦୃଷ୍ଟିକୋଣରୁ 'ପୁରୁଷୋତ୍ତମ' ପୁରସ୍ତମ ହେଲାଭଳି ହୋଇଛି । ତା ମାନେ କ'ଣ ପୁରସ୍ତମ ନାମ ଥିବା ଗାଁକୁ ବି ଆମେ ଜଗନ୍ନାଥଙ୍କ ଆଦିପୀଠସ୍ଥଳୀ ବୋଲି ବିବେଚନା କରିବା !

ଆନନ୍ଦବଜାରରୁ ବାହାରି ଆସିବା ପାଇଁ ଯେଉଁ ଦ୍ୱାର ଅଛି ତାହା ବାସ୍ତବ 'ସିଂହଦ୍ୱାର' ଥିଲା । ସେହି ବାଟେ ମହାପ୍ରଭୁ ବଡ଼ଦାଣ୍ଡକୁ ଓହ୍ଲାଇ ଆସନ୍ତି । ସିଂହଦ୍ୱାରରୁ ବଡ଼ଦାଣ୍ଡକୁ ଯେଉଁ ପାହାଚ ଦେଇ ଆସନ୍ତି ତାହାକୁ ବହିଃସ୍ଥପାବଚ୍ଛ ବା ବାହାର ପାହାଚ କୁହା ଯାଉଥିଲା । ବର୍ତ୍ତମାନ ଚିହ୍ନଟ ହେଉଥିବା ସିଂହଦ୍ୱାର ପରବର୍ତ୍ତୀ କାଳର । ତେଣୁ ଯେଉଁଠି ଜଗନ୍ନାଥ ଚେତନାରେ ବାଇଶିପାହାଚ ଶବ୍ଦ ଏକ ଅର୍ବାଚୀନ 'ଭାବର' ଶବ୍ଦ, ସେଠି ବାଇଶିପାହାଚ ନାମକ ଦେବସ୍ଥଳୀ ଥିବାରୁ ସେଠାରେ ଯେ ଜଗନ୍ନାଥ ମୂଳରୁ ରହିଥିଲେ ସମ୍ଭାବନା କରିବା ଯୁକ୍ତିଯୁକ୍ତ ମନେ ହେଉ ନାହିଁ ।

ଲେଖକ ପୁନଃ କହିଛନ୍ତି, ''ଦେଢ଼ଶହ ବର୍ଷର ନିର୍ବାସନ କାଳରେ ବିବିଧ ଜୀବନଯାତ୍ରାର ପ୍ରଥା ଓ ରୀତି ନୀତିକୁ ଆପଣେଇ ଥିଲା । ତେଣୁ ନବପୁରୀ (ଶ୍ରୀକ୍ଷେତ୍ର)ଠାରେ ବାଇଶିପାହାଚ ବିଶେଷତ୍ୱ ରହିଅଛି ।''

ଯେଠାରେ ବିରୋଧାଭାଷ ଲକ୍ଷଣୀୟ । 'ନିର୍ବାସନ କାଳ ଦେଢ଼ଶହ ବର୍ଷ କୁହାଯିବା' ଅର୍ଥ ସେଠିକାର ସେ ମୂଳଦେବତା ନୁହଁନ୍ତି । ନିର୍ବାସନରେ ସେଠିକି ସେ ଯାଇଥିଲେ । ପରେ 'ନବପୁରୀ' (ଶ୍ରୀକ୍ଷେତ୍ର) ଶବ୍ଦ ବ୍ୟବହୃତ ହୋଇଛି ଅର୍ଥାତ୍ ଶ୍ରୀକ୍ଷେତ୍ରକୁ ନବପୁରୀ କୁହାଯାଉଛି । ଅର୍ଥାତ୍ ଆଜିର ଶ୍ରୀକ୍ଷେତ୍ର ହିଁ ନବପୁରୀ । ପରବର୍ତ୍ତୀ କାଳର ତଥା ଅର୍ବାଚୀନ । ଦେଉଳଝରି ହିଁ ପ୍ରାଚୀନ । କିନ୍ତୁ ପ୍ରଥମେ କୁହାଯାଇଛି ନିର୍ବାସନରେ ମହାପ୍ରଭୁ ଦେଉଳଝରି ଯାଇଥିଲେ । ପରେ ପରେ ପୁନଃ ଲେଖକ ସମ୍ଭାବନା କରିଛନ୍ତି 'ଓଡ଼ିଶିଙ୍ଗା' ଗାଁ ଓରଫ ଦେଉଳଝରି ଦାରୁବ୍ରହ୍ମଙ୍କର ଆଦି ପୀଠସ୍ଥଳୀ ଥିଲା ।

ଏହା ଏକ ବିରୋଧାଭାଷ ଦେଉଥିବାରୁ ଏହାର ପର୍ଯ୍ୟାଲୋଚନାକୁ ଏଠାରେ ଶେଷ କରି (ବାରାନ୍ତରେ ଆଲୋଚନା କରିବୁ) ମୂଳ ପ୍ରସଙ୍ଗକୁ ଫେରି ଆସୁଛୁ । ଆମର ପ୍ରସଙ୍ଗ ହେଉଛି ରକ୍ତବାହୁ । ଏବଂ ସେ ରାଷ୍ଟ୍ରକୂଟ ବଂଶଜ କି ?

## ରକ୍ତବାହୁ ପ୍ରସଙ୍ଗ :

ଯେଗୁଡ଼ିକ ଆଲୋଚନା କରିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଏହି ପ୍ରସଙ୍ଗ ଗୁଡ଼ିକ 'ରକ୍ତବାହୁ' ପ୍ରସଙ୍ଗ ସହିତ ଜଡ଼ିତ । ଉପରୋକ୍ତ ପ୍ରସଙ୍ଗଗୁଡ଼ିକର ଆଲୋଚନା ମାଧ୍ୟମରେ ଶ୍ରୀଯୁକ୍ତ ଭଟ୍ଟାଚାର୍ଯ୍ୟ ରକ୍ତବାହୁ ଆକ୍ରମଣ ପ୍ରସଙ୍ଗକୁ ଏକ ଗୋଳମାଳିଆ ପରିସ୍ଥିତିକୁ ଟାଣି ନେଇଛନ୍ତି । ଏବଂ ଏହି ପ୍ରସଙ୍ଗକୁ 'ମାଦଳାପାଂଜି'ର କିମ୍ବଦନ୍ତୀ, ଭୁଲବଶତଃ ମାଦଳାରେ ଦର୍ଶାଯାଇଛି ବୋଲି ବିଶେଷଣମାନ ଦର୍ଶାଇ ନିରାଧାର କରିବାକୁ ଚେଷ୍ଟା କରିଛନ୍ତି । ଅଥଚ 'ଇନ୍‌ଟାକ୍' ପକ୍ଷରୁ ଗବେଷଣା କରି ସେ ଯେଉଁ ତଥ୍ୟଗୁଡ଼ିକ ଅବତାରଣା କରିଛନ୍ତି ତାହାକୁ ବଳିଷ୍ଠ ପ୍ରମାଣିକ କରିବା ପରିବର୍ତ୍ତେ 'ସମ୍ଭବତଃ' 'କିମ୍ବଦନ୍ତୀ' 'ଯେତେଦୂର ସମ୍ଭବ' 'ହୋଇପାରେ' ଆଦି ଶବ୍ଦ ଲଗାଇବାରେ ପଶ୍ଚାତ୍‌ପଦ ହୋଇନାହାଁନ୍ତି ।

ଦୁଇ ତିନୋଟି ଉଦାହରଣ 'ରକ୍ତବାହୁ' ସମ୍ବନ୍ଧୀୟ ଦେଖାଯାଉ । ଦେଉଳଝରିକୁ ଦାରୁବ୍ରହ୍ମଙ୍କର ଆଦିପୀଠସ୍ଥଳୀ ବୋଲି ସମ୍ଭାବନା କରି ଏହି ପୀଠସ୍ଥଳୀ ଉପରକୁ ୧୦ମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବିଭିନ୍ନ ଦିଗରୁ ଆକ୍ରମଣ ହୋଇଥିଲା ବୋଲି ମତ ଦେଇଛନ୍ତି । ଏବଂ ପଶ୍ଚିମ ଓ ଉତ୍ତରାଞ୍ଚଳ ଦଖଲକାରୀଙ୍କ ଦ୍ୱାରା କବଳିତ ହୋଇଥିଲା । ଏହା ସବୁ ଯଯାତି କେଶରୀ (୧ମ) ଶାସନକାଳ ପରେ ଘଟିଥିଲା ଏବଂ ପ୍ରାୟ ଦୀର୍ଘ ସତୁରୀବର୍ଷ ଧରି ରୁଗ୍‌ଣ ଶାସନତନ୍ତ୍ର ବା ଶାସନ ନଥିବା ଅବସ୍ଥା ଘଟିଥିଲା । ୧୧ଶ ଶତାବ୍ଦୀର ପୂର୍ବାର୍ଦ୍ଧରେ ଯଯାତି କେଶରୀ (୨ୟ) ମନୋନୀତ ହୋଇ କ୍ଷମତାକୁ ଆସିଲେ । ମାଦଳାପାଂଜିରେ ଥିବା କିମ୍ବଦନ୍ତୀ ଅନୁସାରେ ରାଜା ଯଯାତି ଚନ୍ଦ୍ରହାର କୁଆଡ଼େ ଗୋପାଳି ଗାଁ ଠାରୁ ଶ୍ରୀଜଗନ୍ନାଥଙ୍କ ପୁନରୁଦ୍ଧାର କରିଥିଲେ । ତାଙ୍କର ଆଉ ଏକ ନାମ 'ମହାବାହୁ' ଥିଲା । କହିବା ବାହୁଲ୍ୟ ଯେ ଏହି ସବୁ ଘଟଣାର ପ୍ରାୟ ୬୦୦ ବର୍ଷ ପରେ ମାଦଳାପାଂଜି ଲେଖା ହୋଇଥିଲା । ସମ୍ଭବତଃ ଉକ୍ତ ୭୦ ବର୍ଷ ଧରି ଲାଗି ରହିଥିବା ବିବିଧ ଦିଗନ୍ତରୁ ଓଡ଼ିଶା ଉପରେ ଆକ୍ରମଣ, ପରାଜୟ ଓ ଗୋଳବାଇକୁ ଭୁଲବଶତଃ 'ରକ୍ତବାହୁ'ର ଆକ୍ରମଣ ବୋଲି ମାଦଳାରେ ଦର୍ଶାଯାଇଅଛି ।

ଇୟେ ହେଲା ରକ୍ତବାହୁ ଆକ୍ରମଣ ସମ୍ବନ୍ଧରେ ଶ୍ରୀ ଭଟ୍ଟାଚାର୍ଯ୍ୟଙ୍କର ଆଲୋଚନାର ଦ୍ୱିତୀୟ ପ୍ରସଙ୍ଗ ।

(୧) ପ୍ରଥମ ପ୍ରସଙ୍ଗରେ କୁହା ଯାଇଥିଲା - ଦକ୍ଷିଣ-ପଶ୍ଚିମ ଭାରତର ରାଷ୍ଟ୍ରକୂଟ ରାଜା ଗୋବିନ୍ଦ (ତୃତୀୟ) ନବମ ଶତାବ୍ଦୀରେ ପଶ୍ଚିମ ଓଡ଼ିଶା ଉପରେ ସାଫଲ୍ୟର ସହିତ ଆକ୍ରମଣ କରିଥିଲେ । ସମ୍ଭବତଃ ମାଦଳାପାଂଜିରେ ଏହି ଆକ୍ରମଣକୁ 'ରକ୍ତବାହୁ'ର ଭୟାନକ ଆକ୍ରମଣ ଭାବରେ ବର୍ଣ୍ଣନା କରାଯାଇଛି । ଅର୍ଥାତ ରକ୍ତବାହୁ ରାଷ୍ଟ୍ରକୂଟ ବଂଶଜ । ଗୋବିନ୍ଦ (୩ୟ) ହିଁ ମାଦଳା ବର୍ଣ୍ଣିତ ଆକ୍ରମଣକାରୀ ରକ୍ତବାହୁ !

(୨) ଦ୍ୱିତୀୟ ପ୍ରସଙ୍ଗରେ କୁହାଗଲା 'ଦେଉଳଝରି' ନାମକ ଦାରୁବ୍ରହ୍ମଙ୍କ ଆଦି ପୀଠସ୍ଥଳୀ ଉପରକୁ ୧୦ମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ବିଭିନ୍ନ ଦିଗରୁ ଆକ୍ରମଣ ହୋଇଥିଲା । ୧୦ମ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧର ଯଯାତି କେଶରୀ (୧ମ) ଏବଂ ୧୧ଶ ଶତାବ୍ଦୀ ପୂର୍ବାର୍ଦ୍ଧର ଯଯାତି କେଶରୀ (୨ୟ) ମଧ୍ୟରେ ଥିବା ୭୦ ବର୍ଷର ଦୂରତ୍ୱ, ଏହି ୭୦ ବର୍ଷ ଧରି ଲାଗି ରହିଥିବା ବିବିଧ ଦିଗନ୍ତରୁ ଓଡ଼ିଶା ଉପରେ ଆକ୍ରମଣ, ପରାଜୟ ଓ ଗୋଳବାଇକୁ ଭୁଲବଶତଃ ରକ୍ତବାହୁର ଆକ୍ରମଣ ବୋଲି ମାଦଳାରେ ଦର୍ଶାଯାଇଛି । ଲେଖକ ଏହାକୁ ସମ୍ଭାବନା କରିଛନ୍ତି ମାତ୍ର ।

ତାଙ୍କ ମତରେ ଏହି ଘଟଣା ଘଟିବାର ୬ଶହ ବର୍ଷ ପରେ ମାଦଳାପାଂଜି ଲେଖାଯାଇ ଥିବାରୁ ରକ୍ତବାହୁ ଆକ୍ରମଣ ଭୁଲରେ ଯେପରି ଲେଖା ହୋଇଯାଇଛି ।

ପ୍ରଥମେ କୁହାଗଲା ରକ୍ତବାହୁ ରାଷ୍ଟ୍ରକୂଟ ବଂଶଜ ଖୋଦ ଗୋବିନ୍ଦ (୩ୟ) । ଯେ କି ନବମ ଶତାବ୍ଦୀରେ ଆକ୍ରମଣ କରିଥିଲେ । ଦ୍ୱିତୀୟରେ କୁହାଗଲା ଦଶମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଓ ୧୧ଶର ପ୍ରଥମାର୍ଦ୍ଧ ମଧ୍ୟରେ ଥିବା ୭୦ବର୍ଷ ମଧ୍ୟରେ ଓଡ଼ିଶା ପ୍ରତି ଆକ୍ରମଣ, ଓଡ଼ିଶାର ପରାଜୟ ଏବଂ ଓଡ଼ିଶାରେ ଗୋଳମାଳିଆ ଶାସନ ନଥିବା ଅବସ୍ଥାକୁ ରକ୍ତବାହୁର ଆକ୍ରମଣ ବୋଲି ଭୁଲରେ ମାଦଳାକାର ଲେଖିଦେଲେ ।

ତେବେ ଲେଖକଙ୍କର କେଉଁ ସମ୍ଭାବନା ଗ୍ରହଣଯୋଗ୍ୟ ତାହା ବିଚାର୍ଯ୍ୟ । ପ୍ରଥମତଃ ସମୟ ନିର୍ଦ୍ଧାରଣ ପଦ୍ଧତିରେ ଦୂରତ୍ୱ ବେଶୀ । ୯ମ ଶତାବ୍ଦୀର କହି ପୁନଃ ୧୦ମ ଶତାବ୍ଦୀର ଉତ୍ତରାର୍ଦ୍ଧ ୧୧ଶ ଶତାବ୍ଦୀର ପ୍ରଥମ ଭାଗ ବୋଲି ସମ୍ଭାବନା କରିବା ଦ୍ୱାରା ପାଠକୀୟ ବିଭ୍ରାନ୍ତି ସୃଷ୍ଟି ହେଉଛି । ଦ୍ୱିତୀୟତଃ ଥରେ ବଂଶ ଏବଂ ବ୍ୟକ୍ତିବିଶେଷ ରୂପେ ଚିହ୍ନଟ କରି ସମ୍ଭାବନା ବ୍ୟକ୍ତ କରିସାରି ପୁଣି ତାହା ଏକ ଗୋଳମାଳିଆ ପରିସ୍ଥିତିକୁ ଲକ୍ଷ୍ୟ କରି ମାଦ୍‌ଳାକାର ଲେଖିଛନ୍ତି ବୋଲି ସମ୍ଭାବନା କରିବା ଆଦୌ ସ୍ପୃହଣୀୟ ହେଉନାହିଁ ।

ଦୁଇଟି ଯାକ ପ୍ରସଙ୍ଗକୁ ଗ୍ରହଣ କରିବା ସମ୍ଭବପର ନୁହେଁ । ଦୁଇଟି ଯାକ ମତ ମଧ୍ୟ ଅଭ୍ରାନ୍ତ ମନେ ହେଉ ନାହିଁ । ରାଷ୍ଟ୍ରକୂଟ ପ୍ରସଙ୍ଗ ଯାହାକି ୯ମ ଶତାବ୍ଦୀରେ ଘଟିଥିଲା । ତାହା ପର୍ଯ୍ୟାଲୋଚନାର ଅପେକ୍ଷା ରଖୁଥିବା ବେଳେ ଦ୍ୱିତୀୟ ପ୍ରସଙ୍ଗଟି ମୋଟେ ରଖୁନାହିଁ । କାରଣ

ସେଥିରେ ୧୦ମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଓ ୧୧ଶ ଶତାବ୍ଦୀର ପ୍ରଥମାର୍ଦ୍ଧ ବୋଲି କାଳ ନିର୍ଦ୍ଧାରିତ ହୋଇଥିବାରୁ ଏହା ରକ୍ତବାହୁ ଆକ୍ରମଣ କାଳ ସହିତ ସାମଞ୍ଜସ୍ୟ ରଖୁନାହିଁ ।

ଯେହେତୁ ଅଦ୍ୟାବଧି ଇତିହାସ ରକ୍ତବାହୁ ଆକ୍ରମଣର ଅନ୍ତିମ ବିନ୍ଦୁରେ ପହଞ୍ଚି ନାହିଁ ତେଣୁ ଶ୍ରୀ ଭଟ୍ଟାଚାର୍ଯ୍ୟଙ୍କର ପ୍ରଥମ ମତଟି ଗବେଷଣାର ଅପେକ୍ଷା ରଖୁଛି । ରକ୍ତବାହୁ ମଧ୍ୟ ରାଷ୍ଟ୍ରକୂଟ ବଂଶର ନୁହଁନ୍ତି ବୋଲି ସଂପୂର୍ଣ୍ଣ ଏଡ଼େଇ ଦିଆଯାଇ ନପାରେ । ନିର୍ଦ୍ଧାରିତ କାଳ ଭୌମକରମାନଙ୍କ କାଳ ସହିତ ପ୍ରାୟ ମିଶି ଯାଉଥିବାରୁ ଏହାର ଏକ ସିଦ୍ଧାନ୍ତ ନେବା ପୂର୍ବରୁ ଅନେକ ଦିଗକୁ ସତର୍କତାର ସହିତ ଦୃଷ୍ଟି ଦେଇ ପର୍ଯ୍ୟାଲୋଚନା ପରିସରକୁ ସମୃଦ୍ଧ କରିବାକୁ ପଡ଼ିବ । ତତ୍‌କାଳୀନ କଳିଙ୍ଗ ଉତ୍କଳର ମାନଚିତ୍ର, ରାଜନୀତିକ ପ୍ରେକ୍ଷାପଟ, ଧାର୍ମିକ ସନ୍ତୁଳନ, କଳିଙ୍ଗର ଆର୍ଥିକ ସ୍ୱଚ୍ଛଳତା ଏବଂ କଳିଙ୍ଗ ନୌ-ବାଣିଜ୍ୟର ସବିଶେଷ ବିବରଣୀକୁ ଦୃଷ୍ଟି ଦେବାକୁ ପଡ଼ିବ । ନଚେତ୍ ବାସ୍ତବ ଚିତ୍ର ଆମମାନଙ୍କ ପାଖରୁ ବହୁ ଦୂରରେ ରହିଯିବ । ଯାହା ଆଜି ହୋଇଛି ।

ପୂର୍ବରୁ 'ରକ୍ତବାହୁ'ର ପରିଚୟ ନିମିତ୍ତ କେତୋଟି ଶଙ୍କା ଆମେ ପାଠ କଲେ । ସେ କାମ୍ବୋଜବଂଶର ନାଁ ଚେଦୀବଂଶ ରାଜା ଯୁବରାଜଦେବ ? ଅଥବା ଶବରରାଜ ଶିବଗୁପ୍ତ ନାଁ ହୁଣ୍ ଓ ଶକମାନଙ୍କର ସେନାଧକ୍ଷ । କିମ୍ବା ସେ ରାଷ୍ଟ୍ରକୂଟ ବଂଶଜ ନାଁ ଆଉ କେଉଁ ବଂଶର ? ଯାର ଶେଷ ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ଆମେ ଲେଖିଥିଲୁ ତତ୍‌କାଳୀନ କଳିଙ୍ଗ/ଉତ୍କଳର ମାନଚିତ୍ର, କଳିଙ୍ଗର ନୌବାଣିଜ୍ୟ ଏବଂ ଆର୍ଥିକ ସନ୍ତୁଳନ ଉପରେ ସବିଶେଷ ଦୃଷ୍ଟି ନିକ୍ଷେପ କରିବାକୁ ପଡ଼ିବ । ତାର ପ୍ରାଥମିକ ରୂପରେଖ ଦ୍ରଷ୍ଟବ୍ୟ ।

## ରକ୍ତବାହୁ ଆକ୍ରମଣବେଳେ କଳିଙ୍ଗର ମାନଚିତ୍ର :

ତତ୍‌କାଳୀନ ଭାରତବର୍ଷର ମାନଚିତ୍ରକୁ ଦୃଷ୍ଟିପାତ କଲେ ଜଣାପଡୁଛି ଯେ ଦ୍ରାବିଡ଼ମାନେ ଅଷ୍ଟ୍ରିକମାନଙ୍କ ଉପରେ ଆକ୍ରମଣ କଲାବେଳେ ବିନ୍ଧ୍ୟ ପାଦଦେଶ, ସିନ୍ଧୁ ଉପତ୍ୟକା ଗୁଜର ଅଞ୍ଚଳ ଜନବସତିପୂର୍ଣ୍ଣ ଥିଲା ଏବଂ ଅଷ୍ଟ୍ରିକମାନେ ଏଇ ଅଞ୍ଚଳରେ ବାସ କରୁଥିଲେ । ସେଥିପାଇଁ ପୁରାତତ୍ତ୍ୱବିଦ୍‌ମାନେ ଭାରତବର୍ଷର ମାନଚିତ୍ରକୁ ମୋଟାମୋଟି ୩ ଭାଗରେ ବିଭକ୍ତ କରନ୍ତି । ୧ - ଆର୍ଯ୍ୟ ବହୁଳ ଅଞ୍ଚଳ, ୨ - ଦ୍ରାବିଡ଼ ବହୁଳ ଅଞ୍ଚଳ, ୩- ଆଦିବାସୀ ବହୁଳ ଅଞ୍ଚଳ ।

ଆର୍ଯ୍ୟ-ଅନାର୍ଯ୍ୟଙ୍କର ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଯୁଦ୍ଧର ଫଳ ହେଉଛି ରାଜ୍ୟଗୋଷ୍ଠୀ ଗଠନ । ତାହା ଦେଶ ଓ କାଳକୁ ନେଇ ଗଠିତ ହୋଇଥିଲା । ଚାରିବେଦ ବେଳକୁ ଆର୍ଯ୍ୟ ଅଞ୍ଚଳ ୫ ଭାଗରେ ବିଭକ୍ତ ହୋଇଥିଲା ।

**୧- ସପ୍ତସିନ୍ଧୁ** - ସିନ୍ଧୁ, ବିତସ୍ତା, ଅସ୍କିନି (ଚନ୍ଦ୍ରଭାଗାର ଅନ୍ୟନାମ, ଓଡ଼ିଶାର ଚନ୍ଦ୍ରଭାଗା ନୁହେଁ) । ପରୁଷ୍ଣୀ ବା ବିପାଶା, ଶତଦ୍ରୁ ଓ ସରସ୍ୱତୀ ନଦୀ ବହୁଥିବା ଅଞ୍ଚଳ ଥିଲା ସପ୍ତସିନ୍ଧୁ ।

**୨- ପଞ୍ଚନଦ** - ସିନ୍ଧୁ ନଦୀର ୫ଟି ଶାଖାନଦୀ ଯେଉଁ ଅଞ୍ଚଳକୁ ପ୍ଲାବିତ କରୁଥିଲା, ତାହାର ଅବବାହିକା ପଞ୍ଚନଦ ନାମରେ ଖ୍ୟାତ ଥିଲା ।

**୩- ବ୍ରହ୍ମାବର୍ତ୍ତ** - ସରସ୍ୱତୀ ଓ ଦୃଷଦ୍‌ବତୀ ନଦୀମଧ୍ୟସ୍ଥ ଭୂଖଣ୍ଡ ବ୍ରହ୍ମାବର୍ତ୍ତ ନାମରେ ପ୍ରସିଦ୍ଧି ଲାଭ କରିଥିଲା ।

**୪- ମଧ୍ୟଦେଶ** - ସପ୍ତସିନ୍ଧୁ ଓ ଗୋମତୀ ନଦୀ ଉପତ୍ୟକାରେ ଆର୍ଯ୍ୟମାନେ ଯୁଦ୍ଧ ପୂର୍ବରୁ ରହୁଥିଲେ । ଯୁଦ୍ଧରେ ଜୟଲାଭ କରି ଯେତେବେଳେ ସିନ୍ଧୁ ଉପତ୍ୟକା ଆଡ଼େ ଅଗ୍ରସର ହେଲେ, ସେତେବେଳେ ସେଇ ଅଞ୍ଚଳକୁ ସେମାନେ ମଧ୍ୟଦେଶ କହୁଥିଲେ । ଏହା ମଧ୍ୟଭାରତର ପୂର୍ବ ଓ ଦକ୍ଷିଣ-ପୂର୍ବ ଭୂଭାଗର କେତେକାଂଶ ସେହି ଯମୁନା, ଚର୍ମଣ୍ୱତୀ, ସିନ୍ଧୁ ଓ ସରଯୁନଦୀ ଉପତ୍ୟକାକୁ ବୁଝାଉଥିଲା ।

**୫- ପ୍ରାଚୀ** - ଗଙ୍ଗାନଦୀର ନିମ୍ନ ଉପତ୍ୟକା ସମେତ ଗଣ୍ଡୂକୀ, ଶୋଣ ପ୍ରଭୃତିର ଉପତ୍ୟକା ଅଞ୍ଚଳକୁ ପ୍ରାଚୀଦେଶ କୁହା ଯାଉଥିଲା (Historical Atlas of India) ।

ସେଣେ ଦ୍ରାବିଡ଼ମାନଙ୍କର ସେହି ଅବସ୍ଥା ହେଲା । ସେମାନେ ବି ଦେଶ ଓ କାଳକୁ ନେଇ ରାଜ୍ୟଗୋଷ୍ଠୀ ଗଠନ କରି ଚାଲିଲେ । ସେମାନଙ୍କ ଅଞ୍ଚଳଗୁଡ଼ିକୁ ୪ ଭାଗରେ ବିଭକ୍ତ କରାଯାଏ ।

୧- ପୂର୍ବୋତ୍ତର ଭାରତରେ - ବିଦେହ, ମଗଧ
୨- ମଧ୍ୟ ଭାରତରେ - କୋଶଳ, ମାଳବ
୩- ପଶ୍ଚିମରେ - ପ୍ରଭାସ
୪- ଦକ୍ଷିଣରେ - ଚୋଳ ପ୍ରଭୃତି ଅଞ୍ଚଳରେ ଦ୍ରାବିଡ଼ମାନେ ରହି ଆସିଲେ ।

**ଅଷ୍ଟ୍ରିକସ୍ଥାନ (ଶବର ଆଦିବାସୀ)** - ମୁଖ୍ୟତଃ ଶବର ଏବଂ ଆଦିବାସୀଙ୍କୁ ନେଇ ଗଢ଼ି ଉଠିଥିବା ଅଷ୍ଟ୍ରିକମାନେ ୩ଟି ଅଞ୍ଚଳରେ ରହୁଥିଲେ । (O.H.R.J. Vol. No.- 1, April 1952 Pp-91)

୧- ଉତ୍କଳ ୨- କଳିଙ୍ଗ ୩- ତୋଷଳ

ଆର୍ଯ୍ୟ ଏବଂ ଅନାର୍ଯ୍ୟଙ୍କର ମହାଯୁଦ୍ଧ ସରିବାର ଶହ ଶହ ବର୍ଷ ପର୍ଯ୍ୟନ୍ତ ଆର୍ଯ୍ୟମାନେ ଉପରଲିଖିତ ଦ୍ରାବିଡ଼ କିମ୍ବା ଅଷ୍ଟ୍ରିକ ଦେଶମାନଙ୍କରେ ପ୍ରବେଶ ନିଷେଧ କରିଥିଲେ । (ବାଜସନେୟୀ ସଂହିତା ଓ ଶତପଥ ବ୍ରାହ୍ମଣ) । ପ୍ରବେଶ କଲେ ତୀର୍ଥ ପାଇଁ ସିନା, ଅନ୍ୟ ଉଦ୍ଦେଶ୍ୟରେ ନୁହେଁ । ଅମାନ୍ୟ ହେଲେ ପ୍ରାୟଶ୍ଚିତ । ଇଯେ ହେଉଛି ମ୍ଳେଚ୍ଛ କହିବାର ପ୍ରକୃତ ତାତ୍ପର୍ଯ୍ୟ । ଆମେ ପୂର୍ବରୁ ଯେଉଁ ମ୍ଳେଚ୍ଛ ପ୍ରସଙ୍ଗ ଅବତାରଣା କରିଥିଲୁ ତାହାର ବାସ୍ତବ ଚିତ୍ରପଟ ହିଁ ଏଇୟା ।

ଯେ ଲକ୍ଷ୍ମଣରେଖା ଟାଣୁଥିଲେ ଆର୍ଯ୍ୟଧର୍ମୀ ପୁରୋହିତ ମଣ୍ଡଳୀ ବଶିଷ୍ଠ, ବିଶ୍ୱାମିତ୍ର, ଯମଦଗ୍ନି, ଅଙ୍ଗିରା ଓ ଗୌତମ ଋଷିମାନେ । ସେତେବେଳକୁ ଆର୍ଯ୍ୟାବର୍ତ୍ତରେ ଆଭ୍ୟନ୍ତରୀଣ ଭେଦ ଯୋଗୁଁ ଆର୍ଯ୍ୟମାନେ ଦୁଇଗୋଷ୍ଠୀ ହୋଇଯିବାରୁ ମୁଖ୍ୟଗୋଷ୍ଠୀ ପଞ୍ଜାବ ଅଞ୍ଚଳରେ ବସତି ସ୍ଥାପନ କରିଥିଲେ । ଅନ୍ୟ ଏକ ଗୋଷ୍ଠୀ ଗଙ୍ଗା ଯମୁନା ସମତଳ ଭୂମିରେ ବସବାସ

କରୁଥିଲେ । ସେମାନେ ହେଲେ ଯଦୁ, ପୁରୁ, ଭାରତ, ତୃସୁ, ତୁର୍ବସୁ, ଜହ୍ନୁ ଓ ଭୃଗୁ ପ୍ରଭୃତି । (ଭଗବାନ୍ ପର୍ଶୁରାମ-କେ.ଏମ୍, ମୁନ୍‌ସୀ-ପ୍ରସ୍ତାବନା ପୃ - ୧୦)

ଯେମାନଙ୍କ ପୂର୍ବରୁ ବସବାସ କରିଥିଲେ ଦସ୍ୟୁ, ଦୈତ୍ୟ, ଦାସ ପ୍ରଭୃତି । ଯାଙ୍କର ଗୁରୁଥିଲେ 'ଶୁକ୍ରାଚାର୍ଯ୍ୟ' ।

କଳିଙ୍ଗସେନା ମହାଭାରତ ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ପକ୍ଷରେ ଯୁଦ୍ଧ କରିଥିଲେ (ମହା.ଭା.ଭୀଷ୍ମପର୍ବ), ଅର୍ଥାତ୍ ସେତେବେଳକୁ 'କଳିଙ୍ଗ' ଏକ ଅଞ୍ଚଳ ରୂପେ ସୃଷ୍ଟି ହୋଇ ସାରିଥିଲା । କଳିଙ୍ଗ ଶବ୍ଦ ମୂଳତଃ ଦ୍ରାବିଡ଼ୀ ଶବ୍ଦ ଆମେ ଜାଣୁ । ତେଣୁ ସେ କାଳରେ କଳିଙ୍ଗର ଦ୍ରାବିଡ଼ ଗୋଷ୍ଠୀ ସହିତ ସମ୍ବନ୍ଧ ରହିଥିଲା । ସେଥିପାଇଁ ବୋଧହୁଏ ଯାଗଧର୍ମୀ ଯୁଧିଷ୍ଠିରଙ୍କୁ ସମର୍ଥନ ନ କରି ଯାଗବିରୋଧୀ ଦୁର୍ଯ୍ୟୋଧନଙ୍କୁ କଳିଙ୍ଗ ରାଜା ସହଯୋଗ କରିଥିଲେ ।

ବୌଦ୍ଧଗ୍ରନ୍ଥ 'ମଝିମନିକାୟ'ରେ ଉତ୍କଳ ଶବ୍ଦ ଥିବାରୁ ଖ୍ରୀ.ପୂର୍ବ ୫ମ ଶତାବ୍ଦୀ ବେଳକୁ 'ଉତ୍କଳ' ରାଜ୍ୟ ଥିବାର ଜଣାପଡୁଛି । ରଘୁଙ୍କର ଦିଗ୍‌ବିଜୟ ପ୍ରସଙ୍ଗରେ କାଳିଦାସ ମଧ୍ୟ ସେଇକଥା କହିଛନ୍ତି -

ବଙ୍ଗାନୁତ୍‌ଖାୟ ତରସା ନେତା ନୌସାଧନୋଦ୍ୟତାନ୍ ।
ଉତ୍କଳାଦର୍ଶିତପଥଃ କଳିଙ୍ଗାଭିମୁଖଂ ଯଯୌ ।। (ରଘୁବଂଶ - ୪ର୍ଥ ସର୍ଗ)

ତେଣୁ କଳିଙ୍ଗ ଯୁଦ୍ଧର ସ୍ଥାନ ଦୃଷ୍ଟିରୁ ଧଉଳି ପାହାଡ଼ ପାଦଦେଶ କଳିଙ୍ଗର ସୀମା ଥିଲା । ଉତ୍କଳବାସୀ ସାମ୍ୟଧର୍ମୀ ଓ ମୈତ୍ରୀଧର୍ମୀ ଥିବା ହେତୁ ଅଶୋକଙ୍କ ସେନା ବିରୋଧରେ ଶସ୍ତ୍ରଧାରଣ ନ କରି ରଘୁଙ୍କ ପରି ନିର୍ବାଧରେ ତାଙ୍କୁ ରାସ୍ତା ଦେଖାଇ ଦେଇଥିଲେ । ଉତ୍କଳ ସୀମା ପାର ହେବା ପରେ କଳିଙ୍ଗ ସୀମାରେ କଳିଙ୍ଗ ସୈନ୍ୟମାନେ ତାଙ୍କୁ ବାଧା ଦେଇଥିବେ ।
(ଦା.ଦେ.ପୃ-୧୪୧)

ଏଥିରୁ ଜଣାପଡୁଛି, ମହାଭାରତ ଯୁଦ୍ଧବେଳକୁ କଳିଙ୍ଗ ଏବଂ ଉତ୍କଳ ଦୁଇଟି ପୃଥକ୍ ରାଜ୍ୟ ଥିଲା । କଳିଙ୍ଗ ରାଜ୍ୟ ଦୁର୍ଯ୍ୟୋଧନଙ୍କୁ ସହଯୋଗ ଦେଲାବେଳେ ଉତ୍କଳ ବା ଓଡ୍ର ଭୂଖଣ୍ଡ ନିରପେକ୍ଷ ଥିଲା । କାରଣ ଅଙ୍ଗରାଜ କର୍ଣ୍ଣ କୌରବଙ୍କ ପକ୍ଷ ଧରି ଥରେ ଉତ୍କଳୀୟଙ୍କୁ ପରାସ୍ତ କରିଥିବା ବେଳେ ପାଣ୍ଡବ ପକ୍ଷର ସହଦେବ କେରଳୀମାନଙ୍କ ସହିତ ଉଡ୍ରମାନଙ୍କୁ ପରାଜିତ କରିଥିଲେ । (ମହାଭାରତ ସଭାପର୍ବ, ୩୧/୭୧/୭୨)

ହ୍ୱାଂତ୍ସାଂଙ୍କ ସମୟର ଭାରତବର୍ଷର ମାନଚିତ୍ରରୁ ଜାଣିହେବ କଳିଙ୍ଗ ଏବଂ ଉତ୍କଳ କିପରି ଦୁଇଟି ସ୍ୱତନ୍ତ୍ର ରାଜ୍ୟ ଥିଲେ । ଏଥିରୁ ଆଉ ଗୋଟିଏ କଥା ସ୍ପଷ୍ଟ ହେଉଛି ଯେ ସେତେବେଳେ କଳିଙ୍ଗ ରାଜ୍ୟ ସହିତ କଙ୍ଗୋଦ ମିଶିକରି ଥିଲା ।

## କଳିଙ୍ଗର ମେଘବାହନ ବଂଶ :

| | | |
|---|---|---|
| ୧. | ବେରାରର- ବାକାଟକ ବଂଶ | ବୈଦିକ - ସାତ୍ୱତ ଯାଦବବଂଶର ବିଭିନ୍ନ ଶାଖା |
| ୨. | ମହାରାଷ୍ଟ୍ରର - ରାଷ୍ଟ୍ରିକ ବଂଶ | ,, |
| ୩. | ଅସ୍ମକର - ମାହିଷ ବଂଶ | ,, |

୪. ରତ୍ନପୁରର - ହୈହୟଚେଦି ବଂଶ ବୈଦିକ - ସାତ୍ତ୍ୱତ ଯାଦବବଂଶର ବିଭିନ୍ନ ଶାଖା
୫. ତ୍ରିପୁରୀର - ହୈହୟ ବଂଶ ''
୬. ଶ୍ରୀପୁରର - କୋଶଳ ସୋମଗୁପ୍ତ ବଂଶ ''

ଐତିହାସିକମାନେ ମନେ କରନ୍ତି ଏହି ବଂଶମାନେ ଶିଶୁପାଳ ଚେଦିଙ୍କ ବଂଶରୁ ସମ୍ଭୂତ ବୋଲି । ଏମାନଙ୍କର ସଗୋତ୍ର ବଂଶ ହେଉଛନ୍ତି -

୧. କଳିଙ୍ଗର - ମେଘବାହାନ ବଂଶ
୨. କୋଶଳର - ମେଘ ବଂଶ
୩. ଆନ୍ଧ୍ରର - ଶାତ୍ୱତାୟନ ବଂଶ ବା ଶାତବାହନ ବଂଶ

ଅତଏବ ବୈଦିକ-ସାତ୍ତ୍ୱତ-ଯାଦବ ବଂଶର ବିଭିନ୍ନ ଶାଖା ସଗୋତ୍ର ବଂଶ ହେଉଛନ୍ତି କଳିଙ୍ଗର 'ମେଘବାହନ ବଂଶ', ଯେଉଁମାନେ କି ଶାସନ କରୁଥିଲେ । ଅତଏବ ଏହି ବଂଶର ସମ୍ବନ୍ଧୀୟ ବଂଶମାନଙ୍କ ମଧ୍ୟରୁ ରକ୍ତବାହୁ ଜଣେ କେହି ହେଲାପରି ମନେ ହେଉନାହିଁ ।

## ଭୌମକର ରାଜତ୍ୱ ସମୟରେ କଳିଙ୍ଗର ଭଗ୍ନ ସ୍ୱରୂପ :

ପୂର୍ବ ଗଂଗ ବଂଶର ଉଚ୍ଛେଦ ପରେ କଳିଙ୍ଗରେ ଶୈଳୋଦ୍ଭବ ବଂଶର ମଧ୍ୟମରାଜ ଯଶୋଭୀତଙ୍କ କନିଷ୍ଠପୁତ୍ର ଦ୍ୱିତୀୟ ମାଧବରାଜ ତାଙ୍କ ବଡ଼ଭାଇ ଧର୍ମରାଜ ମାନଭୀତଙ୍କ ସଂଗେ କଳିଙ୍ଗ ସିଂହାସନ ପାଇଁ ବିବାଦ କରିଥିଲେ । ସେତେବେଳେ କଳିଙ୍ଗ ଅନେକ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ଥିଲା । ସେଗୁଡ଼ିକ ହେଲା -

୧. ପୂର୍ବଗୋଦାବରୀ - ପିଠାପୁରଠାରେ ମାଠରବଂଶ ରାଜତ୍ୱ କରୁଥିଲେ ।
୨. ବିଶାଖାପାଟଣା - ଭୋଗପୁରଠାରେ ଦେବରାଷ୍ଟ୍ର ରାଜ୍ୟ ଥିଲା । ସେଠାରେ ବାଶିଷ୍ଠବଂଶ ରାଜତ୍ୱ କରୁଥିଲେ ।
୩. ଚିକାକୋଇ - ଏଠାରେ ଏରଣ୍ଡପଲ୍ଲୀ ରାଜ୍ୟ ।
୪. ଗଂଜାମ - 'କୋଠୁର'ଠାରେ 'ଗିରିକୋଟ୍ଟର' ରାଜ୍ୟ ଥିଲା ।
୫. କନ୍ୟୋଧ ବା କଙ୍ଗୋଦ -ଋଷିକୁଲ୍ୟା ଓ ମହାନଦୀ ମଧ୍ୟବର୍ତ୍ତୀ ଅଞ୍ଚଳ । କଙ୍ଗୋଦରେ ଶୈଳୋଦ୍ଭବ ବଂଶ ରାଜତ୍ୱ କରୁଥିଲେ ।
୬. କଳିଙ୍ଗପାଟଣା - ଆଧୁନିକ ମୁଖଲିଙ୍ଗ ଠାରେ ପୂର୍ବଗଂଗ ବଂଶ ରାଜତ୍ୱ କରୁଥିଲେ ।
୭. ଯାଜପୁର - ଏଠାରେ ଭୌମକର ବଂଶ ରାଜତ୍ୱ କରୁଥିଲେ ।
୮. କୋଶଳରେ - ସୋମଗୁପ୍ତ ବଂଶ ଶ୍ରୀପୁରଠାରେ ରାଜଧାନୀ ପ୍ରତିଷ୍ଠା କରି ଶାସନ କରୁଥିଲେ ।

ଏହି ସୋମଗୁପ୍ତ ବଂଶ କଙ୍ଗୋଦର ଶୈଳୋଦ୍ଭବ ବଂଶକୁ ପରାସ୍ତ କରି ପୂର୍ବ ଗଂଗ ବଂଶକୁ ମଧ୍ୟ ପରାସ୍ତ କଲେ । କଳିଙ୍ଗ କୋଶଳର ସାମନ୍ତ ରାଜ୍ୟ (ସମ୍ବଲପୁର ଇତିହାସ, ପୃ-୪୪) । ହେବା ପରେ ସୋମଗୁପ୍ତ ବଂଶ 'ତ୍ରିକଳିଙ୍ଗାଧିପତି' ହେଲେ (Nepal Inscription of Jayadeva)

୯. ବୌଦ - ଢେଙ୍କାନାଳଠାରୁ ଆସାମ ପର୍ଯ୍ୟନ୍ତ ଶୁଲକି ବଂଶ ରାଜତ୍ୱ କରୁଥିଲେ ।

୧୦. କାନ୍ତାରକ - ବର୍ତ୍ତମାନ ହାଇଦ୍ରାବାଦର ପୂର୍ବାଂଶ, କଳାହାଣ୍ଡି ଜିଲ୍ଲା ଅନ୍ତର୍ଗତ ଥିଲା । ସେଠାରେ ବ୍ୟାଘ୍ରରାଜ ଶାସନ କରୁଥିଲେ ।

ଏହାର ପୂର୍ବାବସ୍ଥା ବିଚାରଯୋଗ୍ୟ । ଚେଦୀ ବଂଶର ପତନ ପରେ ଦକ୍ଷିଣ ଭାରତରୁ ସାତବାହାନ ଓ ଉତ୍ତର ଭାରତରୁ କୁଶାଣ ଓ ମୁରୁଣ୍ଡମାନେ ଓଡ଼ିଶା ଆକ୍ରମଣ କରିଥିଲେ । ଚେଦୀ ବଂଶ ଲୋପ ହେଲାପରେ ୫ମ, ୬ଷ୍ଠ ଶତାବ୍ଦୀ ବେଳକୁ କଳିଙ୍ଗ ଖଣ୍ଡବିଖଣ୍ଡିତ ହୋଇ ବହୁ ସ୍ୱାଧୀନ ଭୂଖଣ୍ଡ ସୃଷ୍ଟି ହୋଇଥିଲା ।

ମୁରୁଣ୍ଡମାନଙ୍କ ଆକ୍ରମଣ କାଳରେ ବୌଦ୍ଧବାଦୀ ରାଜା 'ଗୁହଶିବ' ଥିଲେ ଏଠାରେ ରାଜା । ଏହି ସମୟର ଅବସ୍ଥା ନିମ୍ନପ୍ରକାର ଥିଲା ।

୧. ମୟୁରଭଞ୍ଜ କେଉଁଝରରେ - ନାଗବଂଶ ଶାସନ କରୁଥିଲେ ।
୨. କୋରାପୁଟ ଓ କଳାହାଣ୍ଡିରେ - ନଳବଂଶ ଶାସନ କରୁଥିଲେ ।
୩. ଉତ୍ତର-କଳିଙ୍ଗରେ - ବିଗ୍ରହ ରାଜବଂଶ ଶାସନ କରୁଥିଲେ ।
୪. ମଧ୍ୟ-କଳିଙ୍ଗରେ - ପୂର୍ବ ଗଙ୍ଗବଂଶ ଶାସନ କରୁଥିଲେ ।
୫. ଦକ୍ଷିଣ-କଳିଙ୍ଗରେ - ଦୁର୍ଜ୍ଜୟ ରାଜବଂଶ ଶାସନ କରୁଥିଲେ ।
୬. ଉତ୍ତର-ତୋଷାଳୀରେ - ମୁଦ୍‌ଗଳ ରାଜବଂଶ ଶାସନ କରୁଥିଲେ ।
୭. ଦକ୍ଷିଣ-କୋଶଳର କିଛି ଅଂଶରେ - ସରଭପୁରିଆ ରାଜବଂଶ ଶାସନ କରୁଥିଲେ ।
୮. ଦକ୍ଷିଣ-କୋଶଳର କିଛି ଅଂଶରେ - ମେଘ ରାଜବଂଶ ଶାସନ କରୁଥିଲେ ।
୯. ଦକ୍ଷିଣ-କୋଶଳର ରାଏପୁର ବିଳାସପୁର ଅଞ୍ଚଳରେ - ସୁରବଂଶ ରାଜତ୍ୱ କରୁଥିଲେ ।

ଉପରୋକ୍ତ ସମସ୍ତ ଐତିହାସିକ ତଥ୍ୟ ଗୋଟାଏ ରାଜ୍ୟ ତଥା ଗୋଟାଏ ଜାତିର କ୍ରମବିକାଶର ଚିତ୍ର ଆମକୁ ଦେଉଛି ଏବଂ ଏହାର ଶାସନ ପ୍ରଣାଳୀ ସୂଚାଇ ଦେଉଛି । କିନ୍ତୁ ଏହା ପୂର୍ବରୁ ସମଗ୍ର ଭାରତବର୍ଷର ମାନବିକ ଉତ୍‌ଥାନର ଏକ ପ୍ରାକ୍‌ସୂଚନା ଆମେ ଦେଇସାରିଛୁ । ତନ୍ମଧ୍ୟରେ ଆଧୁନିକ ଓଡ଼ିଶାର ରୂପକଳ୍ପ ସଂଶ୍ଲିଷ୍ଟ ଥିଲା । ଆର୍ଯ୍ୟମାନେ ଏ ଭୂମିକୁ ଆସିବା ପୂର୍ବରୁ ଏଠାକାର ଅବସ୍ଥା କ'ଣ ଥିଲା ତାହା ବିଚାର୍ଯ୍ୟ । ବୈଦିକଯୁଗରେ ଆର୍ଯ୍ୟେତର ଜାତିଙ୍କର ସାମାଜିକ ସନ୍ତୁଳନ ଲକ୍ଷଣୀୟ ।

## ସାମାଜିକ ସନ୍ତୁଳନ :

ବୈଦିକ ଯୁଗରେ ଆର୍ଯ୍ୟେତର ଜାତିଙ୍କୁ 'ଦସ୍ୟୁ' ବା 'ଦାସ' ଆଖ୍ୟା ଦିଆଯାଇଛି । ଋଗ୍‌ବେଦରେ 'ଫଣି ବା ନାଗ' ଜାତିକୁ 'ଦସ୍ୟୁ' ନାମରେ ଅଭିହିତ କରାଯାଇଛି । ନାଗମାନେ ଯାଦବମାନଙ୍କର 'ଦାସ' ଥିଲେ । ଯେଉଁ ଯାଦବ ବଂଶର କନ୍ୟାଙ୍କ ଗର୍ଭରୁ ରାଜାବାହୁଙ୍କ

ଔରସରୁ ସଗର ଜନ୍ମ ହୋଇଥିଲେ । ନାଗମାନେ ଦେଖିବାକୁ କୃଷ୍ଣକାୟ, ମୂର୍ଖ, ବାମନ ଓ ଆର୍ଯ୍ୟାବର୍ତ୍ତର ଦସ୍ୟୁମାନଙ୍କ ତୁଳନାରେ ଅଧିକ ବଣୁଆ ଜାତି ଥିଲେ । ଯାଦବମାନଙ୍କର ପରିବାରରେ ସମସ୍ତ କଠିନ କାମ ସେମାନେ କରୁଥିଲେ ।

ଟୀକାକାର ସାୟଣାଚାର୍ଯ୍ୟ ଓ ମହୀଧର ସେହି ଜାତିକୁ ଅନାର୍ଯ୍ୟ ବା ଅସୁର ନାମରେ ଅଭିହିତ କରିଛନ୍ତି- 'ପଣନ୍ତି ପରଦ୍ରବ୍ୟେ ବ୍ୟବହରନ୍ତୀତି ପଣୟୋଽସୁରାଃ (ସାୟଣଭାଷ୍ୟ-୩ୟ, ୩୧,୫,୫ଦ୍ରଷ୍ଟବ୍ୟ) ଆର୍ଯ୍ୟମାନେ ସେମାନଙ୍କୁ ଘୃଣା କରୁଥିଲେ । ମହାଭାରତରେ ଦାସରାଜାଙ୍କ ନାମୋଲ୍ଲେଖ ମିଳେ । ଚନ୍ଦ୍ରବଂଶୀ ରାଜା ଶାନ୍ତନୁଙ୍କ ୨ୟା ରାଣୀ ଦାସ ରାଜାଙ୍କର କନ୍ୟା ।

ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ବାସ କରୁଥିବା କୈବର୍ତ୍ତମାନେ ସେହି ଆଦିମ 'ଦସ୍ୟୁ' ଶ୍ରେଣୀଭୁକ୍ତ ଜାତି ସମୂହର ବଂଶଧର । ନୌଯାତ୍ରା ସେମାନଙ୍କର ପ୍ରଧାନ ବ୍ୟବସାୟ ଥିବାରୁ ଅନ୍ୟ ଜାତିମାନଙ୍କ ସଂସ୍ପର୍ଶରେ ଆସି ଭାଷା ଏବଂ ସଂସ୍କୃତିରେ ଯଥେଷ୍ଟ ପରିବର୍ତ୍ତନ ହୋଇଛି । (ଓ.ଇ. ୧ମ-ରାଜଗୁରୁ, ପୃ-୧୨)

ଆର୍ଯ୍ୟମାନେ ପ୍ରଥମେ ଓଡ଼ିଶାକୁ ଆସିବା ପୂର୍ବରୁ ଏଠାରେ ଉତ୍କଳ, କଳିଙ୍ଗ ଓ ଉଡ୍ର ଜାତିସମୂହ ବାସ କରୁଥିଲେ । ଅତଏବ ଆର୍ଯ୍ୟମାନେ ଆସିବା ପରେ ଉଭୟ ସଂସ୍କୃତିର ସମ୍ମିଳନ ଘଟିବା ସ୍ୱାଭାବିକ । ଫଳରେ ରକ୍ତ ସମ୍ବନ୍ଧ ଗଢ଼ି ଉଠିଥିବ । ସେଥିପାଇଁ ନୃତତ୍ୱ ଦୃଷ୍ଟିରୁ ଯେ ଅଞ୍ଚଳ ଲୋକଙ୍କ ରକ୍ତରେ ଆର୍ଯ୍ୟ, ଦ୍ରାବିଡ଼ ଜାତିମାନଙ୍କର ମିଶ୍ରଣ ଘଟିଥିବା ଜଣାଯାଏ । ତାହା ଭାରତ ବର୍ଷରେ ମଧ୍ୟ ଘଟିଥିଲା । ଅନେକ ଆର୍ଯ୍ୟ ଆରାଧିତ ଋଷି ଅନାର୍ଯ୍ୟଜାତୀୟ ମାତୃଗର୍ଭରେ ସମ୍ଭୂତ ହୋଇଥିଲେ । ଋଷ୍ୟଶୃଙ୍ଗ-ମୃଗୀ ଗର୍ଭରୁ, ବ୍ୟାସ-କୈବର୍ତ୍ତ କନ୍ୟା ଗର୍ଭରୁ, ପରାଶର- ଚାଣ୍ଡାଳୀ ଗର୍ଭରୁ, ଭରଦ୍ୱାଜ- ଶୂଦ୍ରା ଗର୍ଭରୁ ଓ ବଶିଷ୍ଠ- ବେଶ୍ୟାଗର୍ଭରୁ ସମ୍ଭୂତ ।

ଅତଏବ୍ ଆର୍ଯ୍ୟମାନେ ଆସିବାର ବହୁ ପୂର୍ବରୁ ନିଷାଦ, ଦ୍ରମିଳ, ଦାସ, ଦସ୍ୟୁ ପ୍ରଭୃତି ବହୁଗୋଷ୍ଠୀ ଏଠାରେ ବସବାସ କରି ରହି ସାରିଥିଲେ । (History and Culture of the Indian People, Vol-I, P-157) କିନ୍ତୁ ସେମାନେ ଭାରତର ଆଦିମ ଅଧିବାସୀ ନୁହନ୍ତି । (Ibid-Chater - viii - P-42-43) ।

## ଉତ୍କଳର ପୌରାଣିକ ସ୍ଥିତି :

ଇନ୍ଦ୍ରଦ୍ୟୁମ୍ନଙ୍କ ଦେଉଳତୋଳା ପ୍ରସଙ୍ଗକୁ ଯଦି ଆମେ ଯିବା, ତେବେ ବ୍ରହ୍ମ ପୁରାଣ ଅନୁଯାୟୀ କଳିଙ୍ଗ, ଉତ୍କଳ ଓ କୋଶଳାଧିପତିଙ୍କ ସାହାଯ୍ୟରେ ବିନ୍ଧ୍ୟ ପର୍ବତରୁ ଶିଳା, ଜଳପଥ ଓ ସ୍ଥଳପଥରେ ଆଣି ଇନ୍ଦ୍ରଦ୍ୟୁମ୍ନ ମନ୍ଦିର ନିର୍ମାଣ କରାଇଥିଲେ । ଅନ୍ୟାନ୍ୟ ଦେଶର ବହୁରାଜା ଓ ପ୍ରଜା ଏଥିରେ ସାହାଯ୍ୟ କରିଥିବେ ।

ପୂର୍ବରୁ ଆମେ କହିଛୁ ୪ର୍ଥ ଶତାବ୍ଦୀ ବେଳକୁ ଓଡ଼ିଶାରେ ଯବନମାନଙ୍କର ଆଧିପତ୍ୟ ରହିଥିଲା । ସେତେବେଳକୁ ଜଗନ୍ନାଥ ନୀଳାଚଳରେ ବୈଷ୍ଣବ ଦେବତା ରୂପେ ପ୍ରସିଦ୍ଧି ଲାଭକରି

ସାରିଥିଲେ । କାରଣ ହାରାହାରି ୨୦୦୦ ବର୍ଷ ତଳେ ରଚିତ ବୃହଦ୍‌ନାରଦୀୟପୁରାଣ ଏବଂ ୧୮୦୦ ବର୍ଷ ତଳେ ରଚିତ ବ୍ରହ୍ମ ପୁରାଣରେ ଜଗନ୍ନାଥଙ୍କୁ ବୈଷ୍ଣବମୂର୍ତ୍ତି ରୂପେ ବର୍ଣ୍ଣନା କରା ଯାଇଥିଲା ।

ତନ୍ତ୍ରଶାସ୍ତ୍ର ମାନଙ୍କରେ ଜଗନ୍ନାଥ ଓ ବିମଳାଙ୍କ ସଂପର୍କରେ ଅନେକ ତଥ୍ୟ ମିଳୁଛି । ପ୍ରଥମ ଖ୍ରୀଷ୍ଟାବ୍ଦରେ ରଚିତ 'ତନ୍ତ୍ରଯାମଳ' କୁହେ -

ଭାରତେ ଚୋତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମ ।
ଦାରୁରୂପୀ ଜଗନ୍ନାଥୋ ଭକ୍ତାନାମଭୟପ୍ରଦଃ ॥

କେବଳ ଏତିକି ନୁହେଁ ତୃତୀୟ ଶତାବ୍ଦୀର ପ୍ରଥମ ଭାଗରେ ରଚିତ ମତ୍ସ୍ୟ ପୁରାଣରେ ପୁରୁଷୋତ୍ତମ କ୍ଷେତ୍ର, ପୁରୁଷୋତ୍ତମ ଏବଂ ପୀଠାଧିଶ୍ୱରୀ ବିମଳାଙ୍କ ବର୍ଣ୍ଣନାରୁ ଜଣାଯାଉଛି, କେବଳ ଦେବତା ନୁହଁନ୍ତି - କ୍ଷେତ୍ର ମଧ୍ୟ ସମଗ୍ର ଭାରତ ବର୍ଷରେ ପ୍ରସିଦ୍ଧି ଲାଭ କରି ସାରିଥିଲା ।

ଗୟାୟାଂ ମଙ୍ଗଳା ନାମ ବିମଳା ପୁରୁଷୋତ୍ତମେ ।
ଗୋକର୍ଣ୍ଣେ ଗଜକର୍ଣ୍ଣଶ୍ଚ ତଥା ଚ ପୁରୁଷୋତ୍ତମଃ ॥

ଏହା ବ୍ୟତୀତ ଖ୍ରୀଷ୍ଟ ପୂର୍ବରୁ ରଚିତ ପୁରାଣମାନଙ୍କୁ ଆମେ ଲକ୍ଷ୍ୟ କରିବା କଥା । ବିଶେଷତଃ ମହାଭାରତ 'ବୈତରଣୀ' ନଦୀ ପ୍ରବାହିତ ହେଉଥିବା ଦେଶକୁ 'କଳିଙ୍ଗ' କହିଥିବା ବେଳେ ଅଧିବାସୀମାନେ ଶାଶ୍ୱତ ଧର୍ମରେ ଦୀକ୍ଷିତ ବୋଲି କହିଛନ୍ତି । ମତ୍ସ୍ୟ, କୂର୍ମ, ପଦ୍ମ ଓ ସ୍କନ୍ଦ ପୁରାଣରେ କଳିଙ୍ଗର ପଶ୍ଚିମ ପଟରେ ଅମରକଣ୍ଟକ ପର୍ବତ ରହିଛି ବୋଲି ବର୍ଣ୍ଣନା ମିଳେ । ମାର୍କଣ୍ଡେୟ ପୁରାଣରେ ଅଛି - କଳିଙ୍ଗ ଦକ୍ଷିଣପୂର୍ବ ଭାରତର ଏକ ପ୍ରସିଦ୍ଧ ଭୂଖଣ୍ଡ, ଏକ ସମୃଦ୍ଧଶାଳୀ ଦେଶ । ବାୟୁ ପୁରାଣ ମତରେ କଳିଙ୍ଗର ସୀମା ମହେନ୍ଦ୍ରଠାରୁ ମହିଷ (ମେଦିନୀପୁର) ପର୍ଯ୍ୟନ୍ତ । ବାୟୁ ପୁରାଣର ଏହି ମତକୁ 'ଶତପଥ ବ୍ରାହ୍ମଣ' ଓ 'ବୌଧାୟନ ଧର୍ମସୂତ୍ର' ସମର୍ଥନ କରିଛନ୍ତି ।

ପାଣିନିଙ୍କର 'ଅଷ୍ଟାଧ୍ୟାୟୀ ସୂତ୍ର'ରୁ ତତ୍‌କାଳୀନ ୩୯ଟି ରାଜ୍ୟର ନାମ ମିଳେ । ୨୨ ସଂଖ୍ୟକ ରାଜ୍ୟଟି କୋଶଳ ଏବଂ ୨୬ ସଂଖ୍ୟକ ରାଜ୍ୟଟି କଳିଙ୍ଗ । କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର'ରେ ୭୩ଟି ରାଜ୍ୟର ସୂଚନା ମିଳେ । ବ୍ରହ୍ମାଣ୍ଡ ପୁରାଣରେ ୨୦୦ରୁ ଅଧିକ ରାଜ୍ୟ ମିଳୁଛି । ସବୁଥିରେ କଳିଙ୍ଗର ନାମ ରହିଛି ।

ତେବେ ଆଧୁନିକ ଓଡ଼ିଶା 'ଓଡ୍ର' ଶବ୍ଦରୁ ଆସିଥିବା ନିଶ୍ଚିତ ହୋଇଛି । କଳିଙ୍ଗର 'ଉଡ୍ର' ବା 'ଓଡ୍ର' ଥିଲା ଏକ 'ବିଷୟ' । ବିଭିନ୍ନ ତାମ୍ରଶାସନ, ଶିଳାଲେଖରୁ ଏହା ପ୍ରମାଣିତ ହୋଇସାରିଛି । ଓଡ୍ ଶବ୍ଦ ସୌରା ଭାଷାର ଶବ୍ଦ ବୋଲି ଭାଷାବିଜ୍ଞାନୀଙ୍କର ମତ । ଓଡ୍ ଅର୍ଥ - ଚାଷ, ମାରଙ୍ଗ ଅର୍ଥ- ମଣିଷ । ସେଥିପାଇଁ ପାର୍ବତ୍ୟ ଭାଷାରେ ଯେ ଅଧିବାସୀମାନଙ୍କୁ 'ଓଡ୍‌ମାରଙ୍ଗ' କୁହା ଯାଉଥିଲା ବୋଲି ଡ଼. ବେଣୀମାଧବ ପାଢ଼ୀ ମତ ଦେଇଛନ୍ତି । ମୋଟାମୋଟି କହିଲେ ଓଡ୍‌ମାରଙ୍ଗର ଅର୍ଥ ଚଷାଲୋକ । ଓଡ଼ିଶା ଯାର ରୂପାନ୍ତର ଶବ୍ଦ । ସେଥିପାଇଁ ଅନେକ ଆର୍ଯ୍ୟଗ୍ରନ୍ଥରେ ଓଡ୍ର ବା ଉଡ୍ର ଶବ୍ଦ କଳିଙ୍ଗ ଦେଶ ଅର୍ଥରେ ବ୍ୟବହୃତ ହୋଇଛି ।

ଖ୍ରୀ.ପୂ. ୪ର୍ଥ ଶତାବ୍ଦୀରେ ମଗଧ ରାଜା ମହାପଦ୍ମ ଆକ୍ରମଣ କରି କଳିଙ୍ଗ ଉପାସନା କ୍ଷେତ୍ରରୁ 'ଜୀନାସନ' ନେଇ ଯାଇଥିଲେ । ଏଣୁ ସେତେବେଳକୁ କଳିଙ୍ଗ ଧନ-ଜନ-ଗୋପ-ଲକ୍ଷ୍ମୀ ସବୁଥିରେ ଉନ୍ନତ ଥିଲା ।

ତେବେ 'ଉତ୍କଳ' କିଏ ? ବାସ୍ତବରେ 'ଉଡ୍ର ବିଷୟ'ର ଏକ କ୍ଷୁଦ୍ର ଜନପଦ ହିଁ ଉତ୍କଳ । ଏହି ଜନପଦ ହିଁ ଯାଜପୁର ଅଞ୍ଚଳ ବୋଲି ଡ଼ଃ ବେଣୀମାଧବ ପାଢ଼ୀ ମନେ କରିଛନ୍ତି । ଯାହା ଖ୍ରୀ.ପୂ. ୬ଷ୍ଠ ଶତାବ୍ଦୀ ବେଳକୁ ଆର୍ଯ୍ୟ ବ୍ରାହ୍ମଣଙ୍କ ଦ୍ୱାରା ଯଜ୍ଞାଦି କର୍ମାନୁଷ୍ଠାନ ଦ୍ୱାରା ପବିତ୍ର ଭୂମି ରୂପେ ପ୍ରତିଷ୍ଠା ଲାଭ କରିଥିଲା । ସେଠାକାର ଗ୍ରାମଦେବତୀ 'ବିରଜା' ଯଜ୍ଞପୀଠାଧିଷ୍ଠାତ୍ରୀ ଭାବରେ ପୂଜାର୍ଚ୍ଚନା ହେଲେ । ତାହା 'ଯଜନଗ୍ର' ଭାବରେ ପରବର୍ତ୍ତୀ କାଳରେ ପ୍ରତିଷ୍ଠା ଅର୍ଜନ କଲା ।

## ସିଂହଳର ବାହୁ ରାଜବଂଶ :

ସିଂହଳର ବାହୁବଂଶୀୟ ରାଜାମାନେ ନିଜକୁ କଳିଙ୍ଗ ରାଜବଂଶଜ ବୋଲି ଗର୍ବ ଅନୁଭବ କରୁଥିଲେ, ଯେତେବେଳେ କଳିଙ୍ଗର ଦନ୍ତପୁରରୁ ବୁଦ୍ଧଦେବଙ୍କ ଦନ୍ତ ସିଂହଳକୁ ପ୍ରେରିତ ହେଲା ।

ତେଣୁ ଡ଼ଃ ସତ୍ୟନାରାୟଣ ରାଜଗୁରୁ କୁହନ୍ତି ସମ୍ଭବତଃ କୌଣସି ଏକ ଆଦିବାସୀ ରାଜବଂଶରେ ସିଂହବାହୁ ଜନ୍ମଗ୍ରହଣ କରିଥିବାରୁ ତତ୍‌କାଳୀନ ସାମାଜିକ ନିୟମ ବିରୁଦ୍ଧ କାର୍ଯ୍ୟରେ ସେ ବ୍ୟାପୃତ ଥିବା ସମ୍ଭବ । ତାଙ୍କର ରାଜଧାନୀ ସିଂହପୁରରେ ।

x x x x

କଳିଙ୍ଗରେ ଯେଉଁ ରାଜବଂଶ ଅଶୋକଙ୍କ ପୂର୍ବରୁ ଶାସନ ବିସ୍ତାର କରିଥିଲେ, ସେମାନେ ସିଂହଳର ସେହି ବାହୁ ରାଜବଂଶର ମୂଳ ଶାଖା ହେବା ସମ୍ଭବ । କାରଣ ସିଂହବାହୁଙ୍କର ଜୀବିତକାଳ ଯଦି ଖ୍ରୀ.ପୂ. ୫ମ ଶତାବ୍ଦୀରେ ସ୍ଥାପିତ ହୁଏ, ତା' ହେଲେ ସେ ବଂଶର ଶେଷ ରାଜାଙ୍କୁ ସମ୍ଭବତଃ ଅଶୋକ ଖ୍ରୀ.ପୂ. ୩ୟ ଶତାବ୍ଦୀରେ ଉଚ୍ଛେଦ କରିଥିବେ । କିନ୍ତୁ ୧୧ଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ବଂଶର ଆଧିପତ୍ୟ ରହିଥିଲା । ୧୧ଶ ଶତାବ୍ଦୀରେ ରାଜା ବିଜୟବାହୁ ସିଂହଳ ରାଜାଙ୍କୁ ବୈଦେଶିକ ପ୍ରଭାବରୁ ମୁକ୍ତ କରିଥିଲେ (ଭାରତୀୟ ସଂସ୍କୃତିର ବେଢ଼ା ପରିକ୍ରମା, ପୃ-୧୬୩) ।

ଖ୍ରୀ.ପୂ. ତୃତୀୟ ଶତାବ୍ଦୀଠାରୁ ଭାରତର ଇତିହାସ ମାନଚିତ୍ରରେ କଳିଙ୍ଗ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସିଛି । ୭ମ ଶତାବ୍ଦୀ ପର୍ଯ୍ୟନ୍ତ ଏ ଭୂମି 'କଳିଙ୍ଗ' ନାମରେ ପରିଚିତ ଥିଲାବେଳେ ୭ମରୁ ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍କଳ ନାମରେ ପରିଚିତ ଥିଲା । ୧୫ଶ ଶତାବ୍ଦୀ ପରଠାରୁ 'ଓଡ଼ିଶା' ନାମର କ୍ରମବିକାଶ ଘଟିଛି ।

ଚୌଦ୍ୱାର ଠାରେ ଖ୍ରୀ. ୧୮୭୬ରେ ଏକ ତମ୍ବାପଟା ସନନ୍ଦ ଗୋଟିଏ କ୍ଷେତରୁ ବାହାରିଥିଲା । ତହିଁରୁ ଜଣାଯାଏ ଯେ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀରେ ଓଡ଼ିଶାର ରାଜା 'ଯଯାତି' ପୁରୁଷୋତ୍ତମ କ୍ଷେତ୍ରରୁ ବୌଦ୍ଧମାନଙ୍କୁ ତଡ଼ିଦେଇ ଓଡ଼ିଶାରେ ହିନ୍ଦୁଧର୍ମର ଅଧିକାର ପୁନର୍ବାର

ସ୍ଥାପନ କରିଥିଲେ । ଉକ୍ତ ରାଜା ଆପଣାକୁ ମଗଧଦେଶର ଭାବଗୁପ୍ତଙ୍କ ଅଧୀନ ବୋଲି ସ୍ୱୀକାର କରିଅଛନ୍ତି । ପୁରୁଷୋତ୍ତମ ମନ୍ଦିରରେ ଥିବା ବିବରଣରେ ବୌଦ୍ଧମାନଙ୍କୁ ଯବନ ବୋଲି ଲେଖା ଯାଇଛି । (ଉତ୍କଳଦୀପିକା, ତା ୨ରିଖ, ଜୁନ୍ ମାସ, ଖ୍ରୀ. ୧୮୭୭) ।

## ତତ୍‌କାଳୀନ ଜଳପଥ :

ପୂର୍ବରୁ ଆଲୋଚନା ପ୍ରସଂଗରେ ଆମେ ଉଲ୍ଲେଖ କରିଥିଲୁ ଯେ ଆର୍ଯ୍ୟମାନେ ଓଡ଼ିଶାକୁ ଆସିବା ପୂର୍ବରୁ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ବାସ କରୁଥିବା ଆଦିମ ଜାତିଙ୍କର ପ୍ରଧାନ ବ୍ୟବସାୟ ଥିଲା ନୌଯାତ୍ରା । ପରବର୍ତ୍ତୀ ସମୟରେ ସେମାନଙ୍କ ସହିତ ବାହାରର ଭାଷା ସଂସ୍କୃତିର ସମ୍ମିଳନ ଘଟିଛି । ଯେବେ ଆମେ ନୌଯାତ୍ରାକୁ ଆଧାର କରି ତତ୍‌କାଳୀନ ଜଳପଥକୁ ଲକ୍ଷ୍ୟ କରିବା ।

**ରସମ୍ଭା** - ରମ୍ଭାର ପ୍ରାଚୀନ ନାମ ଥିଲା 'ରସମ୍ଭା', ସେଠାରୁ ଚିଲିକାରେ ଦକ୍ଷିଣର ଯାତ୍ରୀମାନେ ପୁରୀକୁ ନୌକାରେ ଯାତ୍ରା କରୁଥିଲେ । ରମ୍ଭାଠାରୁ ପାଲୁର ପର୍ଯ୍ୟନ୍ତ ଅନ୍ୟ ଏକ ରାଜପଥରେ ମଧ୍ୟ ଯାତ୍ରୀମାନେ ବଙ୍ଗୋପସାଗରରେ ବିଭିନ୍ନ ଦୂରଦେଶକୁ ଯାତ୍ରା କରୁଥିଲେ । (ଓଡ଼ିଶା ସାଂସ୍କୃତିକ ଇତିହାସ, ୨ୟ ଖଣ୍ଡ, ପୃ-୧୩୫, ରାଜଗୁରୁ)

**ବୈତରଣୀ ପଥ** - ଯାଜପୁର ବିରଜା କ୍ଷେତ୍ରଠାରୁ ବୈତରଣୀ ନଦୀ ଉପତ୍ୟକାରେ ଅନ୍ୟ ଏକ ପଥ ବର୍ତ୍ତମାନ ଓଡ଼ିଶାର ଉତ୍ତରସୀମାରେ ଅବସ୍ଥିତ । ତାହା ଖିଚିଙ୍ଗର ବିରାଟ ଗଡ଼ ପର୍ଯ୍ୟନ୍ତ ବିସ୍ତୃତ ଥିଲା । x x x ଖିଚିଙ୍ଗଠାରୁ ଉତ୍ତରକୁ ଏହା ସିଂହଭୂମି ଜିଲ୍ଲାର ବହୁ ପ୍ରାଚୀନ କୀର୍ତ୍ତି ମଣ୍ଡିତ 'ବେନୁସାଗର' ମାନଭୂମି ଜିଲ୍ଲାର ପୁରାତନ ଦେବାଳୟ ଶୋଭିତ 'ତେଲକୂପି' ଓ ପାଞ୍ଚେଟ ଘାଟି ଦେଇ ମଗଧର ପ୍ରାଚୀନ ରାଜଧାନୀ ଗିରିବ୍ରଜ, ରାଜଗୃହ ବା ରାଜଗିରି, ବୌଦ୍ଧକେନ୍ଦ୍ର ଗୟା, ଅଶୋକ ଯୁଗର ବହୁକୀର୍ତ୍ତିମଣ୍ଡିତ 'ଗାରଥଗିରି' ଅତିକ୍ରମ କରି ସୋଣ ଓ ଗଂଗାନଦୀର ସଙ୍ଗମସ୍ଥଳରେ ଅବସ୍ଥିତ ମଗଧର ରାଜଧାନୀ ପାଟଳୀପୁତ୍ରକୁ ସ୍ପର୍ଶ କରୁଥିଲା । (ଧଉଳୀର ଇତିହାସ, ପୃ-୧୫, ଶ୍ରୀକେଦାରନାଥ ମହାପାତ୍ର) ।

ଉପରେ ପ୍ରାଚୀନ ଓଡ଼ିଶାର ଦୁଇଟି ପଥ ଆମେ ଜାଣିଲେ । ଉପରେ ବର୍ଣ୍ଣିତ ରମ୍ଭାରୁ ଦକ୍ଷିଣର ଯାତ୍ରୀ ପୁରୀ ଆସୁଥିବାରୁ ପୁରୀରୁ ମଧ୍ୟ ଦକ୍ଷିଣକୁ ସେଇ ପଥରେ ଯାତାୟାତ ହୋଇଥିବ । ଦ୍ୱିତୀୟ ପଟଟି ଆମେ ମଗଧ ବା ବିହାରକୁ ଯିବା ଆସିବା କରିବାର ପଥ । ମାତ୍ର ଆମକୁ ପୁରୀରୁ ସୋନପୁର ବା ସୁବର୍ଣ୍ଣପୁର ଯିବା ପାଇଁ ଜଳପଥକୁ ଦେଖିବାକୁ ପଡ଼ିବ । ଖ୍ରୀ. ୭୮୦ - ୮୪୦ ଖ୍ରୀ. ମଧ୍ୟରେ ରକ୍ତବାହୁ ଆକ୍ରମଣ ସମୟରେ ଜଗନ୍ନାଥଙ୍କୁ ସୋନପୁରକୁ ସ୍ଥାନାନ୍ତରିତ କରା ଯାଇଥିଲା । ସେତେବେଳେ ସ୍ଥଳପଥ ଆଦୌ ସୁଖକର ନଥିଲା । ଜଳପଥ ହିଁ ଏକମାତ୍ର ସୁବିଧାଜନକ ପଥ, ତେବେ ପୁରୀକୁ ଜଳପଥରେ ସୋନପୁର ଯିବାର ରାଜପଥ ହେଉଛି 'ଦୟାନଦୀ କୂଳେ କୂଳେ ଅରାଗଡ଼ ପର୍ଯ୍ୟନ୍ତ ଯାଇ ସେଠାରୁ ବରୁଣେଇ ପାହାଡ଼ ଘାଟି ପାର ହୋଇ ବିସ୍ତୃତ ସମତଳ ଅଞ୍ଚଳରେ ଅବସ୍ଥିତ ନୟାଗଡ଼ ଅନ୍ତର୍ଗତ ଗୋବିନ୍ଦପୁର ଦେଇ ମହାନଦୀ କୂଳବର୍ତ୍ତୀ ବହୁ ପ୍ରାଚୀନ କୀର୍ତ୍ତି ମଣ୍ଡିତ କଣ୍ଟିଲୋରେ ପହଞ୍ଚିଥିଲା । ସେଠାରୁ

ଏହି ପଥ ଦୀର୍ଘ, ଭୟଙ୍କର ଓ ବିପଜ୍ଜନକ ବରମୂଳ ଘାଟି ପାର ହୋଇ ବୌଦ 'ଗନ୍ଧରାଡ଼ି' ମନମୁଣ୍ଡା ବାଟରେ ତେଲ ଓ ମହାନଦୀ ସଙ୍ଗମ ସ୍ଥଳରେ ଅବସ୍ଥିତ ସୋନପୁରକୁ ସ୍ପର୍ଶ କରୁଥିଲା । (ତତ୍ରୈବ)

କିନ୍ତୁ ଡ଼ଃ ରାଜଗୁରୁ ଏହି ରାଜପଥକୁ ଗ୍ରହଣ ନ କରି ଫୁଲବାଣୀ ଜିଲ୍ଲାର ସୁଦୂର ପଶ୍ଚିମ ସୀମାନ୍ତରେ କୋଟଗଡ଼ ନିକଟରେ 'ସୁବର୍ଣ୍ଣଗିରି'ର ଅବସ୍ଥିତି ଅଦ୍ୟାପି ରହିଛି ବୋଲି ଲେଖିଛନ୍ତି ।

୪ ରାଜଗୁରୁ ନିର୍ଦ୍ଦେଶ କରୁଥିବା 'ସୁବର୍ଣ୍ଣଗିରି' ଏବଂ ତେଲ ଓ ମହାନଦୀ ସଙ୍ଗମ ସ୍ଥଳରେ ଅବସ୍ଥିତ ସୁବର୍ଣ୍ଣପୁର ଅଲଗା । ସୁବର୍ଣ୍ଣଗିରିକୁ ନୌ-ବାଣିଜ୍ୟ ଜଳପଥ ଥାଇପାରେ । ମାତ୍ର ଆମର ଲକ୍ଷ୍ୟସ୍ଥଳ 'ସୁବର୍ଣ୍ଣପୁର' ହୋଇଥିବାରୁ 'ସୁବର୍ଣ୍ଣପୁର' ଜଳପଥ ହିଁ ଆମର ଆଲୋଚ୍ୟ ।

**ବଙ୍ଗ ଜଳପଥ** - ସପ୍ତମ ଶତାବ୍ଦୀରେ ଚୀନ ପରିବ୍ରାଜକ ହୁଏନ୍ ସାଂଙ୍କ ଭ୍ରମଣ ବୃତ୍ତାନ୍ତରୁ ଆମେ ଦେଖିବା ଓଡ଼ିଶାରୁ ବଙ୍ଗକୁ ଓ ବଙ୍ଗରୁ ଓଡ଼ିଶାକୁ ଯାତାୟାତର ପଥ । ସେ ଲେଖିଛନ୍ତି - ତାମ୍ରଲିପ୍ତି ବନ୍ଦରରୁ ପଶ୍ଚିମୋତ୍ତର ଦିଗକୁ ପ୍ରାୟ ୭୦୦ ଲି ଯାତ୍ରାକରି କର୍ଣ୍ଣସୁବର୍ଣ୍ଣ ରାଜଧାନୀରେ ପହଞ୍ଚିଲେ, ପୁଣି ସେଠାରୁ ସେ ଦକ୍ଷିଣ ପଶ୍ଚିମ ଦିଗରେ ପ୍ରାୟ ୭୦୦ ଲି ଗଲାପରେ ଉଚା (ଉଡ୍ର) ରାଜ୍ୟରେ ପ୍ରବିଷ୍ଟ ହେଲେ (Watter's Vol.-II, P-191) । ଏଥିରୁ ଜଣାପଡୁଛି ଯେ ଖଡ଼ଗପୁର ଠାରୁ ଠିକ୍ ପୂର୍ବକୁ ପ୍ରାୟ ୮୦ କି.ମି. ଦୂରରେ ଅବସ୍ଥିତ ତମଲୁକ୍ (ତାମ୍ରଲିପ୍ତି)ଠାରୁ ପଶ୍ଚିମୋତ୍ତର ଦିଗରେ ପଶ୍ଚିମଦିଗରେ ବଙ୍ଗର ମାନଭୂମି ଓ ଧଳଭୂମି ଠାକୁ ଯାଇ ସେଠାରୁ ବୈତରଣୀ ପୂର୍ବତଟକୁ ଲାଗିଥିବା ଉଡ୍ର- ବିଷୟକୁ ସେ ଆସିଥିବା ସମ୍ଭବ (Ins. of Orissa Vol.-I Pt.II.PP-256-7) । ଓଡ୍ର ଦେଶରୁ ସେ ପୁଷ୍ପଗିରି (ରତ୍ନଗିରି) ଦେଇ 'ଚାଲିଟାଲୋ' (ଚିତ୍ରୋତ୍ପଳା) ନିକଟରେ ପ୍ରବିଷ୍ଟ ହେଲେ ।

ଏହି ପଥଟି ନିର୍ଦ୍ଦିଷ୍ଟ କଲାବେଳେ ଆମକୁ ସ୍ମରଣ ରଖିବାକୁ ହେବ ଯେ 'ବଙ୍ଗ' କହିଲେ ବର୍ତ୍ତମାନର 'ବଙ୍ଗଳାଦେଶ', ଏହା ପଶ୍ଚିମବଂଗ ବା କଲିକତା ନୁହେଁ । କାରଣ ହୁଏନ୍ ସାଂଙ୍କ ବେଳକୁ କଲିକତାର ଚିହ୍ନବର୍ଣ୍ଣ ନଥିଲା । ବରାହମିହିର (୫୫୦)ଙ୍କ ସମୟରେ ନବଖଣ୍ଡ ମେଦିନୀରେ ଏବଂ ହ୍ୱାଂତ୍ୱାଂ (୬୨୯-୬୪୨)ଙ୍କ ଭାରତବର୍ଷର ବର୍ଣ୍ଣନାରେ ମଧ୍ୟ ପଶ୍ଚିମବଙ୍ଗର ସତ୍ତା ନାହିଁ କିମ୍ବା କଲିକତାର ଚିହ୍ନ ନାହିଁ । ମହାଭାରତ କାଳୀନ ମାନଚିତ୍ରରେ ତ ମୋଟେ ନଥିଲା । ତେଣୁ ଉପରୋକ୍ତ ଜଳପଥ ସିଧା ବର୍ତ୍ତମାନର ବଙ୍ଗଳାଦେଶରୁ ଓଡ଼ିଶାକୁ ଓ ଓଡ଼ିଶାରୁ ବଙ୍ଗଳାଦେଶକୁ ଥିଲା ।

**ପିପିଲି ଜଳପଥ** - ଓଡ଼ିଶାର ପ୍ରାଚୀନ ବନ୍ଦର ପିପିଲି ଆଜି ଲୁପ୍ତ । ଏହି ବନ୍ଦର ବାଲେଶ୍ୱର ଜିଲ୍ଲାର ସୁବର୍ଣ୍ଣରେଖା ନଦୀ ମୁହାଁଣରେ ହିଁ ଥିଲା (ଡ଼.ମହାତବ) । ଏହି ବନ୍ଦରରେ ପୂର୍ବେ ଡ଼ଚ୍‌ମାନଙ୍କର ଆଡ୍‌ଡ଼ା ଥିଲା । ପିପିଲି 'ଦାସ' କ୍ରୟବିକ୍ରୟର ପ୍ରଧାନ କେନ୍ଦ୍ର ଥିଲା । ଆରାକାନି ଜଳଦସ୍ୟୁମାନେ ଏଠାକୁ ବନ୍ଦୀମାନଙ୍କୁ ବିକ୍ରୟ କରିବା ପାଇଁ ଆଣୁଥିଲେ ।

ଖ୍ରୀ.୧୬୫୨ରେ ହୁଗୁଳି ବନ୍ଦର ପର୍ତ୍ତୁଗୀଜମାନଙ୍କ ହାତରୁ ଚାଲି ଯାଇଥିଲେ ମଧ୍ୟ ପିପିଲି ବନ୍ଦରରେ ସେମାନଙ୍କର ପ୍ରଭାବ ରହିଥିଲା । ଏପରିକି ଖ୍ରୀ.୧୭୨୩ ପର୍ଯ୍ୟନ୍ତ ପିପିଲିରେ ପର୍ତ୍ତୁଗୀଜ ବଣିକଙ୍କର ବସତି ରହିଥିଲା । ଅର୍ଥାତ୍ ଏହି ୧୭୨୩ ଖ୍ରୀ. ପର୍ଯ୍ୟନ୍ତ ପିପିଲି ବନ୍ଦର କାର୍ଯ୍ୟକ୍ଷମ ଥିଲା ।

**ସମୁଦ୍ର ବାଣିଜ୍ୟ -** ଋଗ୍‌ବେଦ କାଳରେ ଆର୍ଯ୍ୟମାନେ ସମୁଦ୍ର ବିହାରରେ ଦକ୍ଷ ଥିଲେ । ବିଦର୍ଭ ଓ କଳିଙ୍ଗର ଆର୍ଯ୍ୟମାନେ ଅତି ପ୍ରାଚୀନ କାଳରୁ ନୌଚାଳନା ଜାଣିଥିଲେ । ଶାଶ୍ୱତମାନେ ଯେତେବେଳେ ବିଦର୍ଭରୁ କଳିଙ୍ଗକୁ ଆସିବାକୁ ବାହାରିଥିଲେ ସେତେବେଳେ ସେମାନଙ୍କ ସାମନାରେ ପଥାରୂଢ଼ ହେଲା ମହାନଦୀ ଓ ବିଶାଳ ସମୁଦ୍ର । ପର୍ବତ ଏବଂ ଘନଅରଣ୍ୟ ଅତିକ୍ରମ କରିବାର ଦୁଃସାଧ ପ୍ରଚେଷ୍ଟା ସେମାନେ ପରିତ୍ୟାଗ କରି ଜଳପଥରେ ଅତିକ୍ରମ କରିବାକୁ ସହଜ ମନେ କରିଥିଲେ । ତେଣୁ ନଦୀପଥରେ ସେମାନେ ଆସି ଉପନିବେଶ ସ୍ଥାପନ କରିଥିଲେ । କଳିଙ୍ଗରେ ଥାଇ ସେମାନେ ଆସ୍ତେ ଆସ୍ତେ ସମୁଦ୍ରପଥ ଓ ନଦୀପଥ ଉଭୟ ବ୍ୟବହାର କରି ଅଙ୍ଗ,ବଙ୍ଗ, ପୁଣ୍ଡ୍ର, ସୁହ୍ମ ଓ ମଗକଳିଙ୍ଗକୁ ଅଗ୍ରସର ହୋଇ ଉପନିବେଶ ସ୍ଥାପନ କଲେ । ଶେଷରେ ସେମାନେ ପୂର୍ବଭାରତୀୟ ଦ୍ୱୀପପୁଂଜରେ ପହଞ୍ଚି ପାରିଥିଲେ । ଏହି ସମସ୍ତ ଅଞ୍ଚଳକୁ ମିଶାଇ ସେତେବେଳେ କୁହାହେଲା କଳିଙ୍ଗ ।

(ସମ୍ବଲପୁର ଇତିହାସ, ପୃ-୧୦୬) ।

ଅତଏବ ଏଥିରୁ ଆମକୁ ଜଣାଯାଉଛି, ତତ୍‌କାଳୀନ ଆର୍ଯ୍ୟମାନେ ଯେଉଁମାନେ କି କଳିଙ୍ଗରେ ନିଜର ଉପନିବେଶ ସ୍ଥାପନ କରିଥିଲେ, ସେମାନେ ପରବର୍ତ୍ତୀ କାଳରେ କଳିଙ୍ଗ ଆର୍ଯ୍ୟଭାବେ ପରିଚିତ ହେଉଥିଲେ ଏବଂ ସେମାନେ ବିଭିନ୍ନ ନଦୀର ଏବଂ ସମୁଦ୍ରର ଉପଯୋଗିତା ଜାଣିଥିଲେ । ତେଣୁ ପ୍ରାଚୀନ କାଳରୁ ନୌବାଣିଜ୍ୟରେ ଉପଯୋଗ ହେଲାପରି ବିଶାଳ ବିଶାଳ ପୋତ ନିର୍ମାଣ କୌଶଳ ଜାଣିଥିଲେ । ଭାରତୀୟ ବଣିକମାନେ "ପାରେ-ସମୁଦ୍ର" ବାଣିଜ୍ୟ (ଋ.ବେ. ୪ର୍ଥ ମଣ୍ଡଳ, ୫୫ ସୂକ୍ତ) କଲାପରି କଳିଙ୍ଗବାସୀ ମଧ୍ୟ "ପାରେ-ସମୁଦ୍ର" ବାଣିଜ୍ୟ କରୁଥିଲେ ।

ମହାଭାରତରେ ଭାରତୀୟ ଅର୍ଣ୍ଣବପୋତର ବିଶାଳତା ମିଳେ (ଆଦିପର୍ବ, ୧୫୪ ଅଧ୍ୟାୟ, ଶ୍ଳୋକ ୫-୭) । ସାମୁଦ୍ରିକ ଘୂର୍ଣ୍ଣି ଓ ଉତ୍ତାଳତରଙ୍ଗ ପ୍ରତିରୋଧ କଲାପରି ଅର୍ଣ୍ଣବମାନଙ୍କର ତିଆରି ହେବା ସହିତ ବିଭିନ୍ନ ପ୍ରକାର ଯନ୍ତ୍ର ଖଂଜା ଯାଉଥିଲା

ତତଃ ପ୍ରବାସିତୋ ବିଦ୍ୱାନ୍ ବିଦୁରେଣ ନରସ୍ତଦା ।
ପାର୍ଥାନାଂ ଦର୍ଶୟାମାସ ମନୋମାରୁତଗାମିନୀଂ ।।
ସର୍ବବାତସହାଂ ନାବଂ ଯନ୍ତ୍ରଯୁକ୍ତାଂ ପତାକିନୀଂ ।
ଶିବେ ଭାଗୀରଥୀତୀର ନରୈ ବିଶ୍ରମ୍ଭିଭିଃ କୃତାଂ ।।

ପାଶ୍ଚାତ୍ୟରେ ଏହି ଅର୍ଣ୍ଣବପୋତ ବିଜ୍ଞାନ ଖ୍ରୀ ୫ମ ଶତକରେ ଆରମ୍ଭ ହୋଇଥିବାର ପ୍ରମାଣ ମିଳୁଥିବା ବେଳେ ଗ୍ରୀସ୍, ଫିନିସ୍ ଓ ମିଶରବାସୀମାନେ ଜଳପଥ ଅତିକ୍ରମ କରିବାର କେତେକ

ଉପାୟମାତ୍ର ଅବଲମ୍ବନ କରୁଥିଲେ । ୧୬ଶ ଶତାବ୍ଦୀ ପର୍ଯ୍ୟନ୍ତ ପାଶ୍ଚାତ୍ୟରେ ଏହି ବିଜ୍ଞାନର ସେପରି କୌଣସି ଆଖିଦୃଶିଆ ଉନ୍ନତି ହୋଇ ନଥିବା ବେଳେ, ଅବିଭକ୍ତ ବିଶାଳ ଭାରତ ଭୂଖଣ୍ଡର ଅର୍ଣ୍ଣବପୋତମାନ ପ୍ରକାଣ୍ଡ ଆକାରରେ ନିର୍ମିତ ହୋଇ ନିର୍ଦ୍ୱନ୍ଦରେ ଅନାୟାସରେ ଜଳପଥରେ ଦୀର୍ଘଦିନ ଧରି ଘୁରି ବୁଲୁଥିଲା ।

କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ପୋତ ନିର୍ମାଣ ଏବଂ ସାମୁଦ୍ରିକ ବାଣିଜ୍ୟ ସମ୍ବନ୍ଧରେ ବହୁ ପ୍ରମାଣ ଦୃଷ୍ଟିଗୋଚର ହୁଏ । ଖ୍ରୀଷ୍ଟ ପୂର୍ବରୁ ଭାରତୀୟ ବଣିକମାନେ ରୋମ, ଫିନିସ୍, ଗ୍ରୀସ୍, ମିଶର, ପାରସ୍ୟ, ସିଂହଳ, ପୂର୍ବଭାରତୀୟ ଦ୍ୱୀପପୁଂଜ, ବ୍ରହ୍ମ, ଶ୍ୟାମ ପ୍ରଭୃତି ଦେଶ ସହିତ ବାଣିଜ୍ୟ କାରବାର କରୁଥିଲେ ।

**ବାଣିଜ୍ୟର ପ୍ରାଚୀନତା -** ଏହି ସମ୍ବନ୍ଧରେ ସାମାନ୍ୟ ଭାବରେ ଆଉ ଟିକେ ଆଲୋଚନା କଲେ ଆମର ସନ୍ଦେହ ରହିବ ନାହିଁ । ମହାଭାରତର ଶ୍ୱେତଦ୍ୱୀପ ଗମନ ବିଷୟକ ଆଖ୍ୟାୟିକାରୁ ଜଣାପଡୁଛି ଭାରତ ମଧ୍ୟପ୍ରାଚ୍ୟ ସହ ମଧ୍ୟ ସଂଯୁକ୍ତ ଥିଲା ।

ଜର୍ମାନ୍ ଗବେଷକ 'ହୋଲାଗାର' ଯୀଶୁ ଯେଉଁ ପଥ ଦେଇ ଭାରତକୁ ଆସିଥିଲେ ତାର ଏକ ମାନଚିତ୍ର ପ୍ରସ୍ତୁତ କରିଛନ୍ତି । ସେଥିରେ ପ୍ରାଗ୍ ଐତିହାସିକ କାଳରୁ ଭାରତ ସହିତ ଯାତାୟତ ପଥ କିପରି ଉନ୍ମୁକ୍ତ ଥିଲା ସେ ସୂଚନା ଦେଇଛନ୍ତି ।

ଇଜିପ୍ଟ ସହ ଭାରତର ବାଣିଜ୍ୟ ଏବଂ ୟୁରୋପ ସହ ଭାରତର ବାଣିଜ୍ୟ ଜେରୁଜେଲମ୍ ମଧ୍ୟରେ ଚାଲିଥିଲା । ସି.କୋଲିନ୍ ଡ଼େଭିସ୍‌ଙ୍କର 'ଏନ୍ ହିଷ୍ଟୋରିକାଲ୍ ଏଟଲାସ୍' ଯାହା ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ସଂସ୍କୃତ ପ୍ରଫେସର ବ୍ୟୁରୋଙ୍କ ସହାୟତାରେ ପ୍ରସ୍ତୁତ କରାଯାଇଛି, ସେଥିରୁ ପ୍ରାଚୀନ ଭାରତ ସହିତ ପାଶ୍ଚାତ୍ୟ ଜଗତର ବାଣିଜ୍ୟପଥର ଗୋଟିଏ ପ୍ରମାଣିକ ମାନଚିତ୍ର ସହ କିଛି ଐତିହାସିକ ତଥ୍ୟ ମିଳୁଛି । ସେଥିରୁ ଜଣାପଡୁଛି ଖ୍ରୀ.ପୂ. ୭୦୦ ପୂର୍ବରୁ ଭାରତ ସହ ଇଜିପ୍ଟରେ ରହୁଥିବା ଗ୍ରୀକ୍‌ମାନେ ମଧ୍ୟ ଭାରତ ସହ ବ୍ୟାପାରିକ ସଂପର୍କ ରଖିଥିଲେ ।

ଯେତେବେଳେ ଇଜିପ୍ଟ ରୋମାନ୍ ସାମ୍ରାଜ୍ୟର ଅଙ୍ଗ ଥିଲା, ସେତେବେଳେ ସେମାନେ ସ୍ଥଳପଥରେ ସିରିଆବାସୀ, ୟିହୂଦୀ, ଆରମାନିୟ, କାକସୀୟ, ସୋମାଲିୟ ଏବଂ ପାର୍ଥିଏନ୍‌ମାନେ ଭାରତ ସହ ବାଣିଜ୍ୟ କାରବାର କରୁଥିଲେ ।

ଆଲେକ୍‌ଜାଣ୍ଡ୍ରିଆ ଓ ରୋମ୍‌ର ଗ୍ରୀକ୍‌ମାନେ ଜଳପଥରେ ଏକାଧିପତ୍ୟ ପ୍ରଭାବ ବିସ୍ତାର କରିଥିବାରୁ ମରୁସ୍ଥଳ ଦେଇ ଆରବ୍ୟମାନେ ଭାରତ ସହ ବାଣିଜ୍ୟ କରୁଥିଲେ ।

ଏହି ବାଣିଜ୍ୟିକ ଫଳ ହିଁ ରାଜନୀତିକୁ ପ୍ରସାରିତ ହୋଇଥିଲା ପ୍ରଥମ ଶତାବ୍ଦୀରେ । ଶତାବ୍ଦୀର ପ୍ରାରମ୍ଭରେ କୁଶାଣ ଜାତି ଭାରତରେ ଆଧିପତ୍ୟ ବିସ୍ତାର କରିଥିଲେ । ସେମାନଙ୍କ ମଧ୍ୟରୁ ଶ୍ରେଷ୍ଠରାଜା କନିଷ୍କ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ବୌଦ୍ଧଧର୍ମକୁ ରାଷ୍ଟ୍ରଧର୍ମ ଭାବରେ ଘୋଷଣା କରିଥିଲେ । (ଡ଼ଃ ଉମେଶ ପତ୍ରୀ)

ଅତଏବ ଜଣାପଡୁଛି ମରୁସ୍ଥଳଦେଇ ଆରବ୍ୟମାନେ ଭାରତସହ ବାଣିଜ୍ୟ କାରବାର କରିବା ପରେ ଏଠାକାର ରାଜନୀତିରେ ହସ୍ତକ୍ଷେପ କରିଥିଲେ । ଏଠାରେ ସ୍ଥାୟୀଭାବେ ରହିବା ପରେ ଜଳପଥରେ ମଧ୍ୟ ସେମାନେ ବାଣିଜ୍ୟ କାରବାର କରୁଥିଲେ । ତେଣୁ ଭାରତର ଜଳପଥ ସମ୍ବନ୍ଧରେ ସେମାନେ ଖୁବ୍ ଅଭିଜ୍ଞ ଥିଲେ । ଲୁଣ୍ଠନ କରିବା ସେମାନଙ୍କର ମୁଖ୍ୟ ଲକ୍ଷ୍ୟ ରହୁଥିଲା । ବାଣିଜ୍ୟ ସହିତ ରାଜନୀତିକୁ ସଂପୃକ୍ତ କରି ସେମାନେ ଲୁଣ୍ଠନ କରୁଥିଲେ । ପ୍ରଥମ ଶତାବ୍ଦୀରୁ ସେମାନେ ଭାରତରେ ଆଧିପତ୍ୟ ବିସ୍ତାର କରିବା ଆରମ୍ଭ କରିଥିବାରୁ ସେମାନେ ସେ ଦିଗରେ ଦୃଢ଼ ହେବାପାଇଁ ୧୦୦/୨୦୦ ବର୍ଷ ଲାଗିଥିବ । ତା'ପରେ ସେମାନେ ନୌଯାତ୍ରାରେ ସିଦ୍ଧହସ୍ତ ହେବାପାଇଁ କିଛି ବର୍ଷ ଲାଗିଥିବ । କେଉଁସ୍ଥାନରୁ ଜଳପଥରେ ଲୁଣ୍ଠନ କରାଯାଇ ପାରିବ ତାହା ସେମାନେ ଖୁବ୍ ଭଲ ଭାବରେ ପରଖି ଥିବେ ।

କଲଚୁରି ସାମ୍ରାଜ୍ୟ (ଏକାଦଶ ଶତାବ୍ଦୀକୁ ୧୮ଶ ଶତାବ୍ଦୀ ଆନୁମାନିକ ୭୫୦ ବର୍ଷ) ସୀମାଦେଇ ଯେଉଁ ଜଳପଥ ଉତ୍ତର-ଭାରତ ଏବଂ ଦକ୍ଷିଣ-ଭାରତ ସହ କଳିଙ୍ଗକୁ ସଂଯୋଗ କରୁଥିଲା ତାହା ଦେଖିବା । 'ତ୍ରିପୁରୀ'ରେ ମିଶିଥିବା ଜଳପଥର ଗୋଟିଏ ପଥ ବୁନ୍ଦେଲଖଣ୍ଡ ଦେଇ ତ୍ରିପୁରୀକୁ ପ୍ରୟାଗ ସହ ସଂଯୋଗ ଥିଲା । ଦକ୍ଷିଣରେ ଏହି ପଥ ନାଗପୁର ଦେଇ ଆନ୍ଧ୍ରଦେଶ ପର୍ଯ୍ୟନ୍ତ ପହଞ୍ଚିଥିଲା । ଅନ୍ୟ ଏକ ମାର୍ଗ ବିଦିଶା ଦେଇ ଉଜ୍ଜୟିନ ଏବଂ ମାହିଷ୍ମତୀ ସହିତ ସଂଯୁକ୍ତ ଥିଲା । ଅନ୍ୟ ଏକ ପଥ କଟନୀ ଦେଇ 'ଦକ୍ଷିଣ କୋଶଳ' ପର୍ଯ୍ୟନ୍ତ ଯାଇଥିଲା । ଦକ୍ଷିଣ କୋଶଳର ଅର୍ଥ ଏଠରେ 'ଛତିଶଗଡ଼' । (ମୋତୀଚନ୍ଦ୍ର, ସାର୍ଥବାହ, ପୃ-୨୪ ଏବଂ ମାନଚିତ୍ର) ।

ଏଠି କନିଙ୍ଗ୍‌ହାମ୍‌ଙ୍କ ମତ ପର୍ଯ୍ୟାଲୋଚନା କଲେ କଳିଙ୍ଗ ଏବଂ ଉତ୍କଳ ଉଭୟ ଦେଶ ସହିତ କିପରି ଜଳପଥ ସଂଯୋଗ ଥିଲା ତାହା ସ୍ପଷ୍ଟ ହୋଇଯିବ । କନିଙ୍ଗ୍‌ହାମ୍ ଛତିଶିଗଡ଼ର ବହୁ ପ୍ରାଚୀନ ଜଳପଥକୁ ନିର୍ଦ୍ଦିଷ୍ଟ କରିଛନ୍ତି । ଯେପରିକି 'କଲଚୁରି' ରାଜତ୍ୱ ପୂର୍ବରୁ ଏହି ପଥ 'ଛତିଶିଗଡ଼'ରୁ କଟକ ଓ ଗଂଜାମ ଉଭୟ ନଗରୀକୁ ବାଣିଜ୍ୟ ବ୍ୟବସାୟ ପାଇଁ ଉନ୍ମୁକ୍ତ ଥିଲା ।

କନିଙ୍ଗ୍‌ହାମ୍‌ଙ୍କ ଅନୁଯାୟୀ ପ୍ରାଚୀନ କୁଣ୍ଡିଳପୁରର ଭାଂଦକ ଅଥବା ଦେବଲ୍‌ୱାଡ଼ା ଦେଇ ଏହି ଜଳପଥ ଦେବଟେକ, ପଲାସଗଡ଼, ବଂଜାରୀ, ଆମ୍ଭାଗଡ଼, ବାଲୋଦ, ସୋର, ଗୁରୁର ହେଇ ଆଗକୁ ଦୁଇଭାଗ ହୋଇ ଯାଇଥିଲା । ଯାହାର ଏକ ଶାଖା ଗଂଜାମ ବନ୍ଦରକୁ ସଂଯୋଗ କରୁଥିବା ବେଳେ ଅନ୍ୟ ଏକ ଶାଖା 'କଟକ ନଗରୀ'କୁ ସ୍ପର୍ଶ କରିଥିଲା । (କନିଙ୍ଗ୍‌ହାମ୍, ଆର୍କ୍ୟୋଲୋଜିକାଲ୍ ସର୍ଭେ ଅଫ୍ ଇଣ୍ଡିଆ ରିପୋର୍ଟସ୍- ୭ମ, ପୃ-୧୪୦) ।

କନିଙ୍ଗ୍‌ହାମ୍‌ଙ୍କ ମତ ଗ୍ରହଣଯୋଗ୍ୟ । କଲ୍‌ଚୁରି ସାମ୍ରାଜ୍ୟ ପ୍ରତିଷ୍ଠା ପୂର୍ବରୁ ହୈହୟ୍‌ମାନେ ନାଗମାନଙ୍କୁ ପରାସ୍ତ କରି ଶାସନ କରୁଥିଲେ । ସେଇ ସମୟରୁ କଳିଙ୍ଗ ଏବଂ ଉତ୍କଳ ସହିତ ମଧ୍ୟ ଏବଂ ଉତ୍ତର ଭାରତ ସହ ଜଳପଥ ସଂଯୋଗ ରହିଥିଲା । ପୌରାଣିକ ମତରେ ଏହି ହୈହୟ ବଂଶର ଥିଲେ ସହସ୍ରବାହୁ ଅର୍ଜୁନ ।

କିନ୍ତୁ ପୌରାଣିକ ପରମ୍ପରାରେ ଶିଶୁନାଗଙ୍କ ସମକାଳୀନ ଯେଉଁ ଶାସକମାନେ ଥିଲେ ସେମାନଙ୍କ ମଧ୍ୟ ୨୪-ଇକ୍ଷ୍ୱାକୁ, ୨୭-ପାଞ୍ଚାଳ, ୨୪-କାଶୀନରେଶ, ୨୮-ହୈହୟ,

୩୨- କଳିଙ୍ଗ, ୨୫ - ଅଶ୍ମକ, ୩୬ - କୁରୁ, ୨୮- ମୈଥିଳ, ୨୩ - ଶୂରସେନ ଓ ୨୦-ବୀତହୋତ୍ର ଶାସକ ଆସୁଥିବା ବେଳେ କଲଚୁରି ଶାସକ ନାହାଁନ୍ତି । ଅଥଚ କଲଚୁରୀ ରାଜବଂଶ ଇତିହାସରେ କଳିଙ୍ଗ ରାଜାଙ୍କ ସମ୍ବନ୍ଧରେ ଭ୍ରାନ୍ତ ତଥ୍ୟ ଦିଆଯାଇଛି । କଳିଙ୍ଗ ରାଜ ଦକ୍ଷିଣ କୋଶଳରେ ଅର୍ଥାତ୍ ଆଧୁନିକ ଛତିଶିଗଡ଼ରେ 'ତୁମ୍ମାଣ'ଠାରେ ୧୦୦୦ ଖ୍ରୀଷ୍ଟାବ୍ଦରେ (ଆନୁମାନିକ) ଯେଉଁ ସାମ୍ରାଜ୍ୟ ସ୍ଥାପନ କରିଥିଲେ ସେହି କଳିଙ୍ଗରାଜ ତ୍ରିପୁରୀଶାଖା ବଂଶର ଏକ ରାଜକୁମାର ବୋଲି କୁହାଯାଇଛି । କିନ୍ତୁ କଳିଙ୍ଗ ରାଜଙ୍କ ପୁତ୍ର କମଳରାଜ (ଖ୍ରୀ. ୧୦୨୦-୧୦୪୫) ରାଜସିଂହାସନରେ ବସିଥିଲେ ଏବଂ ଯେ ସମ୍ବନ୍ଧରେ ଉତ୍କଳ ରାଜାଙ୍କ ଅଭିଲେଖରୁ ସବିଶେଷ ତଥ୍ୟ ମିଳୁଛି । ଅଥଚ କଲଚୁରୀ ତଥା ତ୍ରିପୁରୀଶାଖା ବଂଶର କୌଣସି ତଥ୍ୟ ଏମାନଙ୍କ ବିଷୟରେ ମିଳିନାହିଁ ।

**କମଳରାଜ :**

କଳିଙ୍ଗରାଜଙ୍କ ମୃତ୍ୟୁପରେ କମଳରାଜ ୧୦୨୦ ଖ୍ରୀଷ୍ଟାବ୍ଦରେ ରାଜା ହୋଇଥିଲେ । ସେ ୧୦୪୫ ପର୍ଯ୍ୟନ୍ତ ରାଜ୍ୟଶାସନ କରିଥିବାର ଜଣାପଡୁଛି । ପ୍ରଥମ ପୃଥ୍ୱୀଦେବଙ୍କର ଅମୋଦା ତାମ୍ରପତ୍ରରେ କୁହାଯାଇଛି କମଳରାଜ ଉତ୍କଳର ରାଜାଙ୍କୁ ଧ୍ୱସ୍ତବିଧ୍ୱସ୍ତ କରି ଏହାର ଲକ୍ଷ୍ମୀଙ୍କୁ 'ଗାଙ୍ଗେୟଦେବ'ଙ୍କୁ ଦେଇଥିଲେ । ଯାର ଆଭିମୁଖ୍ୟ ହେଲା ତ୍ରିପୁରୀର ମୁଖ୍ୟଶାଖାର ରାଜାଙ୍କ ଉତ୍କଳ ଆକ୍ରମଣରେ କମଳରାଜ ଅଂଶଗ୍ରହଣ କରିଥିଲେ ।

ଗାଙ୍ଗେୟଦେବଙ୍କର ଉତ୍କଳ ବିଜୟ ସମ୍ବନ୍ଧିତ ଜ୍ଞାନ ପରୋକ୍ଷ ଭାବରେ "ରୀୱା ଶିଳାଲେଖରୁ' ମିଳେ । ଯେଉଁଥିରେ ଉଲ୍ଲେଖ ଅଛି ଯେ ତାଙ୍କ ସୈନିକମାନଙ୍କ ଦ୍ୱାରା ମରା ଯାଇଥିବା ହସ୍ତୀମାନଙ୍କର ରକ୍ତରେ ସମୁଦ୍ରକୂଳ କାଦୁଅ ହୋଇ ଯାଇଥିଲା । ଗୋହରବା ତାମ୍ରପତ୍ରରୁ ଜଣାପଡୁଛି ଉତ୍କଳ ରାଜାଙ୍କୁ ପରାଜିତ କରି ପୂର୍ବ ସମୁଦ୍ରକୂଳରେ ନିଜ ବାହୁରେ ବିଜୟ ସ୍ତମ୍ଭ ସ୍ଥାପିତ କରିଥିଲେ ।

ଗାଙ୍ଗେୟଦେବ ଓ କମଳରାଜଙ୍କ ଦ୍ୱାରା ପରାଜିତ ଉତ୍କଳର ରାଜା କିଏ ଥିଲେ ତାହା ନିର୍ବିବାଦ ହୋଇନାହିଁ ।

୧ - ଏନ୍.ପି. ଚକ୍ରବର୍ତ୍ତୀଙ୍କ ଅନୁସାରେ ପରାଜିତ ରାଜା ଥିଲେ ଗଙ୍ଗବଂଶୀୟ କମାର୍ଣ୍ଣବ । (କିନ୍ତୁ ଗଙ୍ଗବଂଶର କୌଣସି ଶାସକ ଅନନ୍ତବର୍ମନଙ୍କ ପୂର୍ବରୁ ଉତ୍କଳରେ ଶାସନ କରି ନଥିଲେ ।)

୨ - ମିରାଶଙ୍କ ମତରେ ଉତ୍କଳର ରାଜା ଥିଲେ କରବଂଶୀୟ ୨ୟ ଶୁଭାକର । ଯାଙ୍କ ମତରେ ଏହି ଅଭିଯାନ ବେଳେ ଦକ୍ଷିଣ କୋଶଳର ସୋମବଂଶୀୟ ରାଜା ମହାଶିବଗୁପ୍ତ ଯଯାତିଙ୍କ ସହିତ ଯୁଦ୍ଧ ହୋଇଥିଲା ।

୩- ସୁଧାକର ପାଣ୍ଡେୟଙ୍କ ମତରେ ପରାଜିତ ହୋଇଥିବା ଉତ୍କଳ ରାଜା ଥିଲେ ସୋମବଂଶୀୟ ଧର୍ମରଥ ଅଥବା ତାଙ୍କର ଭାଇ ନହୁଷ ।

୪- ଅଜୟମିତ୍ର ଶାସ୍ତ୍ରୀଙ୍କ ମତରେ ରାଜା ଥିଲେ ଇନ୍ଦ୍ରରଥ । ଶାସ୍ତ୍ରୀ ମହୋଦୟ 'ମିରାଶ'ଙ୍କ ମତକୁ ଖଣ୍ଡନ କରି କୁହନ୍ତି ୨ୟ ଶୁଭାକରଦେବ ଗାଙ୍ଗେୟଦେବଙ୍କ ଠାରୁ

ପ୍ରାଚୀନ । ଏହିପରି ମହାଶିବଗୁପ୍ତ ଯଯାତିଙ୍କୁ ମଧ୍ୟ ଗାଙ୍ଗେୟ ଦେବଙ୍କ ସମକାଳୀନ ବୋଲି ମାନି ନାହାଁନ୍ତି । କାରଣ ବର୍ତ୍ତମାନ ପର୍ଯ୍ୟନ୍ତ କୌଣସି ଐତିହାସିକ ମହାଶିବଗୁପ୍ତ ଯଯାତିଙ୍କୁ ୧୦୦୦ ଖ୍ରୀଷ୍ଟାବ୍ଦ ପରର ବୋଲି ମାନି ନାହାଁନ୍ତି ।

ସେତେବେଳେ କଲଚୁରିର ରାଜଧାନୀ ଥିଲା ତ୍ରିପୁରୀ । ପ୍ରାଚୀନ ନାମ 'ଡାହଲ' । ବର୍ତ୍ତମାନର ଜବଲପୁର ନିକଟବର୍ତ୍ତୀ କ୍ଷେତ୍ର । ପଞ୍ଚମ-ଷଷ୍ଠ ଶତାବ୍ଦୀରେ ଏଇ 'ଡାହଲ' ଗୁପ୍ତ ଶାସକଙ୍କର ସାମନ୍ତ ପରିବ୍ରାଜକ ମହାରାଜାମାନଙ୍କ ଅଧୀନରେ ଥିଲା ।

ପ୍ରଥମ ଲକ୍ଷ୍ମଣରାଜ ଖ୍ରୀ. ୮୪୧-୪୨ରେ କଲଚୁରି ସିଂହାସନାଧିରୁଢ଼ ଥିବା ଜଣାପଡୁଛି ଜବଲପୁର ଜିଲ୍ଲାର 'ମୁରଓ୍ୱାଡ଼ା'ସ୍ଥିତ କାରୀତଲାଇ ଶିଳାଲେଖରୁ । ଆମେ ଜାଣିଛେ ଏହି ସମୟ ପୂର୍ବରୁ ଅଷ୍ଟମ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଉତ୍ତର ଭାରତରେ ପ୍ରଭୁତ୍ୱ ବିସ୍ତାର ପାଇଁ ଗୁର୍ଜରପ୍ରତିହାର ବଂଶ ଏବଂ ପୂର୍ବ ଭାରତରେ ଶାସନ କରୁଥିବା ପାଳବଂଶ ମଧ୍ୟରେ ପ୍ରବଳ ଲଢ଼େଇ ଚାଲିଥିଲା । କିନ୍ତୁ ଦକ୍ଷିଣର ରାଷ୍ଟ୍ରକୂଟ ବଂଶର ତୃତୀୟ ଗୋବିନ୍ଦ ସେମାନଙ୍କ ଆଶାକୁ ଧୂଳିସାତ୍ କରି ଦେଇଥିଲେ । ଏଣେ ତୃତୀୟ ଗୋବିନ୍ଦ ପ୍ରତିହାର ରାଜା ନାଗଭଟ୍ଟ ତଥା ଚନ୍ଦ୍ରଗୁପ୍ତଙ୍କୁ ପରାଜିତ କରି ହିମାଳୟର 'ତରାଇ' ଅଞ୍ଚଳରେ ପହଞ୍ଚିବା ବେଳକୁ ସେଠାରେ ପାଳବଂଶ ରାଜା ଏବଂ କନୌଜରାଜା ସ୍ୱତଃ ଆତ୍ମସମର୍ପଣ କରିଥିଲେ ।

ଏହାପରେ ପୁନଃ ସେ ନର୍ମଦାଦିଗକୁ ଫେରିବା ଆରମ୍ଭ କରି ମାଳବ, କୋଶଳ, କଳିଙ୍ଗ ପ୍ରଭୃତି ରାଜାଙ୍କୁ ଜୟକରି ନିଜ ସେବକମାନଙ୍କୁ ଶାସନ କରିବା ପାଇଁ ଦେଇଥିଲେ ।

### କଲଚୁରି ରାଜାନୁକ୍ରମ

ବାପରାଜଦେବ
|
ପ୍ରଥମ ଶଙ୍କରଗଣ
|
ପ୍ରଥମ ଲକ୍ଷ୍ମଣରାଜ (ଖ୍ରୀ.୮୪୧-୪୨)
|
ପ୍ରଥମ କୋକଲ୍ଲ
|
ଦ୍ୱିତୀୟ ଶଙ୍କରଗଣ (ଖ୍ରୀ. ୮୯୦-୯୧୦)
|
ବାଳହର୍ଷ — ୧ମ ଯୁବରାଜଦେବ (ଖ୍ରୀ. ୯୧୫-୯୪୫)
|
୨ୟ ଲକ୍ଷ୍ମଣରାଜ
|
୩ୟ ଶଙ୍କରଗଣ — ୨ୟ ଯୁବରାଜଦେବ (ଖ୍ରୀ. ୯୮୦-୯୯୦)
|
୨ୟ କୋକଲ୍ଲ
|
ଗାଙ୍ଗେୟଦେବ (ଖ୍ରୀ. ୧୦୧୫-୧୦୪୧)

ଏହାପରେ କର୍ଣ୍ଣ, ଯଶକର୍ଣ୍ଣ, ଗୟାକର୍ଣ୍ଣ, ଜୟସିଂହ, ବିଜୟସିଂହ, ତ୍ରୈଲୋକ୍ୟମୟ ପ୍ରଭୃତି ଶାସନ କରିଥିଲେ ।

ବିନ୍ଧ୍ୟାଚଳର ପୃଷ୍ଠଭାଗରେ ଥିବା ବିଭିନ୍ନ ଜନପଦର ସୂଚୀରୁ 'କୋଶଳ ଜନପଦ'ର ନାମ ପୌରାଣିକ ପରମ୍ପରାରେ ଆମକୁ ଉପଲବ୍ଧି ହୁଏ । ଉତ୍ତର ଭାରତରେ ମଧ୍ୟ ଏକ କୋଶଳ ଜନପଦ ଥିଲା । ଯାହାର ରାଜଧାନୀ ଥିଲା ଶ୍ରାବସ୍ତୀ ଏବଂ ଅଯୋଧ୍ୟା । ଏହି କୋଶଳ ପରବର୍ତ୍ତୀ କାଳରେ ଉତ୍ତର କୋଶଳ ଏବଂ ବିନ୍ଧ୍ୟର ଦକ୍ଷିଣପଟରେ ଥିବା କୋଶଳକୁ 'ଦକ୍ଷିଣ କୋଶଳ' କୁହା ଯାଉଥିଲା । ଯେଥିରେ ମଧ୍ୟପ୍ରଦେଶର ରାୟପୁର, ଓଡ଼ିଶାର କଳାହାଣ୍ଡି, ବଲାଙ୍ଗିର, ସମ୍ବଲପୁର କ୍ଷେତ୍ର ରହିଥିଲା । ଏହି ଦକ୍ଷିଣ କୋଶଳ ରାଜ୍ୟର ଦକ୍ଷିଣକୁ ମହାକନ୍ତାର, ପୂର୍ବକୁ କଳିଙ୍ଗ, ଧୌଳୀ, ଓଡ୍ର, ଉତ୍କଳ କ୍ଷେତ୍ର ରହିଥିଲା । (ଦକ୍ଷିଣ କୋସଲ କ୍ଷେତ୍ରକା ଭୌଗଲିକ ଇତିହାସ, ଲେ-ଲକ୍ଷ୍ମୀଶଙ୍କର ନିଗମ, ଉଦ୍ଧୃତ-ଦକ୍ଷିଣକୋସଲ- କଲଚୁରି, ପୃ-୧୦୩) ।

ଦ୍ୱିତୀୟ ଶତାବ୍ଦୀରେ ଇଜିପ୍ଟର ବିଶିଷ୍ଟ ଭୂବିଜ୍ଞାନୀ କ୍ଲାଉଡ଼ିଅସ୍ ଟଲେମି (Cloudious Tolemy) ଏକ ପୃଥିବୀ ମାନଚିତ୍ର ପ୍ରସ୍ତୁତ କରିଥିଲେ । ସେଥିରେ ଭାରତର ସମୁଦ୍ର ଉପକୂଳର ବନ୍ଦରମାନଙ୍କର ବର୍ଣ୍ଣନା ଦେଇଛନ୍ତି । ସେଥିରେ କଳିଙ୍ଗ ରାଜ୍ୟର ଅବସ୍ଥିତି ଏବଂ ସେଠାକାର ବନ୍ଦରଗୁଡ଼ିକର ବାଣିଜ୍ୟପୋତ ସବୁ କିପରି ଚଳାଚଳ କରୁଥିଲା ତାର ବିବରଣୀ ସ୍ଥାନିତ ହୋଇଛି । ତଦନୁଯାୟୀ ଦକ୍ଷିଣପୂର୍ବ ଉପକୂଳରେ 'କୋସବା'ଠାରୁ ପାଲୁର ମଧ୍ୟରେ ୧୪ଟି ବ୍ୟବହାର ଉପଯୋଗୀ ବନ୍ଦର ରହିଥିଲା । ସେଗୁଡ଼ିକ ହେଲା -

୧- କୋସବା, ୨- ଆଡ଼ାମସ୍, ୩- କେବଲା, ୪- ଦୋସରନ୍, ୫- ମିନାଶ୍ରର, ୬- ମପୋର, ୭- ତାଇଣ୍ଡିସ୍, ୮- ସିପ୍ପରା, ୯- କୋଟବାର, ୧୦- ମାନଦା, ୧୧- କନ୍ନାଗର, ୧୨- କଟିକର୍ଦ୍ଦମ, ୧୩- ନନିଚେନା, ୧୪- ପାଲୁର ।

ମେଦିନୀପୁର ଜିଲ୍ଲାର ଦକ୍ଷିଣପାର୍ଶ୍ୱ ଅଞ୍ଚଳର ନାମ 'କୋସବା' ବୋଲି ବହୁ ପୁରାତତ୍ତ୍ୱବିଦ୍ ନିର୍ଦ୍ଦିଷ୍ଟ କରିଛନ୍ତି । ତେବେ ଉପରୋକ୍ତ ବନ୍ଦରଗୁଡ଼ିକ ମେଦିନୀପୁର ଠାରୁ ଗଂଜାମ ଜିଲ୍ଲାର ପାଲୁର ମଧ୍ୟରେ ଥିବା ବେଳାଭୂମିରେ ଅବସ୍ଥିତ ଥିଲା । ଏଥିମଧ୍ୟରୁ ପାଲୁର୍ ବନ୍ଦର ନାମଟି ଅବିକଳ ରହିଥିବା ବେଳେ ଅନ୍ୟ ନାମଗୁଡ଼ିକ ବଦଳି ଯାଇଛି ।

କଳିଙ୍ଗବାସୀ ପୋତମାନ ନିଜେ ନିର୍ମାଣ କରୁଥିଲେ । ସେଥିରେ ଦ୍ୱୀପାନ୍ତର ଯାଇ ମଣିମୁକ୍ତା ଧରି ନିଜ ଦେଶକୁ ଫେରୁଥିଲେ । ସେଥିପାଇଁ ସୁବିଧାଜନକ ବେଳାଭୂମି ଚୟନ କରି ବନ୍ଦର ପ୍ରତିଷ୍ଠା କରିଥିଲେ । କଳିଙ୍ଗରେ ନିଶ୍ଚିତ ବହୁ ବନ୍ଦର ଥିବ । କିନ୍ତୁ ଜାଣିବା ସମ୍ଭବ ହେଉନାହିଁ ମାତ୍ର ୧୪ଟି ବ୍ୟତୀତ ।

ଉପରୋକ୍ତ ବନ୍ଦର ସମ୍ବନ୍ଧରେ ୭୯ ବର୍ଷ ତଳେ ସ୍ୱର୍ଗତ ବିରୂପାକ୍ଷ କର 'ଉତ୍କଳସାହିତ୍ୟ'ରେ ଏକ ପ୍ରବନ୍ଧ ଲେଖିଥିଲେ । ଯାହା 'ସମାଜ'ରେ ତା୧.୧.୨୦୦୦ରିଖରେ ଅବିକଳ ପ୍ରକାଶିତ ହୋଇଛି । ସେଥିରେ ସେ ତୋଲେମି

(Ptolemy) ବୋଲି ଲେଖକଙ୍କ ପରିଚୟ ଦେଇ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବୋଲି ତାଙ୍କର ସମୟ ଦେଇଛନ୍ତି । ତାଙ୍କ ବିବରଣୀ ଅନୁସାରେ-

୧. ପକୁରା- Pakoura - ଗଞ୍ଜାମ ସନ୍ନିକଟସ୍ଥ ନଗର ।
୨. ନନିଗେନ - Nanigaina - ପୁରୀ ।
୩. କତିକର୍ଦ୍ଦମ - Katikardama - କଟକ ।
୪. କୋଣଗର - Konagara - କୋଣାର୍କ ।
୫. କୋଶମ୍ବ - Kosamba - ବାଲେଶ୍ୱର ।
୬. ପଲୁର - Paloura - ଜଳେଶ୍ୱର ।
୭. ମନଦ - Manada - ମହାନଦୀ ।
୮. ତିନ୍ଦିସ - Tyndis - ବ୍ରାହ୍ମଣୀ ।
୯. ଦୋସରମ - Dosarama - ବୈତରଣୀ ।
୧୦. ଅଦମସ୍ - Adamas - ସୁବର୍ଣ୍ଣରେଖା ।

ସେ ପୁଣି ସ୍ପଷ୍ଟ କରି ଦେଇଛନ୍ତି, ''ପୁରୀ ଏବଂ କୋଣାର୍କ'' ସମ୍ବନ୍ଧରେ କାହାରି କାହାରି ସନ୍ଦେହ ହୋଇପାରେ, କିନ୍ତୁ ଏଭଳି ସନ୍ଦେହ ସଂପୂର୍ଣ୍ଣ ଅମୂଳକ । ଆମ୍ଭମାନଙ୍କର ଦୃଢ଼ବିଶ୍ୱାସ ବାଲିଚଢ଼ା ହେତୁରୁ କାଳକ୍ରମେ ପୁରୀ ଏବଂ କୋଣାର୍କ ଉପକୂଳ ଜାହାଜ - ଗମନାଗମନ ପକ୍ଷରେ ଅକର୍ମଣ୍ୟ ହୋଇ ପଡ଼ିଛି ।

**ଉପସଂହାର :**

ନୌବାଣିଜ୍ୟରେ ସମୃଦ୍ଧ ଥିବା କଳିଙ୍ଗ/ଉତ୍କଳ ଜାତିର ଠାକୁର ମଧ ଖୁବ୍ ସମୃଦ୍ଧ ଥିଲେ । ତାହାକୁ ଲୁଣ୍ଠନ କରିବା ପାଇଁ କେହିଜଣେ ଆରବ୍ୟ ହିଁ ସେତେବେଳେ ଆସିଥିବେ, ଯାହାଙ୍କୁ ମାଦଳାପାଂଜିକାର ମୋଗଲ ବୋଲି କହିଛନ୍ତି ଏବଂ ସେ ନାରକୀୟ ଭାବେ ହତ୍ୟା ଓ ଦମନଲୀଳା ଚଳାଇଥିବାରୁ ରକ୍ତରଂଜିତ ସେଇ ଲୁଣ୍ଠନକାରୀକୁ 'ରକ୍ତବାହୁ' ଭାବେ ବର୍ଣ୍ଣନା କରାଯାଇଛି ମନେହୁଏ । ରକ୍ତବାହୁର ପ୍ରକୃତନାମ ତତ୍‌କାଳୀନ ପରିସ୍ଥିତି ଦୃଷ୍ଟିରୁ କେହି ସେପରି ଗୁରୁତ୍ୱ ଦେଇ ବୁଝିବାକୁ ଚେଷ୍ଟା କରି ନଥିବେ । କାରଣ ''ଓଡ୍ରଦେଶ ରାଜବଂଶାବଳୀ'' ବର୍ଣ୍ଣନା ଅନୁଯାୟୀ ରକ୍ତବାହୁ ସମୁଦ୍ର ବାଟେ ଆସି ସ୍ୱର୍ଗଦ୍ୱାର ନିକଟରେ ପହଞ୍ଚି ମନ୍ଦିରକୁ ଆସି ଦେଖିଲା ବେଳକୁ ଠାକୁର ନାହାଁନ୍ତି । ସେ କ୍ରୋଧରେ ପୁରୁଷୋତ୍ତମ କ୍ଷେତ୍ରକୁ ନଷ୍ଟଭ୍ରଷ୍ଟ କରିଦେଇ ଥିବାର ବର୍ଣ୍ଣନା ରହିଛି । ଯେପରିକି ବ୍ରାହ୍ମଣ ଏବଂ ସେବାୟତମାନେ କ୍ଷେତ୍ରଛାଡ଼ି ପ୍ରାଣବିକଳରେ ଟାଳିଯିବାକୁ ବାଧ ହୋଇଥିଲେ । ଏପରି ଅବସ୍ଥାରେ 'ରକ୍ତବାହୁ' ବିଷୟରେ ଜାଣିବାକୁ ଅବସର କେଉଁଠି ଥିଲା ?

ଏବଂ ଏହା ଯେତେଦୂର ମନେହୁଏ ଶୋଭନ ଦେବଙ୍କ ସମୟ ଅର୍ଥାତ୍ ତାଙ୍କର ୨ୟ ଅଙ୍କ ଖ୍ରୀ. ୩୧୯ରୁ ଖ୍ରୀ. ୩୨୩ ମଧ୍ୟରେ ହୋଇଥିବ । ପ୍ରଥମ ଶତାବ୍ଦୀରେ ସେମାନେ ଭାରତରେ ଆଧିପତ୍ୟ ବିସ୍ତାର କରି ତୃତୀୟ ଶତାବ୍ଦୀ ବେଳକୁ ନୌଯାତ୍ରାରେ ଦକ୍ଷ

ହୋଇଥିବେ । ୪ର୍ଥ ଶତାବ୍ଦୀର ପ୍ରଥମାର୍ଦ୍ଧରେ (ଖ୍ରୀ. ୩୧୯ - ଖ୍ରୀ. ୩୨୩) ଜଳପଥରେ ଲୁଣ୍ଠନ ଆରମ୍ଭ କରିଥିବେ । ସେତେବେଳକୁ ବର୍ତ୍ତମାନର ମନ୍ଦିର ନଥିବ କିମ୍ୱା ମେଘନାଦ ପ୍ରାଚୀର ନଥିବ କିମ୍ୱା ଲୁଣ୍ଠନକାରୀଙ୍କୁ ପ୍ରତିହତ କଲାପରି ସୁବନ୍ଦୋବସ୍ତ ନଥିବା । ତେଣୁ ରକ୍ତବାହୁ ନିର୍ବିଘ୍ନରେ ପ୍ରଭୁଙ୍କୁ ନେଇ ନପାରିଲେ ମଧ୍ୟ ଧନ-ରତ୍ନ ନେଇ ଯାଇଥିବ ।

ଶୁଭାକର ଦେବଙ୍କ ସମୟ ଅର୍ଥାତ୍ ୭୮୦ଖ୍ରୀ.ରୁ ୮୦୦ ଖ୍ରୀ. ହୋଇଥିଲେ ସାମାଜିକ ବିକାଶ ଦୃଷ୍ଟିରୁ ରକ୍ତବାହୁର ପରିଚିତି ସଠିକ୍ ମିଳି ପାରିଥାନ୍ତା, କିନ୍ତୁ କେତେକ ଐତିହାସିକ ଶୁଭାକର ଦେବଙ୍କୁ ଗ୍ରହଣ ନକରି ଉପରୋକ୍ତ ସମୟକୁ ଗ୍ରହଣ କରୁଛନ୍ତି । ଏବଂ ମାଦଳା ବର୍ଣ୍ଣିତ ଶୋଭନା ଦେବଙ୍କୁ ଗ୍ରହଣ କରୁଛନ୍ତି । ଅର୍ଥାତ୍ ସେମାନଙ୍କ ମତରେ ରକ୍ତବାହୁ ଆକ୍ରମଣ କରିଥିଲା ଶୋଭନା ଦେବଙ୍କ ସମୟରେ ପୁଣି ୭୮୦ଖ୍ରୀ. ରୁ ୮୦୦ଖ୍ରୀ. ମଧ୍ୟରେ । ଏବେ ଆମ ମନରେ ପ୍ରଶ୍ନ ଉଠିପାରେ ଯେ ଶୋଭନା ଦେବ ନାଁ ଶୁଭକର ଦେବ ? ଖ୍ରୀ. ୩୧୮ - ୩୨୩ ନାଁ ୭୮୦ ଖ୍ରୀ.ରୁ ୮୦୦ ଖ୍ରୀ. ? ରକ୍ତବାହୁ ମୋଗଲ ନା ଯବନ ? ଅଥବା ଆରବ୍ୟ ନା ବୌଦ୍ଧ ? ରକ୍ତବାହୁ ବାସ୍ତବନାମ ନା ସାଙ୍କେତିକ ।

ଏହି ପ୍ରସଙ୍ଗରେ ସ୍ୱର୍ଗତ ବିରୁପାକ୍ଷ କରଙ୍କର ମତ (ଉତ୍କଳ ସାହିତ୍ୟ-୧୯୨୧ ଖ୍ରୀଷ୍ଟାବ୍ଦ) ଉଲ୍ଲେଖ କରିବା ଉଚିତ ମନେ କରୁଛୁ । ରକ୍ତବାହୁ ଅର୍ଣ୍ଣବ ପୋତରେ ଆସି କଳିଙ୍ଗ ଜୟ କରିଥିବା ପ୍ରସଂଗକୁ ସେ ବିଚାର କରି କହିଛନ୍ତି - ବୋଧହୁଏ ଏହି ସମୟରେ ଗ୍ରୀସ, ରୋମ, ଚୀନ, ଇଜିପଟ୍, ପାରସ୍ୟ ଓ ସିଂହଳ ପ୍ରଭୃତି ଦେଶରୁ ବାଣିଜ୍ୟ ଉଦ୍ଦେଶ୍ୟରେ ଆସିଥିବା ନାବିକମାନେ ଯବନ ନାମରେ ଆଖ୍ୟାତ ହୋଇ କଳିଙ୍ଗ ଇତିହାସରେ ସ୍ଥାନ ପାଇଛନ୍ତି ଏବଂ ସେମାନଙ୍କ ମଧ୍ୟରୁ କେହି କେହି କଳିଙ୍ଗ ଉପକୂଳରେ ଉପନିବେଶ ସ୍ଥାପନ କରିଥିବା ହେତୁରୁ ପରବର୍ତ୍ତୀ ଦେଶୀୟ ଲେଖକ ସେମାନଙ୍କୁ କିଛିକାଳ ପାଇଁ ଏ ଦେଶର ଶାସନକର୍ତ୍ତା ବୋଲି କହି ଅଛନ୍ତି । ଦେଶୀୟ ଇତିହାସ ଲିଖିତ ଯବନ ଶବ୍ଦର ଅର୍ଥ ମୁସଲମାନ ନୁହେଁ । ବିଦେଶୀୟ ବା ଅଭାରତୀୟ । (ସମାଜ-୧.୧.୨୦୦୦) । ଏହି ପ୍ରସଙ୍ଗରେ କୋଣାର୍କର ସୂର୍ଯ୍ୟପୂଜା ଶାମ୍ୱ ପୁରାଣ ମତରେ କିପରି ଶକଦ୍ୱୀପ ବା ପାରସ୍ୟର ପୁରୋହିତଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା ତାହା ଉଲ୍ଲେଖ କରିଛନ୍ତି । ପରେ ଓଡ଼ିଶାର ନରପତିଙ୍କ ଦ୍ୱାର ସେଠାରେ ମନ୍ଦିର ନିର୍ମାଣ ହୋଇଥିଲା । ତେଣୁ ଆମେ ଏକ ବିନ୍ଦୁରେ ପହଞ୍ଚିବା ଯେ କୌଣସି ଜଣେ ଅଭାରତୀୟ ହିଁ ଶୋଭନା ଦେବଙ୍କ ୨ୟ ଅଙ୍କ (୩୧୯ଖ୍ରୀ. ରୁ ୩୨୩ ଖ୍ରୀ.) ରେ ପୁରୀ ମନ୍ଦିର ଆକ୍ରମଣ କରି ଲୁଣ୍ଠନ କରିଥିଲେ । ଯେ କି ପୁନଃ ଅର୍ଣ୍ଣବ ପୋତରେ ହିଁ ଫେରି ଯାଇଥିଲେ, ଯାହାଙ୍କୁ ପ୍ରତିରୋଧ କରିବା ସମ୍ଭବ ହୋଇ ନଥିଲା । ଯେହେତୁ ରାଜଧାନୀ ପୁରୀରେ ନଥିଲା । ତେଣେ ରାଜାଙ୍କୁ ଖବର ଦେବାକୁ ତତ୍କାଳୀନ ବ୍ୟବସ୍ଥା ଅନୁଯାୟୀ ସଂମ୍ଭବ ହୋଇ ନଥିବ । ଯଦି ବି ଖବର ଦିଆ ହୋଇଥିବ ସେତେବେଳକୁ ରକ୍ତବାହୁ ଲୁଣ୍ଠନ କରି ଫେରିଯାଇ ସାରିଥିବ । ରକ୍ତବାହୁର ପୈଶାଚିକ ଆକ୍ରମଣରେ ଲୁଣ୍ଠିତ ଦ୍ରବ୍ୟର ସଠିକ୍ ବିବରଣୀ ଜାଣିବାକୁ କାହାରି ସାହସ ନଥିବ । ଏ ଜାତିର ବର୍ଷ ବର୍ଷର ସଂଚିତ ଧନ-ରତ୍ନ ଅନାୟାସରେ ପରହସ୍ତଗତ ହୋଇଥିବ ।

-●-




## ବଙ୍ଗ ସୁଲତାନ ଇଲିୟସ ଶାହାଙ୍କ ଶ୍ରୀମନ୍ଦିର ଲୁଣ୍ଠନ

ଭାନୁଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ୩ୟ ନରସିଂହ ଦେବ ୧୩୨୮ ଖ୍ରୀ.ରେ ସିଂହାସନ ଆରୋହଣ କଲେ । ତାଙ୍କ ରାଜତ୍ୱ କାଳରେ ବାଲେଶ୍ୱର ରାୟ ବଣିଆ ଦୁର୍ଗର ସାମରିକ ଶକ୍ତି ଦୁର୍ବଳ ହୋଇ ପଡ଼ିଥିଲା । ସେଠାର କେତେଜଣ ସେନାପତି ରାଜଦ୍ରୋହରେ ଲିପ୍ତହୋଇ ମୁସଲମାନଙ୍କ ସଙ୍ଗେ ଗୁପ୍ତ ମନ୍ତ୍ରଣା କରିଥିଲେ । ନରସିଂହ ଦେବ ବହୁ ବିଳମ୍ବରେ ଏହା ଜାଣି ତାଙ୍କ ରାଣୀମାନଙ୍କର ନିରାପତ୍ତା ପାଇଁ ଦକ୍ଷିଣର ସିଂହାଚଳ ନିକଟ ଗିରିଦୁର୍ଗରେ ରଖାଇ ମୁସଲମାନ ଆକ୍ରମଣର ପ୍ରତିରୋଧ କରିବାକୁ ଚେଷ୍ଟା କରିଥିଲେ ।

କିନ୍ତୁ ବଙ୍ଗର ସୁଲତାନ ଇଲିୟସ ଶାହା ଉକ୍ତ ରାଜଦ୍ରୋହୀ ସେନାପତିଙ୍କୁ ଉତ୍କୋଚ ଦେଇ ହସ୍ତଗତ କରି ସାରିଥିଲେ । ତେଣୁ ଅପ୍ରତ୍ୟାଶିତ ଭାବେ ପୁରୀ ଜଗନ୍ନାଥ ମନ୍ଦିର ଆକ୍ରମଣ ପାଇଁ ଅଭିଯାନ କଲେ । ମୁସଲମାନ ମାନଙ୍କର ଉକ୍ତ ଅପ୍ରତ୍ୟାଶିତ ଆକ୍ରମଣ ପୁରୀର ଜନସାଧାରଣଙ୍କୁ ତଟସ୍ଥ କରିଦେଲା । ପ୍ରାଣ ବିକଳରେ ଆତ୍ମରକ୍ଷା ପାଇଁ ଅନେକେ ପୁରୀ ଛାଡ଼ିଦେଲେ । ଏହି ପଳାୟନ ବେଳର ଦୃଶ୍ୟ ବଡ଼ ନିଷ୍ଠୁର । ପଶ୍ଚାଦ୍‌ଭାଗରୁ ପଳାୟନ କରୁଥିବା ଜନସାଧାରଣଙ୍କ ଉପରେ ମୁସଲମାନ ସୈନ୍ୟମାନେ ଆକ୍ରମଣ କରି ନିରସ୍ତ୍ର ନଗରବାସୀଙ୍କୁ ହତ୍ୟା କଲେ । କୁଳବଧୂମାନଙ୍କୁ ଅପହରଣ କରିନେଲେ । ଶେଷରେ ଶ୍ରୀମନ୍ଦିର ଭଣ୍ଡାରରୁ ଧନରତ୍ନ ଲୁଣ୍ଠନ କରିନେଲେ ।

ସେତେବେଳେ ରାଜା ଦକ୍ଷିଣର ଗିରିଦୁର୍ଗ ଠାରେ ଦେହରକ୍ଷୀମାନଙ୍କ ସହ ଅବସ୍ଥାନ କରୁଥାନ୍ତି । ବହୁ ବିଳମ୍ବରେ ଏ ଅତ୍ୟାଚାର ସମ୍ବାଦ ରାଜା ପାଇଥିଲେ । କଳିଙ୍ଗରୁ ବହୁ ସୈନ୍ୟଙ୍କ ସହ ସେ ରାଜଧାନୀକୁ ଫେରିବା ବେଳକୁ ମୁସଲମାନ ସୈନ୍ୟମାନେ ଧନରତ୍ନ ସହ ନିଜ ଦେଶକୁ ଯାଇ ସାରିଥିଲେ ।

ନିଜ ମନ୍ତ୍ରୀମାନଙ୍କ ପରାମର୍ଶରେ ପୁନଃ ଶ୍ରୀମନ୍ଦିରେ ସଂସ୍କାର କରାଇଥିଲେ । ଏହାପରେ ନରସିଂହ ଦେବ (୩ୟ) ରାଜ୍ୟରେ ମୁସଲମାନ ସୁଲତାନଙ୍କ ପ୍ରତିରୋଧ ବ୍ୟବସ୍ଥା ସୁଦୃଢ଼ କରିଥିଲେ । ନିଜର ଦୁର୍ଗଗୁଡ଼ିକୁ ଖୁବ୍ ଶକ୍ତିଶାଳୀ କରିବାକୁ ପ୍ରଚେଷ୍ଟା କରିଥିଲେ । ବଙ୍ଗଳାର ନବାବ ଇଲିୟସ ଶାହାଙ୍କ ରାଜତ୍ୱ କାଳ ଥିଲା ୧୩୩୯ ଖ୍ରୀଷ୍ଟାବ୍ଦରୁ ୧୩୭୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ । ସେ ପ୍ରଥମେ ନେପାଳ ଆକ୍ରମଣ କରି କାଠମାଣ୍ଡୁର ପ୍ରସିଦ୍ଧ 'ସ୍ୱୟମ୍ଭୂ ମନ୍ଦିର' ଧ୍ୱଂସ କରିଥିବାର ଜଣାଯାଏ । ଓଡ଼ିଶାରେ ଇଲିୟସଙ୍କର ଆକ୍ରମଣ ଥିଲା ସୁଚିନ୍ତିତ ଏବଂ ସୁସଂଯୋଜିତ । ଓଡ଼ିଶାର ବହୁ ମନ୍ଦିର ସେ ଧ୍ୱଂସ କରିଥିଲେ । ଯାହାର ସଠିକ ବିବରଣୀ ଯେ ପର୍ଯ୍ୟନ୍ତ ସଂକଳିତ ହୋଇ ପାରିନାହିଁ । ଆଶ୍ଚର୍ଯ୍ୟର କଥା ଶ୍ରୀମନ୍ଦିର ଆକ୍ରମଣ କରି ବହୁ ଧନରତ୍ନ ଲୁଣ୍ଠନ କରିଥିଲେ ମଧ୍ୟ ଶ୍ରୀମନ୍ଦିର ଅକ୍ଷୁର୍ଣ୍ଣ ରହି ଯାଇଥିଲା ।

ତୃତୀୟ ନରସିଂହ ଦେବଙ୍କ ସିଂହାସନ ଆରୋହଣର ୧୧ ବର୍ଷ ପରେ ଇଲିୟସ ଶାହା ବଙ୍ଗର ସୁଲତାନ ହୋଇଥିଲେ । ଆକ୍ରମଣର ସଠିକ କାଳ ନିରୂପିତ ହୋଇ ପାରିନଥିଲେ ମଧ୍ୟ ଏହି ଆକ୍ରମଣ ସମ୍ଭବତଃ ୧୩୪୦ ପରେ ହିଁ ହୋଇଥିଲା । ସେତେବେଳକୁ ଦିଲ୍ଲୀର ସୁଲତାନ ଥିଲେ ମହମ୍ମଦ ତୋଗଲକ ସେ ୧୩୨୫ ଖ୍ରୀଷ୍ଟାବ୍ଦରେ ଗିୟାସୁଦ୍ଦୀନଙ୍କୁ ହତ୍ୟାକରି ସିଂହାସନରେ ବସିଥିଲେ । ଶାସନ କାଳ ଥିଲା ୨୫ ବର୍ଷ । ତେଣୁ ୧୩୫୦ ଖ୍ରୀଷ୍ଟାବ୍ଦରେ ଫିରୋଜ ଶାହା ତୋଗଲକ ସିଂହାସନରେ ବସିଥିଲେ । ଫିରୋଜ ଶାହା ଥରେ ଶ୍ରୀମନ୍ଦିର ଲୁଣ୍ଠନ କରିଥିଲେ ୧୩୫୮ ଖ୍ରୀଷ୍ଟାବ୍ଦରେ । ତେଣୁ ଆମ୍ଭର ମନେ ହୁଏ ଫିରୋଜ ଶାହାଙ୍କ ଆକ୍ରମଣ ପୂର୍ବରୁ ଇଲିୟସ ଶାହା ୧୩୪୦ ଖ୍ରୀଷ୍ଟାବ୍ଦ ପରେ ଏବଂ ୧୩୫୨ ଖ୍ରୀ. ପୂର୍ବରୁ ଶ୍ରୀମନ୍ଦିର ଲୁଣ୍ଠନ କରିଥିଲେ । କାରଣ ୧୩୫୨ ଖ୍ରୀଷ୍ଟାବ୍ଦ ବେଳକୁ ଓଡ଼ିଶାରେ ଗଙ୍ଗବଂଶର ରାଜା ଭାନୁଦେବ ତୃତୀୟ ବା ବୀରଭାନୁଦେବ ଶାସନ କରୁଥିଲେ ।






## ଫିରୋଜ ଶାହା ତୋଗଲକଙ୍କ ଶ୍ରୀମନ୍ଦିର ଲୁଣ୍ଠନ

ଗଙ୍ଗବଂଶର ରାଜା ମତଭାନୁ ଦେବ ବା ଭାନୁ ଦେବ ତୃତୀୟ ବା ବୀରଭାନୁ ଦେବଙ୍କ ସମୟରେ ଫିରୋଜ ଶାହା ତୋଗଲକ ଶ୍ରୀମନ୍ଦିର ଆକ୍ରମଣ କରି ଲୁଣ୍ଠନ କରିଥିଲେ । ବୀରଭାନୁ ଦେବଙ୍କର ଶାସନ କାଳ ଥିଲା ୧୩୫୨ ଖ୍ରୀଷ୍ଟାବ୍ଦରୁ ୧୩୭୮ ଖ୍ରୀଷ୍ଟାବ୍ଦ । ବର୍ତ୍ତମାନ ପରିଦୃଶ୍ୟମାନ ଶ୍ରୀମନ୍ଦିର ନିର୍ମାଣର ହାରାହାରି ୧୫୦ ବର୍ଷ ପରେ ଫିରୋଜ ଶାହାଙ୍କ ଶ୍ରୀମନ୍ଦିର ଆକ୍ରମଣ ଓ ଲୁଣ୍ଠନ ହୋଇଥିଲା ।

ଅନେକ ଐତିହାସିକ ୧୩୫୮ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ବାଦଶାହା ଫିରୋଜ ତୋଗଲକ ଶ୍ରୀମନ୍ଦିର ଆକ୍ରମଣ କରି ଲୁଣ୍ଠନ କରିଥିଲେ ବୋଲି ମତ ଦିଅନ୍ତି ।

ମାତ୍ର କେତେକ ଐତିହାସିକ ଯାକୁ ସ୍ୱୀକାର କରିନାହାଁନ୍ତି । ଫିରୋଜ ତୋଗଲକ (୧୩୫୧-୮୮) ବଙ୍ଗ ବିଦ୍ରୋହକୁ ଦମନ କରିବାରେ ଅସଫଳ ହେବା ପରେ ୧୩୬୦ ଖ୍ରୀଷ୍ଟାବ୍ଦରେ ଦୁଇଟି ହିନ୍ଦୁରାଜ୍ୟ ଉପରେ ଆକ୍ରମଣ କରିଥିଲେ । ପ୍ରଥମ ରାଜ୍ୟ ହେଲା ଓଡ଼ିଶା, ଦ୍ୱିତୀୟ ରାଜ୍ୟ ହେଲା 'ବୀରଭୂମି' ବୋଲି ଅଯୋଧ୍ୟା ପ୍ରସାଦ ଗୋୟଲୀୟ ତାଙ୍କର 'ମୁଗଲ ବାଦଶାହୋଁ କୀ କହାନୀ ଉନକୀ ଜବାନୀ' (ପୃ-୨୦୦) ପୁସ୍ତକରେ ଉଲ୍ଲେଖ କରିଛନ୍ତି । ସେ ଆକ୍ରମଣ ସମୟ ୧୩୫୮ ଖ୍ରୀ. ପରିବର୍ତ୍ତେ ୧୩୬୦ ଖ୍ରୀ. କାହିଁକି ଉଲ୍ଲେଖ କରିଛନ୍ତି ତା'ର କାରଣ ଦେଇ ନାହାଁନ୍ତି । କୋରାନ ଓ କାଫିର ବହିର ଲେଖକ ଅରବିନ୍ଦ ଘୋଷ ଉକ୍ତ ୧୩୬୦ ଖ୍ରୀଷ୍ଟାବ୍ଦକୁ ଗ୍ରହଣ କରିଛନ୍ତି ।

**ସିଂହାସନ ଆରୋହଣ -** ମହମ୍ମଦ ତୋଗଲକଙ୍କ ଦେହାନ୍ତ ପରେ କକା ପୁଅ ଭାଇ ଫିରୋଜ ତୋଗଲକ ସିଂହାସନରେ ବସିଥିଲେ । ତାଙ୍କ ପିତାଙ୍କ ନାମ ଥିଲା 'ରଜବ', ମାଙ୍କ ନାମ 'ନୈଲା' ବା ନୀଳା ବୀବୀ ଥିଲା । ରଜବ ଥିଲେ ଗିୟାସୁଦ୍ଦୀନ ତୋଗଲକଙ୍କର ଭାଇ । ନୈଲା ଥିଲେ ଅବୂମହରଙ୍କ ସାମନ୍ତ ଭଟ୍ଟୀବଂଶୀୟ ରାଜପୁତ ରଣମଲ୍ଲଙ୍କ ପୁତ୍ରୀ । (ତାରିଖେ - ଫିରୋଜ ଶାହୀ)

ଫିରୋଜ ହିନ୍ଦୁ ମା' ଗର୍ଭରୁ ଜନ୍ମ ହୋଇଥିଲେ ମଧ ଧର୍ମାନ୍ଧ ମୁସଲମାନ ଥିଲେ । ମୁସଲମାନ ଧର୍ମାଧିକାରୀମାନଙ୍କର ସେ ଥିଲେ କାଠ ପିତୁଳା । ପୂର୍ବରୁ ମୁସଲମାନ ଶାସନର ଅଭ୍ୟୁଦୟ ପ୍ରସଙ୍ଗରେ ଆମେ ଉଲ୍ଲେଖ କରିସାରିଛୁ ୟାଙ୍କରି ଅମଳରେ ଦେଶରେ କ୍ରୀତଦାସ ସଂଖ୍ୟା ଥିଲା ଏକଲକ୍ଷ ଅଶୀହଜାର । କ୍ରୀତଦାସଙ୍କ ଉପରେ ବର୍ବରୋଚିତ ଅତ୍ୟାଚାର ପାଇଁ ୟେ ଥିଲେ ପୃଥିବୀ ପ୍ରସିଦ୍ଧ ।

''ସିରାତ-ଇ-ଫିରୁଜସାହି'' ଗ୍ରନ୍ଥର ବର୍ଣ୍ଣନା ଅନୁଯାୟୀ ଫିରୋଜ ଶାହା ତୋଗଲକ ଶ୍ରୀଜଗନ୍ନାଥ ମନ୍ଦିର ଲୁଣ୍ଠନ କରି ଫେରିଯିବା ବାଟରେ (ଯାଜନଗର) ବର୍ତ୍ତମାନର ଯାଜପୁର ଆକ୍ରମଣ କରିଥିଲେ । ସେଠାରେ ଫିରୋଜ ଶାହାଙ୍କ ସୈନ୍ୟମାନେ ସର୍ବତ୍ର ଯେପରି କୋକୁଆ

ଭୟ ସୃଷ୍ଟିକରି ଦମନଲୀଳା ଚଳାଇଥିଲେ ଯେ ଘରଦ୍ୱାର ଛାଡ଼ି ସାଧାରଣ ନାଗରିକ ଗୋଟିଏ ସ୍ଥାନରେ ଆଶ୍ରୟ ଗ୍ରହଣ କରିଥିଲେ । ଏହି ଆଶ୍ରୟ ସ୍ଥାନରେ ସ୍ତ୍ରୀ-ପୁରୁଷ ଶିଶୁ ମିଶି ପ୍ରାୟ ଲକ୍ଷେ ଆଶ୍ରୟ ଗ୍ରହଣ କରିଥିଲେ । ଯେଥିରୁ ଅନୁମାନ କରିହେବ ଯେ ତତ୍‌କାଳୀନ ଯାଜପୁର ଏକ ଉନ୍ନତ ନଗର ଥିଲା । ଧନାଢ଼୍ୟ ବ୍ୟକ୍ତି ମଧ୍ୟ ସେମାନଙ୍କ ମଧ୍ୟରେ ଅନେକ ଥିଲେ । ଏହି ହିନ୍ଦୁ ତୀର୍ଥକ୍ଷେତ୍ର ସୁସଂସ୍କୃତ ମନ୍ଦିରମାଳିନୀ ଧନାଢ଼୍ୟ ଅଞ୍ଚଳକୁ ଫିରୋଜ ତୋଗଲକ ଆକ୍ରମଣ କରିଥିଲେ ।

ଉପରୋକ୍ତ ଗ୍ରନ୍ଥର ବର୍ଣ୍ଣନା ଅନୁଯାୟୀ ଆଶ୍ରୟ ନେଇଥିବା ସ୍ତ୍ରୀ-ପୁରୁଷ ଏବଂ ଶିଶୁମାନଙ୍କ ଆଶ୍ରୟସ୍ଥଳ ଉପରେ ଇସଲାମୀୟ ଯୋଦ୍ଧାଗଣ ଆକ୍ରମଣ କରି ତାହାକୁ ଏକ ରକ୍ତ କୁଣ୍ଡରେ ପରିଣତ କରି ଦେଇଥିଲେ । ସେଇ ସମୟରେ ହିନ୍ଦୁ ମହିଳାଙ୍କ ଭାଗ୍ୟର ଚରମ ବିପର୍ଯ୍ୟୟ ଘଟିଥିଲା । ଯେଉଁ ସ୍ତ୍ରୀମାନଙ୍କର ଛୋଟଶିଶୁ ଥିଲେ କିମ୍ବା ଯେଉଁ ସ୍ତ୍ରୀ ଗର୍ଭବତୀ ଥିଲେ ମୁସଲମାନ ଆଇନ ଅନୁଯାୟୀ ସେମାନଙ୍କୁ ଦଣ୍ଡିତ କରାଯାଇ ହାତକଡ଼ି ପିନ୍ଧାଇ ବାନ୍ଧି ନିଆଗଲା । ପ୍ରତ୍ୟେକ ସୈନ୍ୟ ପାଖରେ ସେମାନେ ଆଜୀବନ କ୍ରୀତଦାସୀ ରୂପେ କାର୍ଯ୍ୟ କରିବାକୁ ବାଧ୍ୟ ହେଲେ ।

କାରଣ କୋରାନ୍‌ର ନିୟମ ଅନୁଯାୟୀ ଲୁଣ୍ଠିତ ଧନ, ବନ୍ଦୀ ସ୍ତ୍ରୀ ପୁରୁଷ ଏବଂ ବାଳକ ବାଳିକାକୁ ବଣ୍ଟନ କରା ଯାଇଥାଏ । ଅନ୍ୟ ଚାରି ପଞ୍ଚମାଂଶ ଯୁଦ୍ଧରେ ଭାଗ ନେଇଥିବା ଯୋଦ୍ଧାଙ୍କ ମଧ୍ୟରେ ବଣ୍ଟନ କରାଯାଏ ।

ପ୍ରସଙ୍ଗ ଦୃଷ୍ଟିରୁ ଉଲ୍ଲେଖ କରାଯାଇ ପାରେ ଯେ ଇସ୍‌ଲାମରେ 'ଦାସତ୍ୱ'କୁ ଅନୁମୋଦନ କରାଯାଇଛି । କ୍ରୀତଦାସମାନେ ମାଲିକଙ୍କ ସମ୍ପତ୍ତି ହୋଇଥିବା ହେତୁ ଏମାନଙ୍କୁ ବିକ୍ରୀ କରିବା, ଦାନ ଦେବା, ବନ୍ଧକ୍ ରଖିବା ବା ବନ୍ଧା ଦେବା କିମ୍ବା ଭଡ଼ାରେ ଲଗାଇବାର ଅଧିକାର ମାଲିକର । କ୍ରୀତଦାସମାନେ ମାଲିକ ପାଇଁ ଯୁଦ୍ଧ କରିପାରନ୍ତି ମାତ୍ର ଲୁଣ୍ଠିତ ଧନରେ ଯେମାନଙ୍କର ଅଧିକାର ନଥିଲା । ଯଦି କେହି ପ୍ରଭୁ ଦାସ କିମ୍ବା ଦାସୀଙ୍କୁ ପ୍ରାଣରେ ମାରିଦିଏ, ତେବେ ମଧ୍ୟ ସେ କୌଣସି ବିଚାରାଳୟରେ ଦଣ୍ଡିତ ହୁଏ ନାହିଁ । କାରଣ କୋରାନ୍ ଦାସଦାସୀର ପ୍ରାଣନେବା ନିମନ୍ତେ ଅସୀମ ଅଧିକାର ପ୍ରଭୁଙ୍କୁ ପ୍ରଦାନ କରିଛି ।

ଅତଏବ ଆମ୍ଭେ ଅନୁମାନ କରିପାରିବା ଫିରୋଜ ତୋଗଲକ ଏହିପରି ଏକ ହିନ୍ଦୁ କ୍ରୀତାଦାସୀର ପୁତ୍ର ଥିଲେ । ଓଡ଼ିଶାରୁ ଯେଉଁ ଶହ ଶହ ମା ଭଉଣୀଙ୍କୁ ସେ କ୍ରୀତଦାସୀ ରୂପେ ନେଇଥିଲେ ସେମାନେ କେଉଁଠି ନାଁ କେଉଁଠି ତିଳ ତିଳ ହୋଇ ବଡ଼ ଅମାନବୀୟ ଭାବରେ କାଳର କରାଳ ଗର୍ଭରେ ମିଶି ଯାଇଥିବେ ।

ଫିରୋଜ ଶାହାଙ୍କ ଦୁଇ ପୀଢ଼ୀ ପରବର୍ତ୍ତୀ ଐତିହାସିକ ଶମ୍‌ସ-ଏ-ଶିରାଜ ଅଫୀଫଙ୍କ ଲିଖିତ 'ପ୍ରଶଂସା କୀ ଅବିରାମ ଧାରା' ପୁସ୍ତକରୁ ଜଣାଯାଏ ଯାଜପୁର ସେତେବେଳେ ଓଡ଼ିଶାର ସମୃଦ୍ଧ ହିନ୍ଦୁ ନଗରୀ ଥିଲା । ବିଶାଳ ରାଜବାଟୀକୁ ଫିରୋଜ ଅକ୍ତିଆର କରି ନେଇଥିଲେ । ସେତେବେଳେ ରାଜା ବାହାରକୁ ଯାଇଥିଲେ । ରାଜବାଟୀରେ ନ ଥିଲେ । ବଙ୍ଗଳା ଆକ୍ରମଣ କାଳରେ ତାଙ୍କ ସେନାବାହିନୀ ଯେଉଁ ଅଭାବ ଅନୁଭବ କରୁଥିଲେ ତାହା ଯାଜପୁର ଅକ୍ତିଆର

କରିବା ପରେ ଦୂର ହେଲା । ଖାଦ୍ୟପାନୀୟ ନାଁ ସୈନ୍ୟମାନଙ୍କ ପାଇଁ ଅଭାବ ହେଲା ନାଁ ପଶୁମାନଙ୍କ ପାଇଁ । (ପୃ-୩୧୨, ଗ୍ରନ୍ଥ-୩, ଇଲିୟଟ୍ ଏବଂ ଡାଉସନ୍) ।

ସିରାତ-ଇ-ଫିରୁଜସାହି ଗ୍ରନ୍ଥରେ ବର୍ଣ୍ଣନା ଥିବା ଯାଜପୁରରୁ ଆକ୍ରମଣ କାଳରେ ଲକ୍ଷେ ଲୋକ ପଳାଇ ଯାଇ ଅନ୍ୟତ୍ର ଆଶ୍ରୟ ନେବା ଘଟଣାକୁ ଅଫୀଫ୍ ମହାଶୟ ଗ୍ରହଣ କରିନାହାଁନ୍ତି । ତାଙ୍କ ମତରେ - ମୁସଲମାନ ନୀତି-ବିଧାନ ଅନୁଯାୟୀ ଜଗନ୍ନାଥ ପୁରୀର ପବିତ୍ର ମନ୍ଦିର ଏବଂ ନଗରକୁ ଅପବିତ୍ର ଏବଂ ନଷ୍ଟ କରିବା ପରେ ପୁରୀଠାରୁ ଚିଲିକା ଦିଗକୁ ଅଗ୍ରସର ହୋଇ ଥିଲେ । କାରଣ ଫିରୋଜ ଶାହା ଭୟରେ ପୁରୀର ଲକ୍ଷେ ଲୋକ ପଳାଇ ଯାଇ ଚିଲିକା ମଝିରେ ଶରଣ ନେଇଥିଲେ । ଫିରୋଜଙ୍କ ସୈନ୍ୟମାନେ ଚିଲିକାର ସେଇ ଦ୍ୱୀପକୁ ହିନ୍ଦୁମାନଙ୍କ ରକ୍ତରେ ରଂଜିତ କରିଥିଲେ । ଏହା ପରର ବର୍ଣ୍ଣନା ସ୍ତ୍ରୀ ଏବଂ ଶିଶୁମାନଙ୍କ ସମ୍ବନ୍ଧୀୟ । ସେମାନଙ୍କ ଅବସ୍ଥା 'ଫିରୁଜସାହି' ଗ୍ରନ୍ଥରେ ଯାହା ଅଛି ଅଫୀଫ୍ ମହାଶୟ ପ୍ରାୟ ସେୟା ଉଲ୍ଲେଖ କରିଛନ୍ତି ।

ଯେଥିରୁ ଜଣାପଡୁଛି ଅଫୀଫ୍‌ଙ୍କ ମତ ଅଧିକ ବିଶ୍ୱାସଯୋଗ୍ୟ । ପୁରୀରୁ ଲୋକମାନେ ପିଲାଛୁଆ ଧରି ଚିଲିକାର କୌଣସି କୁଦକୁ ପଳାଇ ଯାଇଥିବା ସମ୍ଭବ । କାରଣ ସ୍ପଷ୍ଟ ଭାବରେ ସେ 'ଚିଲ୍‌କାକ୍ଷେତ୍ର' ବୋଲି ଶବ୍ଦ ପ୍ରୟୋଗ କରିଛନ୍ତି । କିନ୍ତୁ ସେ ଯେଉଁ ସ୍ତ୍ରୀ-ପୁରୁଷ-ଶିଶୁ ମିଶି ଲକ୍ଷେ ବୋଲି ଲେଖିଛନ୍ତି ତାହା ବାସ୍ତବ ନାଁ ବହୁଲୋକ ପଳାଇ ଯାଇଥିବାରୁ ଉପଲକ୍ଷ କରି 'ଲକ୍ଷେ' ଲୋକ ବୋଲି ଲେଖିଛନ୍ତି ତାହା ଗବେଷଣା ସାପେକ୍ଷ ।

ତାଙ୍କ ମତରେ ଫିରୋଜ ଶାହାଙ୍କ ପ୍ରତିରୋଧ ପାଇଁ ହିନ୍ଦୁସେନା ଆସି ପରେପରେ ପହଞ୍ଚିଥିଲେ । କିନ୍ତୁ ଟିକେ ଡ଼େରିରେ । ହିନ୍ଦୁସେନାଙ୍କ ପ୍ରତିଆକ୍ରମଣରେ ଫିରୋଜ ଶାହାଙ୍କ ସେନା ଧ୍ୱସ୍ତବିଧ୍ୱସ୍ତ ହୋଇଯାଇ ପଛଘୁଞ୍ଚା ଦେଇଥିଲେ ।

ଅଫୀଫ୍ କହନ୍ତି ଫିରୋଜ ଶାହା ବଙ୍ଗଳାର 'ଲଖନୌଟୀ' ଓ ଜଗନ୍ନାଥ ପୁରୀରେ ମୋଟ ୨ ବର୍ଷ ୭ମାସ ବ୍ୟତୀତ କରି ୭୩ଟି ହାତୀ ନେଇଥିଲେ । କିନ୍ତୁ ଦୁର୍ଭାଗ୍ୟକୁ ଫିରୋଜ ଶାହାଙ୍କ ସେନା ଦିଲ୍ଲୀ ଯିବାପାଇଁ ବାଟଭୁଲି ଯାଇ ଛମାସ ପର୍ଯ୍ୟନ୍ତ ବଣ-ଜଙ୍ଗଲ-ପାହାଡ଼-ପର୍ବତରେ ବୁଲି ବୁଲି ଶେଷରେ ଦୟନୀୟ ଭାବରେ ଦିଲ୍ଲୀରେ ପହଞ୍ଚିଥିଲେ । ସେ ନିଜେ ନିଜ ରାଜବାଟୀରେ ସ୍ୱର୍ଣ୍ଣାକ୍ଷରରେ ଲେଖିଥିଲେ ''ମୁଁ ବଡ଼ ବଡ଼ ହାତୀ ଶିକାର କରିଛି ଏବଂ ଅନେକ ମହାନ୍ କାର୍ଯ୍ୟ ସମ୍ପନ୍ନ କରିଛି'' (ପୃ-୩୧୬) ।

କିନ୍ତୁ ଜଗନ୍ନାଥ ମନ୍ଦିରରୁ ଲୁଣ୍ଠନ କରି ନେଇଥିବା ଧନ-ରତ୍ନର କୌଣସି ବିବରଣୀ ସ୍ୱର୍ଣ୍ଣାକ୍ଷରରେ ଲେଖି ନଥିଲେ । କିନ୍ତୁ ଶ୍ରୀମନ୍ଦିରରୁ ଲୁଣ୍ଠିତ ଧନ-ରତ୍ନ ଯାହା ସେ ହାତୀ ପିଠିରେ ଲଦି ଦିଲ୍ଲୀ ନେଇଥିଲେ ତାହାର ସଠିକ ବିବରଣୀ ମିଳିପାରି ନାହିଁ । ପୁରୀର ତତ୍କାଳୀନ ଅବସ୍ଥା ଦୃଷ୍ଟିରୁ କ'ଣ କ'ଣ ନେଇଛନ୍ତି ତାହା ଦେଖିବାକୁ କାହାରି ସୁଯୋଗ ନଥିବ । ଯେଉଁମାନେ ବି ଦେଖିଥିବେ ସେମାନେ କେଉଁଠି କିଛି ଆମମାନଙ୍କ ପାଇଁ ଲେଖିଦେଇ ଯାଇଥିବେ ତାହା ଆଜି ସୁଦ୍ଧା ଆମ୍ଭମାନଙ୍କ ଦୃଷ୍ଟିଗୋଚର ହୋଇନାହିଁ । ୭୩ଟି ବଳୁଆ ହାତୀ ଉପରେ ଅକଳନୀୟ ଧନ-ରାଶି ଆମ୍ଭମାନଙ୍କର ଓଡ଼ିଶାରୁ ବାହାରକୁ ଚାଲି ଯାଇଥିବ ଯେଥିରେ ଦ୍ୱିରୁକ୍ତି ନାହିଁ ।

ଏହି ନିଷ୍ଠୁର ବାଦଶାହ ବିହାର ପ୍ରଦେଶ ପଟୁ ପ୍ରଥମେ ଓଡ଼ିଶା ସୀମାରେ ପହଞ୍ଚି ସେଠାରେ ଘୋଷଣା କରିଥିଲେ ''ଆମର ଲକ୍ଷ୍ୟ ହେଉଛି ହାତୀ ଧରିବା, ହିନ୍ଦୁମାନଙ୍କର ବିଗ୍ରହ ଧ୍ୱଂସ କରିବା ଏବଂ ଓଡ଼ିଶା ରାଜାଙ୍କୁ ଲୋପ କରିବା'' ।

ସେ ଓଡ଼ିଶାର ଉତ୍ତର ଦିଗରୁ ଆକ୍ରମଣ କରି କେତେକ ରାଜଦ୍ରୋହୀ ଓ ବିଶ୍ୱାସ-ଘାତକଙ୍କ ସାହାଯ୍ୟରେ ଓଡ଼ିଶାର ତତ୍‌କାଳୀନ ରାଜଧାନୀ କଟକର ବିଡ଼ାନାସୀରେ ପ୍ରବେଶ କରିଥିଲେ । ଭାନୁଦେବ ନଗର ଛାଡ଼ି ଚାଲିଯିବାରୁ କୁଆଖାଇ ନଦୀର ଦକ୍ଷିଣକୁ ଥିବା ସାରଙ୍ଗଗଡ଼କୁ ଧ୍ୱଂସ କଲେ । ତାହାପରେ ନିଜେ ସୈନ୍ୟସାମନ୍ତଙ୍କ ସହ ପୁରୀ ଆକ୍ରମଣ କରି ପୁରୀର ବହୁ ଛୋଟ ଛୋଟ ମନ୍ଦିର ଓ ପ୍ରତିମା ନଷ୍ଟ କଲେ । ସିଂହାସନରୁ ପ୍ରଭୁଙ୍କୁ ଉଠାଇନେବା ସହ ଧନରତ୍ନ ହୀରାନୀଳା ଲୁଣ୍ଠନ କରି ନେଇଥିଲେ । (ତାରିଖେ- ଫିରୋଜାଶାହୀ, ଏହି ପାର୍ସି ଗ୍ରନ୍ଥଟି ଫିରୋଜ ଶାହାଙ୍କ ଜୀବିତାବସ୍ଥାରେ ତାଙ୍କ ଆଦେଶରେ ଲେଖା ଯାଇଥିଲା ବୋଲି ଅନେକ ମତ ଦିଅନ୍ତି)

ସୁଲତାନଙ୍କ ସୈନ୍ୟମାନେ ବହୁ ନିରୀହ ଲୋକଙ୍କୁ ଏହି ଆକ୍ରମଣ ବେଳେ ହତ୍ୟା କରିଥିଲେ । ସେତେବେଳେ ଅନେକ ମନ୍ଦିର ଓ ଦେବବିଗ୍ରହଙ୍କୁ ନଷ୍ଟ କରି ଦେଇଥିଲେ । ଶ୍ରୀମନ୍ଦିର ଏବଂ କଟକର ବିଡ଼ାନାସୀ ଗଡ଼ ଭିତରେ ପୂଜା ପାଉଥିବା ଜଗନ୍ନାଥ ବିଗ୍ରହଙ୍କୁ ଦଉଡ଼ିରେ ବାନ୍ଧି ଘୋଷାରି ଘୋଷାରି ଦିଲ୍ଲୀ ପର୍ଯ୍ୟନ୍ତ ନେଇଥିବାର ଜଣାଯାଏ । ଦିଲ୍ଲୀର୍ ଜାମା ମସ୍‌ଜିଦ୍ ସାମନାରେ ବିଗ୍ରହମାନଙ୍କୁ ପାହାଚ ରୂପେ ବ୍ୟବହାର କରିବା ପାଇଁ ସୁଲତାନ ଆଦେଶ ଦେଇଥିଲେ । ମସ୍‌ଜିଦ୍‌କୁ ଯିବା ଆସିବା ବେଳେ ବିଗ୍ରହମାନଙ୍କୁ ପାଦରେ ଦଳା ଯାଉଥିଲା ।

ଆଯୋଧ୍ୟାପ୍ରସାଦ ଗୋୟଲୀୟଙ୍କ ମତରେ ଫିରୋଜ ଶାହା ଜଗନ୍ନାଥ ମନ୍ଦିରରେ ପୂଜିତ ବିଗ୍ରହଙ୍କୁ ସମୁଦ୍ରରେ ଫିଙ୍ଗି ଦେଇଥିଲେ । କିନ୍ତୁ ଯେ ପାପ ତାଙ୍କୁ ଭୋଗିବାକୁ ପଡ଼ିଥିଲା । ଓଡ଼ିଶାରୁ ଫେରିବାବେଳେ ସେନାବାହିନୀ ବାଟ ଭୁଲି ଯାଇଥିଲେ । ଛ'ମାସ ପର୍ଯ୍ୟନ୍ତ ପାହାଡ଼ ଜଙ୍ଗଲରେ ବିତାଇବାକୁ ପଡ଼ିଥିଲା । ପ୍ରାଣାନ୍ତକ କଷ୍ଟ ଭୋଗିବା ପରେ ଛିନ୍ନଭିନ୍ନ ରୁଗ୍‌ଣ ସେନାଙ୍କୁ ନେଇ ଦିଲ୍ଲୀରେ ପହଞ୍ଚିଥିଲେ ।

ଓଡ଼ିଶାର ଲୁଣ୍ଠିତ ଧନରାଶି ନେବାପରେ ଅସ୍ଥିର ସ୍ୱଭାବୀ, ଯୁଦ୍ଧ ଅନଭିଜ୍ଞ, ଅସହିଷ୍ଣୁ ଧର୍ମାନ୍ଧ ଫିରୋଜଙ୍କର ସାମାନ୍ୟ ବିବେକୋଦୟ ହୋଇଥିବାର କୁହାଯାଏ । କାରଣ ସେ ଫେରିବା ପରେ ଗରୀବ ସହାୟତା ପାଇଁ ଦାନଶାଳା ଖୋଲାଇଥିଲେ । ଗରିବ ମୁସଲମାନ କନ୍ୟାମାନଙ୍କର ବିବାହ ପାଇଁ ଅର୍ଥ ସହାୟତା ଘୋଷଣା କରିଥିଲେ । ରୋଗୀମାନଙ୍କର ସେବାପାଇଁ ଚିକିତ୍ସାଳୟ ଖୋଲାଇଥିଲେ । ଏବଂ ବିଦ୍ୱାନ୍ ଓ କଳାକାରଙ୍କୁ ସମ୍ମାନ ଦେବା ଆରମ୍ଭ କରିଥିଲେ ।

ଦୀର୍ଘ ୩୭ ବର୍ଷ ଶାସନ କରି ୭୯ ବର୍ଷ ବୟସରେ ୧୩୮୮ ଖ୍ରୀଷ୍ଟାବ୍ଦରେ ଏକ ହିନ୍ଦୁ ମା'ର ପୁତ୍ର ରକ୍ତପିପାସୁ ଅମାପ ଧନ-ରତ୍ନର ଲୁଣ୍ଠନକାରୀ ଫିରୋଜ ଶାହା ତୋଗଲକଙ୍କର ଜୀବନଦୀପ ଲିଭି ଯାଇଥିଲା ।




## ଇସ୍‌ମାଇଲ ଗାଜିଙ୍କ ଶ୍ରୀମନ୍ଦିର ଆକ୍ରମଣ ଓ ଲୁଣ୍ଠନ

ଇସ୍‌ମାଇଲ ଗାଜି ଥିଲେ ବଙ୍ଗ ସୁଲତାନ ଆଲା-ଉଦ୍ଦିନ ହୋସେନ ଶାହାଙ୍କର ସେନାପତି । ପୁରୁଷୋତ୍ତମ ଦେବଙ୍କ ପୁତ୍ର ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳରେ ୧୫୦୯ ଖ୍ରୀଷ୍ଟାବ୍ଦରେ ସେ ଓଡ଼ିଶା ଆକ୍ରମଣ କରିଥିଲେ । ମାଦଳାପାଂଜିରେ ଏହାଙ୍କୁ ସୁରଷାନ ବୋଲି ନାମ ଦିଆଯାଇଛି ।

ପ୍ରତାପରୁଦ୍ର ଦେବ ୧୪୯୭ ଖ୍ରୀ.ରେ ସିଂହାସନ ଆରୋହଣ କରିଥିଲେ । ସେତେବେଳକୁ ଦାକ୍ଷିଣାତ୍ୟର ଗୋଲକୁଣ୍ଡାର ସୁଲତାନଙ୍କର ଯଥେଷ୍ଟ ଶକ୍ତି ବଢ଼ି ଯାଇଥିଲା । ଏଣେ ପ୍ରତାପରୁଦ୍ର ଦେବ ରାଜନୀତି ଅପେକ୍ଷା ଧର୍ମକାର୍ଯ୍ୟରେ ବହୁ ସମୟ ଅତିବାହିତ କରୁଥିଲେ । ତେଣୁ ରାଜକାର୍ଯ୍ୟ ମନ୍ତ୍ରୀ ଓ ସେନାପତିଙ୍କ ଉପରେ ପଡୁଥିଲା । ଫଳରେ ଓଡ଼ିଶାର ସାମରିକ ଶକ୍ତି ଦକ୍ଷିଣସୀମାରେ କ୍ଷୀଣ ହୋଇପଡ଼ିଲା । ସେଠାକାର ଖଣ୍ଡପାଳ ଓ ସାମନ୍ତରାଜାମାନେ ବିଦ୍ରୋହାତ୍ମକ କାର୍ଯ୍ୟରେ ଲିପ୍ତ ଥିଲେ ।

ଠିକ୍ ସେତିକିବେଳେ ଇସ୍‌ମାଇଲ ଗାଜି ପୂର୍ବ ଦିଗରୁ ସୈନ୍ୟଚାଳନା କରି ଓଡ଼ିଶାର ହିନ୍ଦୁମନ୍ଦିର ଗୁଡ଼ିକ ଧ୍ୱଂସ କରିବା ସହ ଲୁଣ୍ଠନ କାର୍ଯ୍ୟ ଚଳାଇଥିଲେ । ଜଗନ୍ନାଥଙ୍କୁ ରକ୍ଷା କରିବା ପାଇଁ ରତ୍ନସିଂହାସନରୁ ସ୍ଥାନାନ୍ତର କରା ଯାଇଥିଲା ।

ପ୍ରତାପରୁଦ୍ର ଦେବ ସେତେବେଳେ ସୈନ୍ୟ-ସାମନ୍ତଙ୍କ ସହ ଦକ୍ଷିଣ ଓଡ଼ିଶାରେ ଅବସ୍ଥାନ କରୁଥିଲେ । ଶ୍ରୀମନ୍ଦିର ଆକ୍ରମଣ ସମ୍ବାଦ ପାଇ ସେ ଫେରିଆସି ମୁସଲମାନମାନଙ୍କୁ ତଡ଼ି ଦେଲେ ସତ, କିନ୍ତୁ ନିଜ ସୈନ୍ୟମାନଙ୍କ ମଧ୍ୟରେ ରାଜଦ୍ରୋହ ଦେଖା ଦେଇଥିଲା ।

ପ୍ରତାପରୁଦ୍ର ଦେବ ଦାକ୍ଷିଣାତ୍ୟରୁ ଫେରିଆସି ଇସ୍‌ମାଇଲ ଗାଜିଙ୍କ ଉପରେ ଆକ୍ରମଣ ପ୍ରାରମ୍ଭ କଲାବେଳକୁ ସେମାନେ ବଙ୍ଗ ଫେରିଯିବାକୁ ଆରମ୍ଭ କରି ସାରିଥିଲେ । ଲୁଣ୍ଠନ କାର୍ଯ୍ୟ ସେମାନଙ୍କର ସରିଥିଲା, ତେଣୁ ଉଦ୍ଦେଶ୍ୟ ପୂରଣ ହେବାପରେ ଯୁଦ୍ଧ ମୁହାଁ ନ ହୋଇ ସେମାନେ ଘରମୁହାଁ ହୋଇଥିଲେ । ତେବେ ବି ପ୍ରତାପରୁଦ୍ର ଦେବ ସେମାନଙ୍କ ପଛେ ପଛେ 'ହୁଗୁଳି' ଜିଲ୍ଲା ପର୍ଯ୍ୟନ୍ତ ଯାଇଥିଲେ । ହୁଗୁଳି ଜିଲ୍ଲାର ଜାହାନ୍‌ବାଦ୍ ସବ୍‌ଡ଼ିଭିଜନରେ ଥିବା 'ମନ୍ଦାରଣ ଦୁର୍ଗ'ରେ ସୈନ୍ୟମାନଙ୍କ ସହ ଇସ୍‌ମାଇଲ ଗାଜି ଆଶ୍ରୟ ନେବାରୁ ପ୍ରତାପରୁଦ୍ର ଯେ ଦୁର୍ଗକୁ ଘେରାଉ କରିଥିବା ବେଳେ ନିଜର ମନ୍ତ୍ରୀ ଭୋଇ ଗୋବିନ୍ଦ ବିଦ୍ୟାଧର ବିଶ୍ୱାସଘାତକତା କଲେ । ସେ ସୁଲତାନଙ୍କ ପକ୍ଷରେ ଯୋଗ ଦେଇଥିଲେ । ଫଳରେ ବାଧ ହୋଇ ପ୍ରତାପରୁଦ୍ର ମନ୍ଦାରଣ ଦୁର୍ଗ ଘେରାଉ ଉଠାଇ ନେଇ ଫେରିଆସିଲେ । (History of Bengal, Vol-II, P-148)

ତତ୍‌କାଳୀନ ବଙ୍ଗ ସୁଲତାନ ଆଲ୍ଲା-ଉଦ୍ଦିନ ହୋସେନ ଶାହାଙ୍କ ସେନାପତି ଇସ୍‌ମାଇଲ ଗାଜିଙ୍କ ଏତାଦୃଶ କାର୍ଯ୍ୟକଳାପରେ ପ୍ରତାପରୁଦ୍ର କାହିଁକି ହୋସେନ ଶାହାଙ୍କୁ କ୍ଷମା ଦେଇଥିଲେ ତାର କାରଣ ଜଣାପଡ଼ି ନାହିଁ । ମାତ୍ର 'ସରସ୍ୱତୀ-ବିଳାସ' ଅନୁଯାୟୀ କ୍ଷମା ଦେଇଥିଲେ ।

(ଗୌଡ଼େନ୍ଦ୍ର ମାନମର୍ଦ୍ଦନଃ-ଶରଣାଗତ ହୁସେନସାହି ସୁରତ୍ରାଣ ବଜ୍ରପଞ୍ଜରଃ) । ଡ଼ଃ ମହତାବଙ୍କ ମତରେ "ବଙ୍ଗ ସୁଲତାନ ପରାଜିତ ହୋଇ ଆତ୍ମସମର୍ପଣ କରିବାରୁ ପ୍ରତାପରୁଦ୍ର ତାଙ୍କୁ କ୍ଷମା ଦେଇଥିଲେ । ଯଦିଓ ସେଥିପାଇଁ ବଳିଷ୍ଠ ପ୍ରମାଣର ଆବଶ୍ୟକତା ଅନୁଭୂତ ହୁଏ, ତଥାପି ମହତାବଙ୍କର ମତ ଆଜି ମଧ୍ୟ ଗବେଷଣାକୁ ଅପେକ୍ଷା ରଖିଛି । ବଙ୍ଗ ସୁଲତାନଙ୍କର ପରାଜିତ କାହାଣୀ ଅନେକ ଐତିହାସିକ ତଥ୍ୟ ଉନ୍ମୋଚିତ କରିବ ।"

ଆଲ୍ଲା-ଉଦ୍ଦିନ ହୋସେନ ଶାହା ୧୪୯୩ରୁ ୧୫୧୯ ପର୍ଯ୍ୟନ୍ତ ବଙ୍ଗର ସୁଲତାନ ହୋଇଥିଲେ । ୧୫୦୩ରୁ ୧୫୦୬ ମଧ୍ୟରେ ପ୍ରତାପରୁଦ୍ର ଉତ୍ତର ଓଡ଼ିଶାରେ ଥିବା ସମୟରେ ବଙ୍ଗ ସୁଲତାନଙ୍କୁ ପରାଜୟ କରିଥିଲେ । ତେଣୁ ହୋସେନ ଶାହା ଗୌଡ଼ ଓ ଓଡ଼ିଶା ମଧ୍ୟବର୍ତ୍ତୀ ସମସ୍ତ ରାଜ୍ୟ ଅଧିକାର କରିଥିଲେ ମଧ୍ୟ ମେଦିନୀପୁର ଯେପଟକୁ ଆସିପାରି ନଥିଲେ । ମେଦିନୀପୁର ସୀମାରେ ହିଁ ଆକ୍ରମଣ ଉଦ୍ଦେଶ୍ୟରେ ରହିଥିଲେ ।

ପ୍ରତାପରୁଦ୍ରଙ୍କ ଦ୍ୱାରା ଥରେ ପରାସ୍ତ ହୋଇଥିବାରୁ ସେ ସାହସ କରୁନଥିଲେ ଓଡ଼ିଶା ଆକ୍ରମଣ କରିବା ପାଇଁ । ମାତ୍ର ଗୃହ ଶତ୍ରୁମାନେ ପ୍ରତାପରୁଦ୍ରଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରିଥିବାରୁ ହିଁ ହୋସେନ ଶାହାଙ୍କ ସେନାପତି ଇସ୍‌ମାଇଲ ଗାଜି ପୁରୀ ପର୍ଯ୍ୟନ୍ତ ଆସି ଲୁଣ୍ଠନ କରିବାକୁ ସକ୍ଷମ ହେଲେ ।

ସେତେବେଳେ ଦିଲ୍ଲୀ ଦରବାର ଶାସନ କରୁଥାନ୍ତି ଲୋଧିବଂଶ । ସିକନ୍ଦର ଲୋଧି (୧୪୮୯-୧୫୧୭ ଖ୍ରୀ.) ଥାଆନ୍ତି । ତାଙ୍କର ପ୍ରକୃତ ନାମ ଥିଲା ନିଜାମ ଖାଁ । ସେ ଜୁଲାଇ ୧୭ ତାରିଖ ୧୪୮୯ରେ 'ସିକନ୍ଦର ଶାହ' ଉପାଧି ଧାରଣ କରି ସିଂହାସନ ଆରୋହଣ କରିଥିଲେ । ତାଙ୍କର ମୁଖ୍ୟ କାମ ଥିଲା ହିନ୍ଦୁମାନଙ୍କୁ ଜବରଦସ୍ତ ମୁସଲମାନ କରିବା, ମନ୍ଦିର ଧ୍ୱଂସ କରିବା । ସେ ହିଁ ମଥୁରାର ମନ୍ଦିର ଭାଙ୍ଗି ବିଗ୍ରହଙ୍କୁ ମାଂସ ବ୍ୟବସାୟୀଙ୍କୁ ଦେଇଥିଲେ ଯେପରି ସେମାନେ ବିଗ୍ରହ ଉପରେ ମାଂସ ଛୋଟ ଛୋଟ ଖଣ୍ଡ କରିପାରିବେ । ସେ ହିଁ ଧୌଲପୁର ଓ ଗୋଆଲିଅର ଉପରେ ନିଜ ନିୟନ୍ତ୍ରଣ ଜାହିର କରିବା ପାଇଁ ୧୫୦୪ ଖ୍ରୀଷ୍ଟାବ୍ଦରେ ଆଗ୍ରା ସହରର ମୂଳଦୂଆ ପକାଇଥିଲେ ।

ତାଙ୍କର ବର୍ବରୋଚିତ ଅମାନୁଷିକ କାର୍ଯ୍ୟକଳାପ ହିଁ ବଙ୍ଗ ସୁଲତାନ ଇସ୍‌ମାଇଲ ଗାଜିଙ୍କୁ ପ୍ରେରଣା ଯୋଗାଇଥିଲା । ସେଥିରେ ସନ୍ଦେହ ନାହିଁ ।

ଇସ୍‌ମାଇଲ ଗାଜି ଶ୍ରୀମନ୍ଦିରରୁ କି କି ଧନ-ରତ୍ନ କେତେ ପରିମାଣରେ ନେଇଥିଲେ ତାର ସଠିକ ବିବରଣୀ ଓଡ଼ିଶା ଇତିହାସରେ ଆଜି ପର୍ଯ୍ୟନ୍ତ ସ୍ଥାନ ପାଇପାରି ନାହିଁ । ଭାଗ୍ୟର ବିଡ଼ମ୍ବନା ଯଦି ପ୍ରତାପରୁଦ୍ର ଦେବଙ୍କ ମନ୍ତ୍ରୀ ବିଶ୍ୱାସଘାତକତା କରିନଥାନ୍ତେ ତେବେ 'ମନ୍ଦାରଣ ଦୁର୍ଗ'ରୁ ଇସ୍‌ମାଇଲ ଗାଜିଙ୍କ ମରଶରୀର ବାହାରିଥାନ୍ତା । ଲୁଣ୍ଠିତ ଦ୍ରବ୍ୟ ପ୍ରତାପରୁଦ୍ର ଦେବଙ୍କ ହସ୍ତଗତ ହୋଇଥାନ୍ତା । ତେବେ ଜଣା ପଡ଼ିଥାନ୍ତା ଶ୍ରୀମନ୍ଦିରରୁ ଲୁଣ୍ଠିତ ଦ୍ରବ୍ୟର ପରିମାଣ । କିନ୍ତୁ ହାୟ ! ପ୍ରତାପରୁଦ୍ର ଦେବଙ୍କୁ ଖାଲି ହାତରେ ଫେରି ଆସିବାକୁ ପଡ଼ିଥିଲା ମନ୍ଦାରଣ ଦୁର୍ଗରୁ । ଓଡ଼ିଶାର ଲୁଣ୍ଠିତ ଧନରାଶି ଚାଲିଗଲା ବଙ୍ଗ ସୁଲତାନଙ୍କ ରାଜ ଉଆସକୁ ।




# କଳାପାହାଡ଼ର ଶ୍ରୀମନ୍ଦିର ଆକ୍ରମଣ ଓ ଲୁଣ୍ଠନ

**ଉପକ୍ରମ** - ୧୫୧୦ ଖ୍ରୀଷ୍ଟାବ୍ଦରେ ପୁରୀକୁ ଶ୍ରୀଚୈତନ୍ୟ ଆସିବା ପରେ ଅତିବଡ଼ୀ ଜଗନ୍ନାଥ ଦାସଙ୍କ 'ଭାଗବତ' ଲୋକପ୍ରିୟ ହେବା ଫଳରେ ସମାଜରେ ଜୀବହିଂସା ବହୁ ପରିମାଣରେ କମିଗଲା । ସାମରିକ ଶକ୍ତି ଦୁର୍ବଳ ମଧ୍ୟ ହୋଇଗଲା । ରାଜନୀତି କ୍ଷେତ୍ରରେ ରାଜଦ୍ରୋହର ବାତାବରଣ ଓଡ଼ିଶାର ରାଜକୀୟ ମର୍ଯ୍ୟାଦାକୁ ଦୋହଲାଇ ଦେଲା । ଓଡ଼ିଶା ବୈଦେଶିକ ଆକ୍ରମଣର ଏକ ରଂଗମଞ୍ଚ ହୋଇଗଲା ।

ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ କୌଣସି ପ୍ରକାରେ ଶାସନ କ୍ଷେତ୍ରରେ ମୁସଲମାନ ରାଜତ୍ୱ ସମ୍ଭବ ହୋଇପାରି ନଥିଲା ।

କିନ୍ତୁ ବିଦ୍ରୋହୀ ରାମଚନ୍ଦ୍ର ଭଂଜ ଓ ଅନ୍ୟ କେତେକଙ୍କ ହୀନ ଚକ୍ରାନ୍ତ ଯୋଗୁଁ ମୁକୁନ୍ଦଦେବଙ୍କୁ ହତ୍ୟା କରାଗଲା ପରେ ଓଡ଼ିଶାରେ ଭାଗ୍ୟ ବିପର୍ଯ୍ୟୟ ଆରମ୍ଭ ହେଲା । ସେହି ସମୟରେ ବଙ୍ଗଳାର ନବାବ କତଲୁ ଖାଁ ଓଡ଼ିଶାର ବାରବାଟୀ ଦୁର୍ଗ ଅଧିକାର କରିନେବା ବେଳେ ଦଳେ ମୁସଲମାନଙ୍କୁ ନେଇ କଳାପାହାଡ଼ ଓଡ଼ିଶାର ମନ୍ଦିର ଓ ମୂର୍ତ୍ତିମାନଙ୍କୁ ଭାଙ୍ଗି ପକାଇଲେ । ଶ୍ରୀମନ୍ଦିରରୁ ଶ୍ରୀବିଗ୍ରହଙ୍କୁ ଶଗଡ଼ରେ ନେଇ ଗଙ୍ଗା କୂଳରେ ପୋଡ଼ିଦେଲେ ।

ଓଡ଼ିଶାର ଯେ ଅରାଜକତା ଦୂର ହେଲା ଆକବରଙ୍କ ହସ୍ତକ୍ଷେପ ଫଳରେ । ସେ ମାନସିଂହଙ୍କୁ ଓଡ଼ିଶା ପଠାଇବାରୁ ମାନସିଂହ ପୁରୀ ଆସି ରାଜଚନ୍ଦ୍ର ଦେବଙ୍କୁ ଓଡ଼ିଶାର ଶାସନଭାର ଅର୍ପଣ କଲେ । ରାମଚନ୍ଦ୍ର ଦେବଙ୍କ ସମୟରେ ମହାପ୍ରଭୁଙ୍କର ନବକଳେବର ହୋଇ ପୁନଃ ରୀତିନୀତି ଶ୍ରୀମନ୍ଦିରରେ ପ୍ରଚଳିତ ହେଲା ।

**ଆଲିବକ୍ରି** - ଓଡ଼ିଶାର ଏକ କିମ୍ବଦନ୍ତୀ ଅଛି ଯେ କଳାପାହାଡ଼ର ମୁଖ୍ୟ ସେନାନାୟକ ଥିଲେ ଆଲିବକ୍ରି । ଯାଜପୁର ଜୟ କରିସାରିବା ପରେ ସେ କଟକର ବାରବାଟୀ ଆକ୍ରମଣ କରିଥିଲେ । ଭୟଙ୍କର ଯୁଦ୍ଧରେ ବାରବାଟୀ ଦୁର୍ଗ ଭାଙ୍ଗିଗଲା । ଗଜପତି ପରାସ୍ତ ହୋଇଗଲେ ।

ଆଲିବକ୍ରି ଘୋଡ଼ା ପିଠିରେ ବସି ଯୁଦ୍ଧ କରୁଥାନ୍ତି । ହଠାତ୍ ଜଣେ ଉତ୍କଳୀୟ ସୈନ୍ୟ ଆଲିବକ୍ରିଙ୍କର ମୁଣ୍ଡ କାଟିଦେଲା । ଉକ୍ତ ଘୋଡ଼ା ଆଲିବକ୍ରିର ମୁଣ୍ଡହୀନ ଦେହକୁ ନେଇ ଯାଜପୁର ପଳାଇଲା । ଯାଜପୁରର ତତ୍କାଳୀନ ମୁକ୍ତିମଣ୍ଡପ ଭଙ୍ଗାଯାଇ ସେହି ସ୍ଥାନରେ ଆଲିବକ୍ରିଙ୍କୁ କବର ଦିଆ ଯାଇଥିଲା । ତାହା ଆଜି ପର୍ଯ୍ୟନ୍ତ ଅଛି । କାରଣ ସେଇଠାରେ ହିଁ ଘୋଡ଼ା ଆଲିବକ୍ରିଙ୍କର ମୁଣ୍ଡହୀନ ଶରୀରକୁ ପହଞ୍ଚାଇଥିଲା ।

ବାରବାଟୀ ଦୁର୍ଗ ଅଧିକୃତ ହେବା ପରେ ଆଲିବକ୍ରିଙ୍କର ମୁଣ୍ଡକୁ ଗଡ଼ର ଏକ ଅଶ୍ୱତ୍ଥ ଗଛମୂଳରେ କବର ଦିଆ ଯାଇଥିଲା । (ଓଡ଼ିଶାର କିମ୍ବଦନ୍ତୀ- ଡ଼ଃ ପ୍ରସନ୍ନ କୁମାର ମିଶ୍ର)

ଉପରୋକ୍ତ ଘଟଣା ଯଦି ଆମେ ଗ୍ରହଣ କରିବା ତେବେ କଳାପାହାଡ଼ ପ୍ରଥମେ ଯାଜପୁର ଆକ୍ରମଣ କରି ଲୁଣ୍ଠନ କରି ସାରିବା ପରେ କଟକ ଆକ୍ରମଣ କରିଥିଲେ । କଟକ ଆକ୍ରମଣ ପରେ ପୁରୀ ଆକ୍ରମଣ କରିଥିବା ସମ୍ଭବ ।

## ତତ୍‌କାଳୀନ ରାଜନୀତିକ ଅବସ୍ଥା :

୧୫୬୮ ଖ୍ରୀଷ୍ଟାବ୍ଦ ପରେ ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ଓଡ଼ିଶାରେ ଶାସନ ବୋଲି କିଛି ନଥିଲା । ଅତ୍ୟାଚାର, ଲୁଣ୍ଠନ ଓ ସ୍ୱେଚ୍ଛାଚାରିତା ହିଁ ଓଡ଼ିଶା ଭାଗ୍ୟରେ ଥିଲା । ବଙ୍ଗର ଆଫଗାନ ଶାସକ ସୁଲେମାନ କର୍‌ରାନୀ ସମଗ୍ର ଓଡ଼ିଶା ଜୟ କରିବାର କିଛି ଦିନ ପରେ ଦିଲ୍ଲୀ ବାଦଶାହାଙ୍କ ଅଧୀନତା ସ୍ୱୀକାର କରିଥିଲେ । ଫଳରେ ବଙ୍ଗ, ଓଡ଼ିଶାର ଶାସକ ହେଲେ ନିର୍ବିବାଦରେ ୧୫୭୩ ପର୍ଯ୍ୟନ୍ତ । ୧୫୭୩ ଖ୍ରୀ.ରେ ତାଙ୍କ ମୃତ୍ୟୁ ପରେ ବଡ଼ପୁଅ ବାଇଜିଦ୍ କିଛି ଦିନ ଶାସନ କଲେ । ବାଇଜିଦ୍‌ଙ୍କ ମୃତ୍ୟୁ ପରେ ସାନଭାଇ ଦାଉଦ୍ ହେଲେ ଶାସକ ।

ଓଡ଼ିଶାରେ ଆଫଗାନ ରାଜତ୍ୱର କୌଣସି ଦୀର୍ଘସ୍ଥାୟୀ ପ୍ରଭାବ ଅନୁଭୂତ ହୁଏ ନାହିଁ । ଶାସନ ବ୍ୟବସ୍ଥାରେ କୌଣସି ପରିବର୍ତ୍ତନ ଆଣିବା ଦୂରର କଥା ଓଡ଼ିଶାର ସମସ୍ତ ଅଞ୍ଚଳରେ କର୍ତ୍ତୃତ୍ୱ ହାସଲ ମଧ୍ୟ ସେମାନେ କରିପାରି ନଥିଲେ । ସେମାନଙ୍କର ହିନ୍ଦୁ ବିରୋଧି କାର୍ଯ୍ୟକଳାପ ଯଥା : ବିଗ୍ରହ ଭାଙ୍ଗିବା, ମନ୍ଦିର ଧ୍ୱଂସ କରିବା, ବିଶେଷତଃ ଶ୍ରୀଜଗନ୍ନାଥ ମନ୍ଦିର ଆକ୍ରମଣ ସେମାନଙ୍କୁ ଅପ୍ରିୟ କରି ଦେଇଥିଲା । ପରିସ୍ଥିତି ଯେପରି ହୋଇଥିଲା ଯେ ସେମାନଙ୍କର ସ୍ଥିତି ସୁଦୃଢ଼ ନଥିଲା କିମ୍ବା ସେମାନଙ୍କୁ କ୍ଷମତାରୁ ତଡ଼ିଦେବା ପାଇଁ ହିନ୍ଦୁମାନଙ୍କର ସାମର୍ଥ୍ୟ ନଥିଲା । କିମ୍ବା ତତ୍‌କାଳୀନ ରାଜାମାନେ ଐକବଦ୍ଧ ହୋଇପାରି ଥିଲେ ।

କଳାପାହାଡ଼ ଆକ୍ରମଣ ବୃତ୍ତାନ୍ତ 'ମଖଜନ-ଇ-ଆଫଗାନି' ନାମକ ସମସାମୟିକ ମୁସଲମାନ ଇତିହାସ ଗ୍ରନ୍ଥରୁ ମିଳେ (History of the Afgans by Dorn, P-181) । ଯେଥିରୁ ଜଣାପଡୁଛି ବଙ୍ଗ ନବାବ ସୁଲେମାନ କର୍‌ରାନୀ ଜଗନ୍ନାଥ ମନ୍ଦିର ଭାଙ୍ଗି ପକାଇଥିଲେ । ତାଙ୍କ ଆଦେଶରେ ଶ୍ରୀକୃଷ୍ଣଙ୍କ ବିଗ୍ରହ ଖଣ୍ଡ ବିଖଣ୍ଡ କରାଯାଇ ପାଣି ନାଳରେ ଫୋପଡ଼ା ଯାଇଥିଲା (Bengal Past and Present, Vol.- LXXII, No.-135, P-22. "The largest Temple of the Hindus x x is known by the name of Jagannath. x x He pulled down the Shrine and ordered the image of God Krishna x x to be broken into fragments and cast in to the gutter.") ।

କିନ୍ତୁ ଐତିହାସିକ ଆବୁଲଫାଜଲ କଳାପାହାଡ଼ ଦ୍ୱାରା ଜଗନ୍ନାଥଙ୍କ ବିଗ୍ରହ ପୋଡ଼ା ହୋଇଥିବା କଥା କହିଛନ୍ତି (Ain-i-Akbari, Vol-II, P-128. "Kalapahara, the general of sulayman karani of his conquest of the country flung the image into the fire and burnt it and afterwards cast it into the sea.") ।

୧୫୬୮ ଖ୍ରୀଷ୍ଟାବ୍ଦରେ ମୁସଲମାନ ସେନା ଭାରତର ଏକ ପ୍ରଧାନ ହିନ୍ଦୁଧର୍ମ ପୀଠ ''ଜଗନ୍ନାଥ ପୀଠ''ରେ ଥିବା ଶ୍ରୀମନ୍ଦିରରେ ପ୍ରବେଶ କରି ମହାପ୍ରଭୁଙ୍କ ବିଗ୍ରହମାନଙ୍କୁ ଧ୍ୱଂସ

କରିବାରୁ ସେମାନଙ୍କର ବହୁ ଦିନର ଅଭିଳାଷ ପୂର୍ଣ୍ଣ ହେଲା । ଏହା ଇସଲାମ୍ ଧର୍ମର ଏକ ବିପୁଳ ବିଜୟ ବୋଲି ମୁସଲମାନମାନେ ଗର୍ବ ଓ ଗୌରବ ଅନୁଭବ କଲେ ।

କିନ୍ତୁ ହିନ୍ଦୁମାନେ ସେମାନଙ୍କ ପ୍ରସିଦ୍ଧ ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ବିଗ୍ରହର ଧ୍ୱଂସ ସାଧନରେ ଅତ୍ୟନ୍ତ ଦୁଃଖାଭିଭୂତ, ବ୍ୟଥିତ ଓ ନିରାଶ୍ରୟ ହୋଇ ପଡ଼ିଥିଲେ । ଏହା ଓଡ଼ିଶା ତଥା ସମଗ୍ର ଭାରତ ବର୍ଷରେ ଚହଳ ପକାଇ ଦେଇଥିଲା (ଖୁରୁଧା ଇତିହାସ, ପୃ-୧୦) ।

ଓଡ଼ିଶାର ଏହି ଦୁର୍ଦ୍ଦିନରେ ରାମଚନ୍ଦ୍ର ଦେବ ପ୍ରଥମେ ଖୁରୁଧା ଅଞ୍ଚଳରେ ଏକ ଶକ୍ତିଶାଳୀ ରାଜ୍ୟ ପ୍ରତିଷ୍ଠା କରିବା ପାଇଁ ତତ୍ପର ରହିଥିଲେ ।

## ସୁଲେମାନଙ୍କ ଆକ୍ରୋଶର କାରଣ :

୧୫୫୩ ଖ୍ରୀଷ୍ଟାବ୍ଦ ପରେ ଭାରତରେ ମୋଗଲ ପଠାଣ ଓ ପଠାଣ ପଠାଣଙ୍କ ମଧ୍ୟରେ ରାଜନୀତି କ୍ଷେତ୍ରରେ ଅନବରତ ସଂଘର୍ଷ ଲାଗି ରହିଥିଲା । ସେଥିରେ ଅବସ୍ଥାଚକ୍ରରେ ମୁକୁନ୍ଦଦେବ ଲିପ୍ତ ହୋଇ ଯାଇଥିଲେ ।

୧ - ଇବ୍ରାହିମ ଖାଁ (ସୁର୍) ନାମକ ଜଣେ ଆଫଗାନ୍ ଯେ କି ମହମ୍ମଦ ଆଦିଲ ଶାହାଙ୍କୁ ତଡ଼ିଦେଇ ଦିଲ୍ଲୀର କିଛିଦିନ ବାଦଶାହା ହୋଇଥିଲେ, ସେ ପରେ ପରାସ୍ତ ହୋଇ ବଙ୍ଗ ଦେଶକୁ ଆସି ସେଠାକାର କ୍ଷମତା ଆଡ଼କୁ ଦୃଷ୍ଟି ଦେଲେ । ସେତେବେଳେ ବଙ୍ଗର ସୁଲତାନ ଥାଆନ୍ତି ସୁଲେମାନ କର୍‌ରାନୀ । ସୁଲେମାନ ତାଙ୍କୁ ନିଜର ପ୍ରତିଦ୍ୱନ୍ଦୀ ଭାବି ବନ୍ଦୀ କରିବାକୁ ଚେଷ୍ଟା କଲେ । ଇବ୍ରାହିମ ବଙ୍ଗରୁ ଖସି ଆସି ଓଡ଼ିଶାରେ ପହଞ୍ଚିଲେ । ତାଙ୍କ ଅନୁରୋଧରେ ମୁକୁନ୍ଦଦେବ ତାଙ୍କୁ ଆଶ୍ରୟ ଦେବା ସହ ଭରଣପୋଷଣର ବ୍ୟବସ୍ଥା କରିଦେଲେ । ସୁଲେମାନଙ୍କ ଆକ୍ରୋଶର ଯେ ହେଲା ପ୍ରଥମ କାରଣ । କାରଣ ସୁଲେମାନ କ୍ଷୁବ୍ଧ ହୋଇ ଇବ୍ରାହିମ୍‌ଙ୍କୁ ତାଙ୍କ ହାତରେ ଅର୍ପଣ କରିବା ପାଇଁ ମୁକୁନ୍ଦଦେବଙ୍କୁ କହିଲେ ମଧ୍ୟ ମୁକୁନ୍ଦଦେବ ଉକ୍ତ ଦାବୀକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ।

୨ - ବଙ୍ଗର ମୁସଲମାନମାନେ ରଘୁଭଂଜ ଛୋଟରାୟଙ୍କୁ ସାହାଯ୍ୟ କରି ମୁକୁନ୍ଦଦେବଙ୍କ ଦ୍ୱାରା ଦୟନୀୟ ଭାବରେ ପରାସ୍ତ ହେବା ହିଁ ଦ୍ୱିତୀୟ କାରଣ ।

୩- ମୁକୁନ୍ଦଦେବଙ୍କର ଆକବରଙ୍କ ସହ ମିତ୍ରତା ହିଁ ତୃତୀୟ କାରଣ । ଆକବର ସେତେବେଳେ ରାଜନୀତି ଦୃଷ୍ଟିରୁ ମୁକୁନ୍ଦଦେବ ହରିଚନ୍ଦନଙ୍କ କାନ୍ଧରେ ଚାବୁକ ଥୋଇବାକୁ ହିଁ ମିତ୍ରତା ସ୍ଥାପନ କରିଥିଲେ । ଯାର ପ୍ରଚ୍ଛଦପଟରେ ମୁଖ୍ୟ ଉଦ୍ଦେଶ୍ୟ ଥିଲା ବଙ୍ଗ ବିଜୟ । କାରଣ ଆକବର ସୁଲେମାନ୍‌ଙ୍କ ଆନୁଗତ୍ୟ ଉପରେ ସନ୍ଦେହ ପ୍ରକାଶ କରୁଥିଲେ ।

ଯେଥି ସହିତ ଆକବରଙ୍କର ଆଉ ଗୋଟିଏ ଉଦ୍ଦେଶ୍ୟ ଥିଲା ହୁମାୟୁନଙ୍କ ବିଶ୍ୱସ୍ତ କର୍ମଚାରୀ ଆଲିକୁଲି ଖାଁ, ଯେ କି ଆକବରଙ୍କ ବିରୋଧରେ ଯାଇ ବାରମ୍ବାର ପରାସ୍ତ ହୋଇଥିଲା । ସେ କିପରି ବଙ୍ଗ ସୁଲତାନ ସୁଲେମାନ କର୍‌ରାନୀ ସହିତ ମିଶି ନ ପାରନ୍ତି,

ତାହା ହିଁ ହୋଇଥିଲା । ମୁକୁନ୍ଦଦେବଙ୍କ ସହ ମିତ୍ରତା ସ୍ଥାପନ ଫଳରେ ଆଲିକୁଲି ଖାଁ ଓ ସୁଲେମାନଙ୍କର ସଂଯୋଗ ହୋଇ ପାରି ନଥିଲା । ମାତ୍ର ଯେଣେ କର୍‌ରାନୀ ଶତ୍ରୁରୂପେ ଯେତେବେଳେ ଓଡ଼ିଶା ଆକ୍ରମଣ କଲେ ଆକବରଙ୍କଠାରୁ କୌଣସି ସାହାଯ୍ୟ ମିଳିଲା ନାହିଁ ।

ଆକବର ଚିତୋର ଅଧିକାରରେ ବ୍ୟସ୍ତ ଥିବାବେଳେ ୧୫୬୭ ମସିହାରେ ସୁଲେମାନ ଦୁଇଟି ବାହିନୀ ନେଇ ଓଡ଼ିଶା ଆକ୍ରମଣ କଲେ । ଗୋଟିଏ ବାହିନୀ ସ୍ୱୟଂ ସୁଲେମାନଙ୍କ ନେତୃତ୍ୱରେ ଆକ୍ରମଣ କଲାବେଳେ ଅନ୍ୟ ଗୋଟିଏ ବାହିନୀ ସୁଲେମାନଙ୍କ ପୁତ୍ର 'ବାଇଜିଦ୍'ଙ୍କ ନେତୃତ୍ୱରେ ଆସିଲା । ଆଫଗାନ୍ ସେନାବାହିନୀ ମୟୁରଭଂଜ ଓ ଛୋଟନାଗପୁର ଜଙ୍ଗଲ ଦେଇ ଯୁଦ୍ଧଯାତ୍ରା ଆରମ୍ଭ କରିଥିଲେ । ମୁକୁନ୍ଦଦେବ ନିଜେ ଦୁର୍ଗରେ ରହି ଦୁର୍ଗାଭଂଜ ଓ ଛୋଟରାୟଙ୍କୁ ଲଢ଼ିବା ପାଇଁ ପଠାଇଲେ । ମାତ୍ର ବିଧିର ବିଡ଼ମ୍ବନା ଶତ୍ରୁର ଉତ୍‌କୋଚରେ ଯେ ଦୁହେଁ ଓଲଟି ଯାଇଁ ମୁକୁନ୍ଦଦେବଙ୍କ ବିରୋଧରେ ଗଲେ । ମୁକୁନ୍ଦଦେବ ବାଧ୍ୟ ହୋଇ ସନ୍ଧି କଲେ ସୁଲେମାନଙ୍କ ସହ । ମାତ୍ର ଡ଼ଃ ଭବାନୀ ଚରଣ ରାୟଙ୍କ ମତରେ ମୁକୁନ୍ଦଦେବ କୋଟସୀମା ଦୁର୍ଗରେ ଆଶ୍ରୟ ନେବାକୁ ବାଧ୍ୟ ହୋଇଥିଲେ । ଏହାପରେ ଦୁଇ ବିବଦମାନ ସମ୍ଭ୍ରାନ୍ତଶ୍ରେଣୀ ମଧ୍ୟରେ ଯେଉଁ ଯୁଦ୍ଧ ଲାଗିଗଲା ସେଥିରେ ମୁକୁନ୍ଦଦେବ ନିହତ ହୋଇଥିଲେ । (ମୋଗଲ- ଓଡ଼ିଶା ଇତିହାସ ଓ ସଂସ୍କୃତି, ପୃ-୯) । ସେତିକିବେଳେ ସୁଲେମାନଙ୍କ ପୁତ୍ର ବାଇଜିଦ୍‌ଙ୍କ ସଙ୍ଗେ 'କଳାପାହାଡ଼' ଆସିଥିଲେ ଓଡ଼ିଶା ଆକ୍ରମଣ କରିବାକୁ । ସେ ପ୍ରଥମେ ରଘୁଭଂଜ ଛୋଟରାୟଙ୍କୁ ହତ୍ୟା କରିଥିଲେ ।

## ମୁକୁନ୍ଦଦେବ କିଏ ?

ପୂର୍ବବର୍ଣ୍ଣିତ ମୁକୁନ୍ଦଦେବ ହିଁ ମୁକୁନ୍ଦ ହରିଚନ୍ଦନ । ମୁକୁନ୍ଦ ହରିଚନ୍ଦନ ଥିଲେ କଟକର ଗଭର୍ଣ୍ଣର ଗୋବିନ୍ଦ ବିଦ୍ୟାଧର (୧୫୦୪-୧୫୪୯)ଙ୍କ ସମୟରେ । ଗୋବିନ୍ଦ ବିଦ୍ୟାଧରଙ୍କ ପରେ ତାଙ୍କ ପୁଅ ଚକ୍ରପ୍ରତାପ ଦେବ (ଖ୍ରୀ.୧୫୪୯-୧୫୫୭) ରାଜ୍ୟ ଶାସନ କରିଥିଲେ । ତାଙ୍କ ପୁଅ ନରସିଂହ ଜେନା ପିତା ଚକ୍ରପ୍ରତାପଙ୍କୁ ହତ୍ୟାକରି (ଖ୍ରୀ. ୧୫୫୭-୧୫୫୮) ସିଂହାସନ ଆରୋହଣ କରିଥିଲେ । ଠିକ୍ ସେହି ସମୟରେ ମୁକୁନ୍ଦ ହରିଚନ୍ଦନ ନିଜ ଭାଇମାନଙ୍କ ସହ ଛଦ୍ମ ବେଶରେ ବାରବାଟୀ କିଲ୍ଲାରେ ପଶି ନରସିଂହ ଜେନାଙ୍କୁ ହତ୍ୟାକରି ତାଙ୍କ ଭାଇ ରଘୁରାମ ଜେନାଙ୍କୁ ୧୫୫୮ ଖ୍ରୀ.ରେ ସିଂହାସନରେ ବସାଇଥିଲେ । ୧୫୫୮ରୁ ୧୫୬୦ ମସିହା ପର୍ଯ୍ୟନ୍ତ ରଘୁରାମ ଜେନା ରାଜା ହେଲେ ମଧ୍ୟ ବସ୍ତୁତଃ ମୁକୁନ୍ଦ ହରିଚନ୍ଦନ ହିଁ ଶାସନ ଚଳାଉଥିଲେ ।

ପରେ ମୁକୁନ୍ଦ ହରିଚନ୍ଦନଙ୍କ କୌଶଳ ଜଣାପଡ଼ିବା ପରେ ଜନାର୍ଦ୍ଦନ ବିଦ୍ୟାଧର ଓ ରଘୁଭଂଜ ଛୋଟରାୟ ତାଙ୍କ ବିରୋଧରେ ଷଡ଼ଯନ୍ତ୍ର କରିଥିଲେ । ମାତ୍ର ଏହି ସିଂହାସନ ଲାଭର ତ୍ରିମୁଖୀ ସଂଗ୍ରାମରେ ମୁକୁନ୍ଦଦେବ ସେହି ଦୁଇଜଣଙ୍କୁ ବନ୍ଦୀ କଲେ । ଜନାର୍ଦ୍ଦନ ବିଦ୍ୟାଧର ବନ୍ଦୀ ଅବସ୍ଥାରେ ମୃତ୍ୟୁଲାଭ କରିଥିବା ବେଳେ ରଘୁରାମ ଜେନାଙ୍କୁ ମୁକୁନ୍ଦ ହରିଚନ୍ଦନ ହତ୍ୟା କରି ରାଜା ହୋଇଥିଲେ ୧୫୬୦ ମସିହାରେ ।

ମୁକୁନ୍ଦ ହରିଚନ୍ଦନ ୧୫୬୦ ମସିହାରେ ରାଜା ହୋଇ 'ମୁକୁନ୍ଦଦେବ' ନାମରେ ପରିଚିତ ହେଲେ । ସେ ଦାକ୍ଷିଣାତ୍ୟର ଚାଲୁକ୍ୟ ବଂଶୀ ଥିବାରୁ 'ତେଲେଙ୍ଗା ମୁକୁନ୍ଦଦେବ' ଭାବରେ ପରିଚିତ ମଧ୍ୟ ଥିଲେ ।

ତାଙ୍କରି ଅମଳରେ ବଙ୍ଗଳାରେ ସୁଲେମାନ କର୍‌ରାନୀଙ୍କ ମୁସଲମାନ ଶାସନ ଏବଂ ଦିଲ୍ଲୀରେ ଆକବରଙ୍କର ମୋଗଲ ଶାସନ । ମୋଗଲ ଓ ମୁସଲମାନମାନଙ୍କର ଚିର ଶତ୍ରୁତା ହିଁ ମୁକୁନ୍ଦଦେବଙ୍କୁ ଅଡୁଆ ପରିସ୍ଥିତିରେ ପକାଇଥିଲା । ମୋଗଲ ପ୍ରଶାସନ ମୁକୁନ୍ଦଦେବଙ୍କ ପକ୍ଷ ସମର୍ଥନ କରିବାରୁ ସୁଲେମାନ କର୍‌ରାନୀ କ୍ଷୁବ୍ଧ ହୋଇଥିଲେ ।

ସାରଙ୍ଗଗଡ଼ର (କେତେକଙ୍କ ମତରେ ବାରଙ୍ଗ) ସାମନ୍ତ ରାଜା ବିଶ୍ୱାସଘାତକ ରାମଚନ୍ଦ୍ର ଭଂଜ କୌଶଳ କ୍ରମେ ଶିଖି ମହାପାତ୍ର ଓ ମନାଇ ମହାପାତ୍ରଙ୍କୁ ଦୂତ କରି ପଠାଇ କଳାପାହାଡ଼କୁ ଆମନ୍ତ୍ରଣ କରି ଆସିଥିଲେ ଓଡ଼ିଶାକୁ । ରାମଚନ୍ଦ୍ର ଭଂଜ ଓଡ଼ିଶାର ରାଜା ବୋଲି ଦାବୀ କରିବାରୁ ମୁକୁନ୍ଦଦେବ ରାମଚନ୍ଦ୍ର ଭଂଜଙ୍କୁ କରାୟତ କରି ମୁସଲମାନମାନଙ୍କୁ ସାମନା କରିଥିଲେ ।

୧ - ଗୋଟିଏ ମତ ହେଲା ମୁକୁନ୍ଦଦେବ ଓ ରାମଚନ୍ଦ୍ର ଭଂଜ 'ଗୋହିରା ଟିକିରି'ଠାରେ ଯୁଦ୍ଧରେ ମୁସଲମାନଙ୍କ ଦ୍ୱାରା ପ୍ରାଣତ୍ୟାଗ କଲେ ।

୨ - ଆକବରନାମା ଅନୁଯାୟୀ ମୁକୁନ୍ଦଦେବ ଓ ଦୁର୍ଗାଭଂଜଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । ଏଥିରେ ଦୁର୍ଗାଭଂଜ ମୁକୁନ୍ଦଦେବଙ୍କୁ ହତ୍ୟା କରିଥିଲେ । ସେଇ ଦୁର୍ଗାଭଂଜ ହିଁ ରଘୁଭଂଜ (ଡ଼. ଜଗନ୍ନାଥ ପଟ୍ଟନାୟକ, ପ୍ରଜାତନ୍ତ୍ର ସାପ୍ତାହିକୀ, ଏପ୍ରିଲ-୧୯୯୨)

ମୁକୁନ୍ଦଦେବଙ୍କ ମୃତ୍ୟୁ ହେଲା ୧୫୬୮ ମସିହାରେ । ସେହି ବର୍ଷଠାରୁ ବଙ୍ଗଳାର ଆଫଗାନ ସୁଲତାନ ସୁଲେମାନ କର୍‌ରାନୀ ଓଡ଼ିଶା ଅଧିକାର କରିଥିଲେ । ସୁଲେମାନଙ୍କ ମୃତ୍ୟୁ ହେଲା ୧୫୭୨ ମସିହାରେ । ତାଙ୍କ ପରେ ଶାସକ ହେଲେ ତାଙ୍କ ପୁତ୍ର ବାୟାଜିଦ୍ ।

ବାୟାଜିଦ୍‌ଙ୍କ ପରେ ଦାଉଦ ହେଲେ ଶାସକ । ୧୫୭୬ରେ ଆକବରଙ୍କ ସେନାପତି ମୁନିମ୍ ଖାଁ ଦ୍ୱାରା ଦାଉଦ୍ ମୃତ୍ୟୁବରଣ କଲେ । ଏହାପରେ ମୋଗଲମାନଙ୍କ ଠାରୁ ପରାଜିତ ହୋଇ ସନ୍ଧି ସୂତ୍ରରେ କୁୟା ଖାଁ ଓ କୁତଲୁ ଖାଁ ଲୋହାନୀ ଓଡ଼ିଶାକୁ ଶାସନ କଲେ । ଦୁହେଁ ଥିଲେ ଆଫଗାନ । ଏହିପରି :

ସୁଲେମାନ କର୍‌ରାନୀ
|
ବାୟାଜିଦ୍
|
ଦାଉଦ
|
କୁୟା ଖାଁ
|
କୁତଲୁ ଖାଁ ଲୋହାନୀ

ପାଞ୍ଚଜଣ ଆଫଗାନ ଶାସକ ଓଡ଼ିଶାକୁ ଶାସନ କରିଥିଲେ । ଯେ ପାଞ୍ଚଜଣ ଯାକ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଲୁଣ୍ଠନ କରିଥିଲେ । ଏମାନଙ୍କର ଲୁଣ୍ଠନର ବିରବଣୀ ଗବେଷଣାକୁ ଅପେକ୍ଷା ରଖେ ।

**କଳାପାହାଡ଼ ଆକ୍ରମଣର କାରଣ :**

ଆଫଗାନ ସୁଲତାନ ସୁଲେମାନ କର୍‌ରାନୀଙ୍କର କଳାପାହାଡ଼ ଥିଲା ସେନାପତି । ସୁଲେମାନଙ୍କ ନିର୍ଦ୍ଦେଶରେ ହିଁ କଳାପାହାଡ଼ ଓଡ଼ିଶାରେ ଆକ୍ରମଣ ଓ ଲୁଣ୍ଠନ କରିଥିଲା । ପ୍ରଶ୍ନ ଉଠେ ଜଣେ ସେନାପତି ଭାବରେ ସୁଲତାନଙ୍କ ନିର୍ଦ୍ଦେଶକୁ ସେ ପାଳନ କରିଥିବ । ଏହା ସତ୍ୟ । ମାତ୍ର ଇତିହାସ କହେ ତାର ବ୍ୟକ୍ତିଗତ ଅସନ୍ତୋଷ ମଧ ରହିଥିଲା ଓଡ଼ିଶା ଆକ୍ରମଣ ଓ ଲୁଣ୍ଠନ କରିବାରେ । ସେ ବ୍ୟକ୍ତିଗତ ଅସନ୍ତୋଷ କଅଣ ?

କଳାପାହାଡ଼ର ଅନ୍ୟନାମ କାଳିଦାସ - ଗଜଦାନୀ । ଜାତିରେ ବ୍ରାହ୍ମଣ । ଅନ୍ୟ କେତେକଙ୍କ ମତରେ 'କାଲାଚାନ୍ଦ' । ସୁଲେମାନଙ୍କ ଝିଅ ଦୁଲାରୀଙ୍କ ପ୍ରେମରେ ପଡ଼ି ହିନ୍ଦୁ ସମାଜରୁ ସେ ଭ୍ରଷ୍ଟ ହୋଇ ଯାଇଥିଲା । ଯେ ପ୍ରେମ ବ୍ୟାପାର ଘଟିବା ପୂର୍ବରୁ କଳାପାହାଡ଼ର ଦୁଇଟି ହିନ୍ଦୁ ସ୍ତ୍ରୀ ଥିଲେ । ଦୁଲାରୀଙ୍କ ସହ ପ୍ରେମ ବ୍ୟାପାର, ପରେ ବିବାହରେ ରୂପାନ୍ତରିତ ହୋଇଛି । ମୁସଲମାନ ପ୍ରଥା ଅନୁଯାୟୀ କଳାପାହାଡ଼ ମୁସଲମାନ ଧର୍ମରେ ଦୀକ୍ଷିତ ହୋଇଛି । ପରବର୍ତ୍ତୀ କାଳରେ ଧର୍ମାନ୍ତରିତ ହେବା ଯୋଗୁଁ ସେ ଅନୁତପ୍ତ ହୋଇଛି । ହିନ୍ଦୁ ଧର୍ମକୁ ଫେରି ଆସିବାକୁ ଯଥାସାଧ ଚେଷ୍ଟା ବି କରିଛି । କିନ୍ତୁ ସଫଳ ହୋଇନାହିଁ ।

କିନ୍ତୁ କଳାପାହାଡ଼ର ଏଇ କାହାଣୀକୁ ଐତିହାସିକ ପ୍ରଭାତ ମୁଖାର୍ଜୀ ଅସ୍ୱୀକାର କରିଛନ୍ତି "The evidence of the muslim chronicles conclusively proves that Kalapahada was a full blooded Afgan and not a Brahmin renegrade."

କିନ୍ତୁ ସେ ଯାହା ହେଉନା କାହିଁକି ଯଦି କଳାପାହାଡ଼ ମୁସଲମାନ ଧର୍ମରୁ ଫେରିଆସି ହିନ୍ଦୁ ଧାରାରେ ପୁନଃ ମିଶିବାକୁ ଚାହିଁଥିବେ ସେତେବେଳେ ସେ ସଫଳ ନ ହୋଇଥିବା ସ୍ୱାଭାବିକ । ତାହା ହିଁ ବାସ୍ତବ ରୂପ ନେଇଥିଲା ।

ଜଗନ୍ନାଥ ମନ୍ଦିରେର ମୁଖ୍ୟ ହିସାବରେ ମୁକୁନ୍ଦଦେବଙ୍କୁ ସାହାଯ୍ୟ ମାଗିଲେ ହିନ୍ଦୁ ସମାଜକୁ ଫେରି ଆସିବା ପାଇଁ । କିନ୍ତୁ ପ୍ରତ୍ୟାଖ୍ୟାତ ହେଲେ । ହିନ୍ଦୁ ସମାଜର କଠୋର ନିୟମ ଦୃଷ୍ଟିରୁ ସେ ବିଫଳ ହୋଇ ହିନ୍ଦୁମାନଙ୍କ ବିରୁଦ୍ଧରେ ପ୍ରତିହିଂସା ପରାୟଣ ହୋଇ ଯାଇଥିଲେ । ତାହା ହିଁ ତାଙ୍କର ଚରିତାର୍ଥ ହୋଇଥିଲା ବାଇଜିଦ୍‌ଙ୍କ ସଙ୍ଗରେ ଓଡ଼ିଶା ଆକ୍ରମଣ କଲାବେଳେ ।

କଳାପାହାଡ଼ ପୁରୀ ଆକ୍ରମଣ କରିବା ପୂର୍ବରୁ ଜଗନ୍ନାଥଙ୍କୁ ସ୍ଥାନାନ୍ତର କରା ଯାଇଥିଲା । କଳାପାହାଡ଼ ଶ୍ରୀମନ୍ଦିର ଭିତରେ ପ୍ରବେଶ କରି 'ବାବନକୋଟି ଭଣ୍ଡାର' ଲୁଣ୍ଠନ କରିଥିଲା ବୋଲି କଥିତ ହୁଏ ।

'ବାବନକୋଟି ଭଣ୍ଡାର' ଶବ୍ଦ ଏକ ଉପଲକ୍ଷ୍ୟ ମାତ୍ର । ଯେଥିରୁ ପ୍ରକୃତ ସତ୍ୟ ହେଲା ସବୁଠାରୁ ଅଧିକ ଲୁଣ୍ଠନ କଳାପାହାଡ଼ କରିଥିଲା । ଅଧିକ ସୁନାରୂପା, ହୀରାନୀଳା,

ମୋତିମାଣିକ୍ୟ ନେଇ ଯାଇଥିଲା । ଆବୁଲଫାଜଲଙ୍କ 'ଆକବରନାମା'ରୁ ମଧ୍ୟ କଳାପାହାଡ଼ ଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ କରିଥିବାର ବର୍ଣ୍ଣନା ଉପଲବ୍ଧ ହେଉଛି ।

## କଳାପାହାଡ଼ର ବର୍ବର ଆକ୍ରମଣ :

'ମାଦଳା' ମତରେ ମୁସଲମାନମାନଙ୍କ ଆକ୍ରମଣ ଭୟରେ ଠାକୁରମାନଙ୍କୁ ଛପଲ୍ଲୀ ହାତୀପଡ଼ା ନେଇଯାଇ ସେଠାରେ ସେବକମାନେ ଲୁଚାଇ ରଖିଥିଲେ - ''ସେ ଦିନୁ କଟକରେ କେହି ରାଜା ରହି ନ ପାରିଲେ । ମୋଗଲପୀଡ଼ କରି ମାଡ଼ି ରହିଲେ । ପରୀକ୍ଷା ଦିବ୍ୟସିଂହ ପଟ୍ଟନାୟକେ ଠାକୁରଙ୍କୁ ଘେନିଗଲେ । ଏ ଗୋଳରେ ପରମେଶ୍ୱରଙ୍କୁ ଛପଲ୍ଲୀ ହାତୀପଡ଼ାରେ ପାତାଳି କରିଥିଲେ । ତହିଁକି ବୋଲି କଳାପାହାଡ଼ ଯାଇ ଠାବ କଲା । ମୁହାଣ ପାରି ହୋଇ ଗଲା । ଭେଉଁଆ କଢ଼ାଇ ଅଣ୍ଟାକ ପାଣିରେ ନେଲା । ସେଠାରୁ ପରମେଶ୍ୱରଙ୍କୁ ହାତୀରେ ପକାଇ ଆଣିଲା । ବାଉନକୋଟି ଭଣ୍ଡାର ସେଠାରେ ଜୁରକଲା । ବଡ଼ଦେଉଳ ଅଏଳାଶିରୀ ଯାଏ ଭଙ୍ଗାଇଲା । ଯେତେ ଦେବତାମାନ, ପିତୁଳାମାନ ସବୁକୁ ହିଁ ଖୁଣକଲା । କଳପବଟ ଖୋଳାଇ ପକାଇଲା । ଘୋଡ଼ା ନଣ୍ଡି ପୁରେଇ ନିଆଁ ଲଗାଇଲା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଗଙ୍ଗାକୂଳ ତଣ୍ଡାଯାଏ ନେଲା । କାଠକୁଢ଼ାଇ ଅଗ୍ନିରେ ପୁରେଇ ଜାଳିଦେଲା । ତେଣେ ପଠାଣର ଦେହ ଖଣ୍ଡ ଖଣ୍ଡ ହୋଇ ଫାଟିଲା । ଏହା ଶୁଣି ତାର ପୁଅ ଗଙ୍ଗାରେ ପରମେଶ୍ୱରଙ୍କୁ ମେଲିଦେଲା । ସେ ଦାରୁ ଭାସି ଆସନ୍ତେ ଅମୁରା ଗୋଟିଏ ଜାଳିକାଠ ବୋଲି ଧରି ତାହା ବାରିଲେ ପକାଇଲା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ନେବାବେଳେ ବିଶରମହାନ୍ତି ଯାଇଥିଲା । ବୈଷ୍ଣବ ହୋଇ ସାଙ୍ଗେ ଗୋଡ଼ାଇଲା । ଆଠମାସ ରହି ବାଦ୍ୟପଣ କରି ଦାରୁ ମାଗିଲା । ବ୍ରହ୍ମଖୋଳ କରି ମୃଦଙ୍ଗ ପୁରୋଇ ଘେନି ଅଇଲା କୁଜଙ୍ଗ ଗଡ଼ରେ ଆଣି ପ୍ରବେଶ କଲା । ଖଣ୍ଡାଏତ ଓଳିଆ ଉପରେ ଦୁଇ ଠାକୁରେ ରହିଲେ'' । (ମାଦଳାପାଂଜି)

କଳାପାହାଡ଼ ଆକ୍ରମଣ ଏକ ଲୋମହର୍ଷଣକାରୀ ସମ୍ବାଦ ରୂପେ ଯେତେବେଳେ ତଡ଼ିତ୍ ବେଗରେ ପ୍ରଚାରିତ ହୋଇଗଲା ସେବକମାନେ ଶ୍ରୀମନ୍ଦିରରୁ ଶ୍ରୀମନ୍ ମହାପ୍ରଭୁଙ୍କୁ ସ୍ଥାନାନ୍ତରିତ କରିନେଲେ ଚିଲିକା ହ୍ରଦ ଦିଗକୁ । ସେମାନେ ଚିଲିକା ମୁହାଁଣ ପାର କରାଇ ଛପଲି (ଆଧୁନିକ ଖେପଲି) ହାତୀପଡ଼ାରେ ଲୁଚାଇ ରଖିଥିଲେ । ଯେଉଁଠିକି କଳାପାହାଡ଼ ସହଜରେ ଯିବା ସମ୍ଭବ ନଥିଲା ।

ମାତ୍ର କୋକଲଗଡ଼ (ଗଡ଼କୋକଲ) ନାୟକ ଦାନପାତ୍ର ଏହି ଖବର ଜାଣିପାରି କଳାପାହାଡ଼କୁ ପାହାନ୍ତା ସମୟରେ ଚିଲିକା ମୁହାଁଣ ପାର କରାଇ ମହାପ୍ରଭୁଙ୍କୁ ଗୋପନରେ ରଖା ଯାଇଥିବା ସ୍ଥାନର ସନ୍ଧାନ ଦେଇ ଦେବାରୁ ଦାନପାତ୍ର ପାଇଥିଲେ **ପାହାନ୍ତାସିଂହ** ଉପାଧି । କଳାପାହାଡ଼ କେବଳ ଏଇ ଉପାଧି ଦେଇ ନଥିଲା । ଯେଥି ସହିତ ଦେଇଥିଲା 'ଚବିଶକୁଦ ଓ ରାହାଙ୍ଗ ଅଞ୍ଚଳର ଜାଗିରି'' । ଦାନପାତ୍ର ହୋଇଗଲେ 'ଦାନପାତ୍ର ପାହାନ୍ତାସିଂହ ଜାଗିରିଦାର ।' (ଉଦ୍ଧୃତ - ଖୋର୍ଦ୍ଧା ଇତିହାସର ଅନ୍ତରାଳେ) ।

କିନ୍ତୁ ମହାପ୍ରଭୁଙ୍କ ମାୟାରେ କଳାପାହାଡ଼ ଦ୍ୱାରା ଅପହୃତ ମହାପ୍ରଭୁଙ୍କ ଅର୍ଦ୍ଧଦଗ୍ଧ ବିଗ୍ରହରୁ 'ବ୍ରହ୍ମ' ପୁନଃ ରତ୍ନସିଂହାସନକୁ ଫେରି ଆସିଥିଲା ଗଙ୍ଗାନଦୀ କୂଳରୁ । ତାହା ବୈଷ୍ଣବ ବେଶଧାରୀ ବିଶର ମହାନ୍ତିଙ୍କ ଦ୍ୱାରା ହେଉ କି ବୈରାଗୀ ବେଶରେ ବଡ଼ ପଦ୍ମନାଭ ପଟ୍ଟନାୟକଙ୍କ ଦ୍ୱାରା ହେଉ । ଫେରି ଆସିଥିଲା ତାହା । ନବକଳେବର ଉତ୍ସବରେ ନୂତନ ଦାରୁବିଗ୍ରହରେ ପୁନଃ ସଂସ୍ଥାପିତ ହେଲେ ବ୍ରହ୍ମ । ଭୋଇବଂଶର ରାଜା ରାମଚନ୍ଦ୍ର ଦେବ (୧ମ)ଙ୍କ ସମୟରେ । ତାହା ପରେ ହିଁ 'ପାହାନ୍ତାସିଂହ' ଜୀବନର ଯବନିକା ପଡ଼ିଥିଲା । ରାମଚନ୍ଦ୍ର ଦେବ ଦାନପାତ୍ରର ବିଶ୍ୱାସଘାତକତା ପାଇଁ ଦେଇଥିଲେ ମୃତ୍ୟୁଦଣ୍ଡ ।

(ଚକଡ଼ାପୋଥି, ପୃ-୮)

ଏହାପରେ ଦାନପାତ୍ରର ସାନଭାଇ ବାଘୁପାତ୍ର, ଘୋରଡ଼ିଆର ଝାଡୁ ପରିଡ଼ା ଓ ମଳିପଡ଼ାଗଡ଼ର ସରଣିପାତ୍ର ରାଜାଙ୍କୁ ଯେ ଦିଗରେ ସାହାଯ୍ୟ କରିଥିବାରୁ

ବାଘୁପାତ୍ର ପାଇଲେ - ବାହୁବଳେନ୍ଦ୍ର ଉପାଧି ।
ଝାଡୁ ପରିଡ଼ା " - ମଙ୍ଗରାଜ "
ସରଣି ପାତ୍ର " - ହରିଚନ୍ଦନ "

ପରବର୍ତ୍ତୀ କାଳରେ ବାଘୁ ବାହୁବଳେନ୍ଦ୍ର କୋକଳଗଡ଼ର ନାୟକ ହେଲେ ।

(ଚକଡ଼ାପୋଥି, ପୃ-୯)

**କୋକଳଗଡ଼ାଧୀଶଙ୍କ ବଂଶାବଳୀ**

(ଖୋର୍ଦ୍ଧା ଇତିହାସର ଅନ୍ତରାଳେ ପୁସ୍ତକରୁ ଉଦ୍ଧୃତ)




ଐତିହାସିକ ଶ୍ରୀଫକୀର ହରିଚନ୍ଦନଙ୍କ ଲିଖିତ "ଖୋର୍ଦ୍ଧା ଇତିହାସର ଅନ୍ତରାଳେ ପୁସ୍ତକ ଅନୁଯାୟୀ ରାୟପିତାମ୍ ଉପାଧି ବିଷୟକ ଇତିହାସ ଅନ୍ୟତ୍ର ପ୍ରଦତ୍ତ ହୋଇଛି ।

ଉପରୋକ୍ତ ବର୍ଣ୍ଣନାରୁ ସ୍ପଷ୍ଟ ହୁଏ ଯେ ଶ୍ରୀଯୁକ୍ତ ଫକୀର ହରିଚନ୍ଦନ ମହାଶୟ ମାଦଳାପାଂଜି ଓ ଚକଡ଼ାପୋଥିକୁ ଅନେକାଂଶରେ ସମର୍ଥନ କରିଛନ୍ତି । ତାହା ଯଥାର୍ଥ ।

**କଳାପାହାଡ଼ର ଲୁଣ୍ଠନ :**

ପୂର୍ବରୁ ବର୍ଣ୍ଣିତ ହୋଇଛି ଓଡ଼ିଶାର ସ୍ୱାଧୀନରାଜା ତେଲେଙ୍ଗା ମୁକୁନ୍ଦଦେବଙ୍କ ସହିତ ସମ୍ରାଟ ଆକବରଙ୍କ ବନ୍ଧୁତ୍ୱ ଥିଲା । ଏହି ବନ୍ଧୁତ୍ୱ ଯୋଗୁ ବଙ୍ଗ ନବାବ ସୁଲେମାନଙ୍କର ଶକ୍ତିହ୍ରାସ ହୋଇଥିଲା । ସେ ଆକବରଙ୍କ ବଶ୍ୟତା ସ୍ୱୀକାର କରିଥିଲେ । ପରେ ନିଜେ ଶକ୍ତିଶାଳୀ ହେବାପରେ ଓଡ଼ିଶା ଆକ୍ରମଣ କଲେ । ସେତେବେଳକୁ ଆକବର ସାହାଯ୍ୟ କଲେନାହିଁ । ଏଣେ ମୁକୁନ୍ଦଦେବଙ୍କ ଶତ୍ରୁମାନେ ପ୍ରବଳ ଷଡ଼ଯନ୍ତ୍ର କଲେ । ଠିକ୍ ସେତିକିବେଳେ ବଙ୍ଗର ସୁଲେମାନଙ୍କର ସେନାପତି କଳାପାହାଡ଼ କଟକ ଆକ୍ରମଣ କରି କଟକ ଦୁର୍ଗ ଅଧିକାର କରିନେଲେ । ସେତେବେଳକୁ ମୁକୁନ୍ଦଦେବ କଟକରେ ନଥାନ୍ତି ।

କଟକ ଦୁର୍ଗ ଅଧିକାର ପରେ ଭୁବନେଶ୍ୱର, କୋଣାର୍କ ଏବଂ ପୁରୀ ଆକ୍ରମଣ କରି ମନ୍ଦିର ଏବଂ ବିଗ୍ରହମାନଙ୍କୁ ନଷ୍ଟ କରିବାରେ ଲାଗିଲେ ।

ମୁସଲମାନ ଲେଖକଙ୍କ ମତରେ - ପୁରୀ ସହରରେ ଗୋଟିଏ ମନ୍ଦିରରେ ତିରିଶି ମହଣ ସୁନାରେ ତିଆରି ଏକ ପ୍ରତିମା ଥିଲା । ଏହି ପ୍ରତିମାର ଆଖି ଦୁଇଟି ହୀରାର । ସୁନାରେ ତିଆରି ସାତମହଣ ପ୍ରତିମା ଏହି ମୂର୍ତ୍ତି ଚାରିପଟେ ରହିଥିଲା । ଏହା ସୈନ୍ୟମାନଙ୍କ ହାତରେ ପଡ଼ିଲା । ସୁଲେମାନଙ୍କ ସଙ୍ଗରେ ଯାଇଥିବା ଧାର୍ମିକ ସନ୍ଥମାନଙ୍କ କହିବା ଅନୁଯାୟୀ ପ୍ରତ୍ୟେକ ସୈନ୍ୟ ପ୍ରାୟ ମହଣେ ଓଜନର ସୁନାପ୍ରତିମା ଧରି ଆସିଥିଲେ । କିନ୍ତୁ ସର୍ବାପେକ୍ଷା ଆଶ୍ଚର୍ଯ୍ୟର ବିଷୟ ଯେ ଯେଉଁମାନେ ଏହି ଲୁଣ୍ଠନରେ ଯୋଗ ଦେଇଥିଲେ ସେମାନେ ପ୍ରତ୍ୟେକ ଦୁଃଖଯନ୍ତ୍ରଣା ଭୋଗ କରି ମୃତ୍ୟୁମୁଖରେ ପଡ଼ିଥିଲେ । (ଶ୍ରୀଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ, ପୃ-୧୮୩) । ଏହା ବ୍ୟତୀତ ଶ୍ରୀମନ୍ଦିର ଭଣ୍ଡାରରୁ କେତେ ଯେ ଧନ-ରତ୍ନ ଯାଇଥିବ ତାର ହିସାବ ନାହିଁ । କାରଣ ସୁଲେମାନଙ୍କ ସଙ୍ଗେ ୩୭ ଜଣ ମାତ୍ର ସୈନିକ ନଥିବେ । ନିଶ୍ଚୟ ଅଧିକ ଥିବେ । ୩୭ ଜଣ ସିନା ମହଣେ ଲେଖାଏଁ ସୁନା ନେଇ ୩୭ ମହଣ ସୁନା ନେଲେ ! ଅନ୍ୟମାନେ କେବେ ଖାଲି ହାତରେ ଫେରିନଥିବେ । ସେମାନେ ମଧ୍ୟ ଯଥାସାଧ ଧନ-ରତ୍ନ ନେଇଥିବେ ।

**କଳାପାହାଡ଼ର ଶେଷ ଅବସ୍ଥା :**

କଳାପାହାଡ଼ର ସମ୍ବଲପୁର ଆକ୍ରମଣକୁ ଐତିହାସିକ ଶିବପ୍ରସାଦ ଦାଶ ଅସ୍ୱୀକାର କରିପାରି ନାହାନ୍ତି । ସେ ସମ୍ଭାବନା କରିଛନ୍ତି ବଳଭଦ୍ର ଦେବଙ୍କ (୧୫୬୧ - ୧୫୯୧) ରାଜତ୍ୱ ସମୟରେ କଳାପାହାଡ଼ ସମ୍ବଲପୁର ଆକ୍ରମଣ କରିଥିଲେ । ଏପରିକି କଳାପାହାଡ଼ର ମୃତ୍ୟୁ ସମ୍ବନ୍ଧରେ କୌଣସି ଉଲ୍ଲେଖ ମିଳୁ ନଥିବାରୁ ସେ ସମ୍ବଲପୁରରେ ମରିଥିବେ ଯେଥିରେ ସତ୍ୟତା ଥାଇପାରେ । (ସମ୍ବଲପୁର ଇତିହାସ, ପୃ-୨୪୯)

ଯେଥିପାଇଁ ସମ୍ବଲପୁରରେ ପ୍ରଚଳିତ ଏକ କିମ୍ବଦନ୍ତୀକୁ ସେ ଉଦ୍ଧାର କରିଛନ୍ତି । ''କଳାପାହାଡ଼ ଓଡ଼ିଶା ଆକ୍ରମଣ କରିବାରୁ ପୁରୀର ପଣ୍ଡାମାନେ ଜଗନ୍ନାଥଙ୍କ ବିଗ୍ରହ ଆଣି ସମ୍ବଲପୁରର କିଛି ଦକ୍ଷିଣକୁ ମହାନଦୀ କୂଳରେ ପୋତି ରଖିଲେ । ସେମାନଙ୍କୁ ଅନୁଧାବନ କରି କଳାପାହାଡ଼ ସମ୍ବଲପୁର ନିକଟବର୍ତ୍ତୀ 'ଶଙ୍କରବନ୍ଧ'ଠାରେ ଶିବିର ସ୍ଥାପନ କଲେ । ସେଠାରେ ସମ୍ବଲପୁର ଦୁର୍ଗ ଅବରୋଧ କଲେ ।

ଶେଷରେ ସୋମଲାଈ ଗୌଡୁଣୀ ବେଶରେ କଳାପାହାଡ଼ ଶିବିରରେ ଦହିଦୁଧ ବିକ୍ରୀ କଲେ ଏବଂ ପାଟଣେଶ୍ୱରୀ ମାଲୁଣୀ ବେଶରେ ଫଳ ବିକ୍ରୀ କଲେ । ସେ ସବୁ ଖାଇ ସୈନ୍ୟମାନଙ୍କ ମଧ୍ୟରେ ବିସୂଚିକା ରୋଗ ଦେଖାଦେଲା । ଫଳରେ ସେନାମାନଙ୍କର କ୍ଷୟ ସାଧିତ ହେଲା । ଏହି ଅବସରରେ ସମ୍ବଲପୁର ସେନା କଳାପାହାଡ଼କୁ ତଡ଼ିଦେବାକୁ ବାହାରିଲେ । କଳାପାହାଡ଼ ସମ୍ବଲପୁରରେ ଏପରି ବିପନ୍ନ ଓ ଭୟାର୍ତ୍ତ ହୋଇପଡ଼ିଲେ ଯେ ନିଜର ଭେରୀ, ଘଣ୍ଟି ଓ ଘୁଲଘୁଲା ଛାଡ଼ି ପ୍ରାଣଘେନି ପଳାଇଲେ । ଉକ୍ତ ଭେରୀ, ଘଣ୍ଟି ଓ ଘୁଲଘୁଲା ଏବେ ସୋମଲାଈ ମନ୍ଦିରରେ ରକ୍ଷିତ ଅଛି । ଶଙ୍କରବନ୍ଧ ଠାରେ କଳାପାହାଡ଼ଙ୍କ ଅନେକ ସୈନିକଙ୍କର କବର ମଧ୍ୟ ଅଛି । କବି ପ୍ରହ୍ଲାଦ ଦୁବେ 'ଜୟଚନ୍ଦ୍ରିକା'ରେ କଳାପାହାଡ଼ ଆକ୍ରମଣ କଥା ଉଲ୍ଲେଖ କରିଛନ୍ତି ।

(''ଜୟଚନ୍ଦ୍ରିକା - ୧ମ-ଅ-

''ଜୟ ଜଗଦମ୍ବ ରାଜରାଜେଶ୍ୱରୀ ଭକ୍ତିବଶ୍ୟ ଭବଭୟହରନୀ,
ଚିତ୍ରୋତ୍ପଳା ଶୋମଦହବାସିନୀ କଳାପାହାଡ଼ ବିଦ୍ରନକରନୀ ।'')

ଅତଏବ କଳାପାହାଡ଼ର ସମ୍ବଲପୁର ଆକ୍ରମଣ ସତ୍ୟ, କିନ୍ତୁ ତାର ମୃତ୍ୟୁ ସମ୍ବଲପୁରଠାରେ ହୋଇ ନଥିବ । ସେ ପଳାୟନ କରିଥିଲା, କାରଣ ଡ଼ଃ ଭବାନୀଚରଣ ରାୟଙ୍କ ଲିଖିତ 'ମୋଗଲ ଓଡ଼ିଶା ଇତିହାସ ଓ ସଂସ୍କୃତି' ପୁସ୍ତକରୁ ଜଣାପଡୁଛି ୧୫୭୬ ଖ୍ରୀଷ୍ଟାବ୍ଦରେ 'ରାଜମହଲ'ଠାରେ ଏକ ବିରାଟ ଯୁଦ୍ଧ ଆକବରଙ୍କ ସୈନ୍ୟ ଓ ଆଫଗାନ୍‌ମାନଙ୍କ ମଧ୍ୟରେ ସଂଘଠିତ ହୋଇଥିଲା । ଯେଉଁ ଯୁଦ୍ଧରେ କ୍ଷତବିକ୍ଷତ ହୋଇ କଳାପାହାଡ଼ ପଳାୟନ କରିଥିଲା ।

ଆଫଗାନ୍ ମାନଙ୍କର ବିଦ୍ରୋହ ଓ ବେଖାତିର ମନୋବୃତ୍ତିରେ କ୍ଷୁବ୍‌ଧ ହୋଇ ଖାଁ-ଇ-ଜାହାନ୍ ତୋଡ଼ରମଲ୍ଲଙ୍କ ସହିତ ନିଜେ ଏହି ଯୁଦ୍ଧ ଅଭିଯାନ ଯୋଜନା ସ୍ଥିର କଲେ ଏବଂ ତଦନୁସାରେ ବଙ୍ଗଳା ଓ ବିହାରକୁ ଆଫଗାନ୍ ମାନଙ୍କୁ ବିତାଡ଼ିତ କରିବା ନିମନ୍ତେ ମୋଗଲ ସୈନ୍ୟବାହିନୀକୁ ପରାମର୍ଶ ଦିଆ ଯାଉଥିଲା । ଦାଉଦ ରାଜମହଲଠାରେ ସମ୍ରାଟଙ୍କ ସୈନ୍ୟବାହିନୀକୁ ଦୃଢ ପ୍ରତିରୋଧ କରିଥିଲେ । ବଙ୍ଗଳାର ସୈନ୍ୟମାନଙ୍କୁ ସାହାଯ୍ୟ କରିବା ପାଇଁ ଆକବରଙ୍କ ଦ୍ୱାରା ପ୍ରେରିତ ବିହାର ସୈନ୍ୟମାନେ ରାଜମହଲଠାରେ ୧୫୭୬ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୧୦ ତାରିଖ ଦିନ ପହଞ୍ଚିଲେ । ଦୁଇ ଦିନ ପରେ ଆଫଗାନ୍ ଏବଂ ମୋଗଲ

ସୈନ୍ୟମାନଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା । ଏଥିରେ ଆଫଗାନ୍‌ମାନେ ଶୋଚନୀୟ ଭାବରେ ପରାସ୍ତ ହେଲେ ଓ ତାଙ୍କର ପ୍ରାୟ ସମସ୍ତ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ହତ୍ୟା କରା ଯାଇଥିଲା । କମାଣଗୁଳା ବାଜିବାରୁ ଜୁନାଇଦ ନିହତ ହେଲେ, ଦାଉଦଙ୍କୁ ବନ୍ଦୀ କରାଗଲା ଏବଂ ସର୍ତ୍ତ ଭଙ୍ଗକାରୀ ଥିବାରୁ ତାର ଉପଯୁକ୍ତ ଦଣ୍ଡସ୍ୱରୂପ ତାଙ୍କ ଶିରଚ୍ଛେଦ କରାଗଲା । କେବଳ କଳାପାହାଡ଼ ଓ କୁତ୍‌ଲୁ ଲୋହାନୀ ପଳାୟନ କରି ରକ୍ଷା ପାଇଗଲେ । କିନ୍ତୁ କଳାପାହାଡ଼ କ୍ଷତବିକ୍ଷତ ହୋଇ ପଡ଼ିଥିଲେ । (ମୋ.ଓ.ଇ.ଓ ସଂ., ପୃ-୧୬-୧୭)

ଅତଏବ ଯେତେବେଳକୁ କଳାପାହାଡ଼ର ପତନ ବେଳ । ବଙ୍ଗର ଆଫଗାନ୍ ସୁଲତାନ ରାଜତ୍ୱର ଅନ୍ତିମ ସମୟ । ଯା ପରେ ସେ କେବେହେଲେ ସମ୍ବଲପୁର ଆକ୍ରମଣ କରି ନଥିବେ । ଏହି ଯୁଦ୍ଧ ପୂର୍ବରୁ ହିଁ ସମ୍ବଲପୁର ଆକ୍ରମଣ ହୋଇଥିଲା । ତେଣୁ ସମ୍ବଲପୁର ଠାରେ କଳାପାହାଡ଼ ନ ମରି 'ରାଜମହଲ'ରୁ କ୍ଷତବିକ୍ଷତ ହୋଇ ପଳାୟନ କରି ଏକ ଅଜ୍ଞାତବାସରେ ରହି ପ୍ରାଣତ୍ୟାଗ କରିଥିବ ।

ସମ୍ବଲପୁର ଇତିହାସ ବର୍ଣ୍ଣିତ ଜନଶ୍ରୁତି ଅନୁଯାୟୀ ପୁରୀରୁ ଜଗନ୍ନାଥଙ୍କୁ ପଣ୍ଡାମାନେ ନେଇ ସମ୍ବଲପୁରର ମହାନଦୀ କୂଳରେ ପୋତି ରଖିଥିବା ବିଶ୍ୱାସ ହେଉନାହିଁ । କାରଣ 'ମାଦଳାପାଂଜି' ଅନୁଯାୟୀ ଚିଲିକା ମୁହାଁଣ ପାରି କରାଇ 'ଛପଲ୍ଲୀ' ଆଧୁନିକ ଖେପଲି ହାତୀପଡ଼ାଠାରେ ଲୁଚାଇ ରଖିଥିଲେ । ଗଡ଼କୋକଲ ନାୟକ ଦାନପାତ୍ର ତାହା କଳାପାହାଡ଼କୁ ଜଣାଇ 'ପାହାନ୍ତାସିଂହ' ଉପାଧି ଓ ଜାଗିର ପାଇଥିଲା, ତାହା ବିଶଦ ଭାବରେ ପୂର୍ବରୁ ବର୍ଣ୍ଣିତ ହୋଇସାରିଛି ।

ତେଣୁ ମହାନଦୀ କୂଳରେ ସମ୍ବଲପୁରଠାରେ ପୋତା ଯାଇଥିବା ଜଗନ୍ନାଥ, ପୁରୀର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ନ ହୋଇ ଅନ୍ୟ କୌଣସି ମନ୍ଦିରର ହୋଇପାରନ୍ତି । ତାହା କଟକ ବିଡ଼ାନାସୀର କିମ୍ବା ସୋନପୁରର ଅଥବା ପାଟଣାଗଡ଼ର ହୋଇଥାଇ ପାରନ୍ତି । ଏହା ସମ୍ଭାବନା ମାତ୍ର । ହୁଏତ ଭବିଷ୍ୟତ ଗବେଷଣା କହିବ କେଉଁ ମନ୍ଦିରର ଜଗନ୍ନାଥ ସେଠାକୁ ଯାଇଥିଲେ । ଯଦି ପୁରୀର ବିଗ୍ରହ ହୋଇଥାନ୍ତି ତାହା ନକଲି ହୋଇଥାଇ ପାରନ୍ତି, ଯାହାକୁ ଗଙ୍ଗାକୂଳରେ କଳାପାହାଡ଼ ପୋଡ଼ିଥିଲା । ତେବେ ସେତେବେଳେ ପଣ୍ଡିତ ରଥଶର୍ମାଙ୍କ ମତ ସତ୍ୟ ବି ହୋଇପାରେ ଯେ ପ୍ରକୃତ ମହାପ୍ରଭୁଙ୍କ ବିଗ୍ରହ ସ୍ଥାନାନ୍ତର ହୋଇ ନଥିଲେ ।

**ଶ୍ରୀଜଗନ୍ନାଥଙ୍କ ସ୍ଥାନାନ୍ତର ପ୍ରସଙ୍ଗ :**

ପଣ୍ଡିତ ସଦାଶିବ ରଥଶର୍ମା କଳାପାହାଡ଼ ଆକ୍ରମଣ ସମ୍ବନ୍ଧରେ ତାଙ୍କର 'ଜଗନ୍ନାଥ ମହାପ୍ରଭୁ ଓ କଳାପାହାଡ଼' ଶୀର୍ଷକ ପ୍ରବନ୍ଧରେ ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି । କଳାପାହାଡ଼ର ଆକ୍ରମଣ ସମ୍ବନ୍ଧରେ ଆବୁଲଫଜଲ ପ୍ରକାଶିତ କରାଇଥିବା 'ଆକବର-ଇ-ନାମା' (୨ୟ ଖଣ୍ଡ, ୧୨୭ ପୃଷ୍ଠା) ଏବଂ ଏହାକୁ ଷ୍ଟାର୍ଲି ତାଙ୍କ ଇତିହାସର ୩ୟ ଖଣ୍ଡରେ

ସ୍ଥାନିତ କରିଥିବା ବିଷୟବସ୍ତୁକୁ ରଥଶର୍ମା ବିଶ୍ୱାସକୁ ନେଇ ନାହାଁନ୍ତି । ତାଙ୍କ ମତରେ ଯେଥିରେ ଅନେକ ଭୁଲ ତଥ୍ୟ ରହିଛି । ଯାହା ଲୋକ ଧାରଣାରେ ବହୁ ବର୍ଷ ଧରି ଉଦ୍‌ଜୀବିତ ରହିଛି ।

ଯେ ସଂକ୍ରାନ୍ତରେ ଏକ ତାଳପତ୍ର 'ଛାମୁ ଚିଟାଉ'କୁ ସେ ଆଲୋଚନା ପରିସରଭୁକ୍ତ କରିଛନ୍ତି । ଯେଥିରୁ ପ୍ରକାଶିତ କରିବାକୁ ଚେଷ୍ଟା କରିଛନ୍ତି ପ୍ରଭୁ ଜଗନ୍ନାଥ 'ଚିତାରୂଢ଼' ହୋଇନାହାଁନ୍ତି ।

**ଛାମୁ ଚିଟାଉ :**

ସାତସାହି ନାୟକ ଭୋଗପରିଛାଙ୍କୁ ଚିଟାଉ ଏହି କି ସାଲ ୯୭୫ ପହିଲିଭୋଗ ବେଳେ କଳାପାହାଡ଼ ବଡ଼ଦେଉଳ ଭଣ୍ଡାର ଲୁଟିବ ଏମନ୍ତ ସଂବାଦ ପାଇଁ ପରିଛା ଦିବ୍ୟସିଂହ ପଟ୍ଟନାୟକ ପ୍ରଭୁଙ୍କ ପାଖେ ଅଧିଆ ପଡ଼ିଥିବାକୁ ତୁମେ ବିମାନବଡୁ ମଧୁପଣ୍ଡା ମେରଦା ବଟମାଧବଙ୍କୁ କଳାଘାଟଦାର ବିଜେକୁ ଦେଇଥିବାକୁ ତୁମ୍ଭଙ୍କୁ ଗୋଡ଼ଧୂଆ କୁଣ୍ଡପାଖକୁ ତିନିବଖରା ମେରଦା ଭୋଗକୁ ଦେଲୁଁ । ଏଠାରେ କୁଜଙ୍ଗ ଷଣ୍ଢ ଗୁଦାର ସରଘର ମଧ ହୋଇବ । ଏହି ମତ ମେରଦା ମଧୁପଣ୍ଡାଙ୍କୁ ଅମଳ କରାଇବ, ରାମଚନ୍ଦ୍ର ଦେବ ମହାରାଜାଙ୍କ ୨ଅଙ୍କ ୧୩ ଦିନରୁ ୪୪୪ ୰ ମୁକୁନ୍ଦ ପଣ୍ଡାଙ୍କଠାରୁ ପ୍ରାପ୍ତ ଏହି ଚିଟାଉ .........।''

ଏହି ଚିଟାଉକୁ ଭିତ୍ତିକରି ସେ ମତ ଦିଅନ୍ତି ଯେ, ମନ୍ଦିରର ଆବରଣ ଦେବତା ବୋଇଲେ ଉପପୀଠ ବା ମନ୍ଦିରରେ ରହିବା ଅର୍ଚ୍ଚାମୂର୍ତ୍ତି । ସେମାନଙ୍କ ମଧ୍ୟରୁ କେହି ମେରଦାଘରେ ନାହାଁନ୍ତି । ତେଣୁ ବଟମାଧବାଦି ପ୍ରତିମା ଅର୍ଚ୍ଚାମୂର୍ତ୍ତି ରୂପରେ ନଥିଲେ, କେବଳ ଶୋଭମାନ ବିଗ୍ରହ ରୂପରେ ଥିଲେ । ତେଣୁ ତତ୍‌କାଳୀନ ପରିଛା ଓ କର୍ତ୍ତୃପକ୍ଷ ହଠାତ୍ ଦୁର୍ଦ୍ଧାନ୍ତ ଆକ୍ରମଣର ଖବର ପାଇ 'ଚିଟାଉ' ବର୍ଣ୍ଣିତ ବ୍ୟକ୍ତିଙ୍କଠାରୁ ଉକ୍ତ ଶୋଭମାନ ମୂର୍ତ୍ତିଗୁଡ଼ିକୁ ନେଇ କଳାଘାଟଦ୍ୱାର ନଣ୍ଡାବର୍ତ୍ତରେ ଚାନ୍ଦୁଆ ପ୍ରଭୃତି ଦେଇ ସଜାଇ ଦେଇ ଛଳ ବିଗ୍ରହମାନଙ୍କର ନିୟମ ସେବା ଚଳାଇ ରଖିଥିଲେ । ସେଇ ଗୋଡ଼ଧୂଆ କୁଣ୍ଡ ସେବକ ତଥା ଧୋବା ବଡୁସେବକ ମଧୁସୂଦନ ପଣ୍ଡାଙ୍କୁ ମେରଦାରେ ବିକଳ୍ପ ମୂର୍ତ୍ତି ରଖିବା ପାଇଁ ଉକ୍ତସ୍ଥାନ ଦାନ କରାଯାଇଛି ।

ଏହି ଅର୍ବାଚୀନ ଛାମୁ ଚିଟାଉକୁ ଭିତ୍ତିକରି ସେ କେତେଗୁଡ଼ିଏ ଯୁକ୍ତିଯୁକ୍ତ ପ୍ରମାଣ ଦେଇଛନ୍ତି । ତାହା ଅବିକଳ ଏଠାରେ ଉଦ୍ଧୃତ କରୁଛୁ ପାଠକ ମାନଙ୍କ ଅବଗତି ପାଇଁ । ସମସ୍ତ ଯୁକ୍ତି ଅକାଟ୍ୟ ମନେ ହେଉ ନାହିଁ । ସମସ୍ତ ଯୁକ୍ତି ଯେ ଭିତ୍ତିହୀନ ତାହା କହିହେଉ ନାହିଁ । ତେଣୁ କେତେକ ଯୁକ୍ତି ଗ୍ରହଣଯୋଗ୍ୟ ହୋଇପାରେ ।

୧- ଏତେବେଳକୁ ଗଙ୍ଗରାଜାଙ୍କ ପୂର୍ବବର୍ତ୍ତୀ କାଳର ସ୍ଥାପିତ ଅନୁଷ୍ଠାନ ବା ଭଟ୍ଟ ସାମନ୍ତମାନଙ୍କର ସଂଘ ବିଧିବଦ୍ଧ ନଥିଲେ ମଧ ଧାତାନୁଷ୍ଠାନ ଶଙ୍କରାଚାର୍ଯ୍ୟ ମଠ ଜଗନ୍ନାଥ ମନ୍ଦିର ବ୍ୟବସ୍ଥାପକ ଥିଲେ । ଯଦି କଳାପାହାଡ଼ ହିନ୍ଦୁ ହେବା ନିମନ୍ତେ ରାଜା ଓ ରାଜାନୁଗତ ସମଷ୍ଟି ନିକଟରେ ଦ୍ୱାରସ୍ଥ ହୋଇଥାନ୍ତା ତେବେ ଏ ସଂକ୍ରାନ୍ତରେ ଆଧ୍ୟାତ୍ମିକ ବିଚାର ବିମର୍ଷ ଲିପିବଦ୍ଧ ହୋଇଥାନ୍ତା; ଏପରି ବହୁ ବିବରଣୀ ଥିବାବେଳେ କଳାପାହାଡ଼ର ଆକ୍ରମଣ ଧନ

କେନ୍ଦ୍ରୀକ ଥିବା ହିଁ ମନେ କରାଯାଉଛି; କାରଣ କୌଣସି ମଠ ବା ସଂପ୍ରଦା କାଗଜାତ୍‌ରୁ ଏ ବିଷୟର ସମ୍ୟକ ସୂଚନା ମିଳୁନାହିଁ । ମୁକ୍ତିମଣ୍ଡପ ପଣ୍ଡିତ ସଭା ସେତେବେଳେ ସୃଷ୍ଟି ହୋଇ ନଥିଲା । ପରବର୍ତ୍ତୀ ଗଜପତି ରାମଚନ୍ଦ୍ର ଦେବଙ୍କ ସମୟରୁ ୧୬ ଶାସନ ଓ ତାହାର ପ୍ରତିଫଳ ସ୍ପଷ୍ଟ । ତେଣୁ ଧର୍ମାନ୍ତରୀତର ପ୍ରାୟଶ୍ଚିତ କର୍ମରୁ ହତାଶ ହୋଇଥିବାରୁ ସେ ପ୍ରଭୁଙ୍କୁ ବିଦ୍ରୁପ କରିବାକୁ ଆସିବା କାରଣ ନୁହେଁ । ଲୁଣ୍ଠନ ସହ ଦେବ ମନ୍ଦିର ଧ୍ୱଂସ ଉକ୍ତ ଆକ୍ରମଣକାରୀଙ୍କର ପାରଂପାରିକ ଉଦ୍ଦେଶ୍ୟ ଥିଲା ବିଗତ ବହୁ ବର୍ଷ ଧରି ।

୨- ସେତିକିବେଳକୁ ଲୁଣିମାରି ଜଗନ୍ନାଥ ମନ୍ଦିରର ବାଡ଼ ଦେଶ ବିକଳ ହୋଇ ସାରିଥିଲା ଓ ପଥରଖଣ୍ଡ ଖସିବାକୁ ଲାଗିଥିଲା; ବ୍ୟବହୃତ ହୋଇଥିବା ଲୁହା ବାଗିଆ ରୋକାର ଏହା ବିଷମୟ ପରିଣତି ଥିଲା । ଚୂନ ପଲସ୍ତରା ଛଡ଼ାଯିବାପରେ ବିକଳ ଅବସ୍ଥା ତତ୍‌କାଳରେ କିପରି ଅବସ୍ଥାରେ ପହଞ୍ଚିଥିଲା ତାହା ଏବେ ଦେଖିବାକୁ ମିଳୁଛି । ତେଣୁ କଳାପାହାଡ଼ର ଆକ୍ରମଣରୁ ଏହା ଭାଙ୍ଗିନାହିଁ । ଯଦି ହୋଇଥାନ୍ତା ମୁସଲମାନ ଧର୍ମର ପବିତ୍ର ପପୁର ପ୍ରତୀକ ବାରାହ ବା ନିଶା ବାରାହର ହାତ ଭାଙ୍ଗିବାକୁ ତାହାର ହାତ ଯାଇନଥାନ୍ତା, ତେଣୁ କଳାଘାଟ ଦ୍ୱାର ଛଡ଼ା ସେ ଅନ୍ୟ କୌଣସି ବେଢ଼ାମୂର୍ତ୍ତି ବା ବିଶିଷ୍ଟ ଅଂଶ ଖଣ୍ଡିତ କରିନାହିଁ ଏହା ନିଶ୍ଚିତ ।

୩- ସେତେବେଳକୁ ବାହାର ବେଢ଼ାର ମେଘନାଦ ପ୍ରାଚୀର ଆଂଶିକ ନିର୍ମିତ ହୋଇଥିଲା । ଉତ୍ତରଦ୍ୱାର ଓ ସିଂହଦ୍ୱାରପଟ ବ୍ୟତୀତ ଦକ୍ଷିଣ ଓ ପଶ୍ଚିମ ପଟ ଗୁମୁଟ ଓ ପ୍ରାଚୀର ବହୁ ବର୍ଷପରେ ପଞ୍ଜାବକେଶରୀ ରଣଜିତ ସିଂହ ବାହାଦୂରଙ୍କ ଦ୍ୱାରା ନିର୍ମିତ ହୋଇଥିବା ପଶ୍ଚିମ ଦ୍ୱାରସ୍ଥ ଖାଲସା ଶିଳାଲିପିରୁ ଜଣା ପଡୁଥିବାରୁ କଳାପାହାଡ଼ ପାଇଁ ମନ୍ଦିର ମଧ୍ୟରେ ପ୍ରବେଶ କରିବାକୁ ତେବେ କୌଣସି ଅସୁବିଧା ନଥିଲା ବା ଉକ୍ତ ଅନୁପ୍ରବେଶ ବେଳେ ତାହାଙ୍କୁ ସଂଘର୍ଷ କରିବାର ପ୍ରୟୋଜନ ପଡ଼ିନଥିବ । ପୁଣି ଏହି ଆକ୍ରମଣ ଯୋଜନାବଦ୍ଧ ଓ ଅଳ୍ପ ସମୟର ଘଟନା ଅଟେ, କାରଣ ବେଢ଼ା ବା ଚତୁଃପାର୍ଶ୍ୱବର୍ତ୍ତୀ କୌଣସି ମୂର୍ତ୍ତି ଖଣ୍ଡିତ ହେବାର ଦେଖାଯାଉ ନାହିଁ, ତେଣୁ ରତ୍ନ ସିଂହାସନ ନାମର ପ୍ରଲୋଭନ ଏହାର ମୂଳରେ ବିଦ୍ୟମାନ ଥିଲା ।

୪- ଯଦି କଳାପାହାଡ଼ ପରି ଲୁଣ୍ଠନ ତଥା ଧର୍ମୀୟ ଆକ୍ରମଣକାରୀ ଜଗନ୍ନାଥ ମନ୍ଦିର ମଧ୍ୟକୁ ଆସିଲେ ତେବେ ପ୍ରଭୁଙ୍କର ରତ୍ନଭଣ୍ଡାର ନିଶ୍ଚୟ ଲୁଣ୍ଠନ କରିଥାନ୍ତେ । ମାତ୍ର ତାହା ଆଦୌ ଘଟିନାହିଁ, କାରଣ ସଂପ୍ରତି ରତ୍ନଭଣ୍ଡାରରେ ଥିବା ବହୁମୂଲ୍ୟ ପ୍ରାଚୀନ ରତ୍ନଜଡ଼ିତ ଚାପ-ନାକୁଆସି ଆଦି ଖ୍ରୀଷ୍ଟୀୟ ୧୫ଦଶ ଶତାବ୍ଦୀର ବହୁ ପୂର୍ବବର୍ତ୍ତୀ । ଏହାମଧ୍ୟ ନିଶ୍ଚିତ ଯେ ରାମଚନ୍ଦ୍ର ଦେବ ଗଜପତିଙ୍କଠାରୁ ଆଜି ପର୍ଯ୍ୟନ୍ତ ଏପରି କୌଣସି ରାଜା ରାଜତ୍ୱ କରିନାହାନ୍ତି ଯେ ଏହି ମହାର୍ଘ୍ୟ ଅଳଙ୍କାର ଭଣ୍ଡାରରେ ରଖିପାରନ୍ତେ । ତେଣୁ ଏ ସମସ୍ତ ଗଜପତି ମହାରାଜାଧିରାଜ କପିଳେନ୍ଦ୍ର ଦେବଙ୍କର 'ପୁଣ୍ଡରିକ ଗୋପ' ବା ବିଜୟରୁ ପ୍ରାପ୍ତ ରତ୍ନାଳଙ୍କାର ଅଟେ, ଯାହାକୁ କଳାପାହାଡ଼ ଲୁଣ୍ଠନ କରିବାକୁ ଆସି ନିରାଶ ହୋଇଛି । ଖଟଶେଷ ଘର ମଝିରେ ରତ୍ନଭଣ୍ଡାର ଏପରି ଆକର୍ଷିତ ହୋଇନାହିଁ ଯେ ତାହାକୁ ଏବେ ମଧ୍ୟ କିଏ ଅତୁଳନୀୟ ସମ୍ପିଦସ୍ଥଳ ବୋଲି ମନେ କରିବ; ତେଣୁ ରତ୍ନ ଲୋଭରେ ରତ୍ନ ସିଂହାସନ ନାମଶୁଣି ମୁଖଶାଳା

ମଧ୍ୟରେ ଥିବା ରତ୍ନ ଭଣ୍ଡାରର ସନ୍ଧାନ ନପାଇ ତାହାର କ୍ରୋଧ ସେତେବେଳର ବିଜୟ ବିଜେପୀଠ ଆଡ଼କୁ ଯିବା ହିଁ ସ୍ୱାଭାବିକ ।

୫- ଖ୍ରୀ. ୧୫୬୮ର ସମସାମୟିକ ଉତ୍କଳର ସାଂସ୍କୃତିକ ସ୍ଥିତି ଆଡ଼କୁ ଦେଖିଲେ ଜଣାଯାଏ ସେତେବେଳେ ବହୁ କବି ପଣ୍ଡିତ ଓଡ଼ିଶାର ମୂଲ୍ୟବାନ୍ ସାହିତ୍ୟ ରଚନା କରିଛନ୍ତି । ଜଗନ୍ନାଥଙ୍କ ପରି ହୃଦୟ ସର୍ବସ୍ୱପ୍ରଭୁ, ଯବନ ହାତରେ ଚିତାରୂଢ଼ ହୋଇଥିଲେ ତାହା ନିଶ୍ଚିତ ରୂପେ ସମକାଳୀନ କବି ଜଗନ୍ନାଥ ଦାସ, ବଳରାମ ଦାସ, କବି ଶ୍ରୀଚନ୍ଦନ, ବାଇଧରଦ୍ୱିଜ ଦେବ ଦୁର୍ଲଭ ଦାସଙ୍କ ପର୍ଯ୍ୟନ୍ତ ବହୁକବି ଯେଉଁମାନେ କି ଜଗନ୍ନାଥଙ୍କ ବିଷୟରେ ଲେଖିଥିଲେ ତାହାଙ୍କ ଲେଖାମାନରେ ପ୍ରକାଶ ପାଇଥାନ୍ତା । କୌଣସି ଲେଖାରେ ବା ଜନଶ୍ରୁତିରେ ଏ ବିଷୟ, ଏପରିକି ତ୍ରମାନେ ମାଦଳାରେ ମଧ୍ୟ ପ୍ରକାଶ ପାଉନଥିବାରୁ ତଥା କଳାପାହାଡ଼ର ଏହି ଅପକୃତ୍ୟ ସଚେତନ ସମାଜରେ ଆଲୋଚିତ ହୋଇ ନଥିବାରୁ ଏପରି ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିନାହିଁ ବା ଘଟିଥିଲେ ତାହାର କାରଣାଦି କବିମାନଙ୍କୁ ଜଣାଥିଲା । ଏପରି ପ୍ରତୀତ ହେଉଛି । ତେଣୁ ଜାଣି ଜାଣି ଏ ମର୍ମନ୍ତୁଦ ଘଟନାକୁ କୃତି ମଧ୍ୟରେ ପ୍ରକାଶ କରିନାହାନ୍ତି ।

୬- ଠିକ୍ ସେତିକିବେଳେ ପୁରୀର ଦମାୟତ ପଞ୍ଚରାମାନନ୍ଦୀ ବଡ଼ ଆଖଡ଼ା, ବାଘ ଆଖଡ଼ା, ଖାକି ଆଖଡ଼ା ପ୍ରଭୃତି ମଠମାନ ସୃଷ୍ଟି ହୋଇଥିଲା ଯେଉଁମାନେ ହନୁମାନଙ୍କର ଉପାସକ ରୂପରେ ବଳବତ୍ତର ଥିଲେ । ସେତେବେଳେ ମୋଗଲ ଆକ୍ରମଣବେଳେ ବିଶେଷତଃ ଜଗନ୍ନାଥଙ୍କ ରକ୍ଷା ନିମନ୍ତେ ମନ୍ଦିର ଚତୁଃପାର୍ଶ୍ୱରେ ନିଶ୍ଚିତ ପ୍ରତିରୋଧ ହୋଇଥାନ୍ତା, ସେପରି କୌଣସି ପ୍ରମାଣ ନ ମିଳୁଥିବାରୁ ଏହି ଲୁଣ୍ଠନାତ୍ମକ ଆକ୍ରମଣ ହଠାତ୍ ହୋଇ ସେବକ, ଭକ୍ତଗଣଙ୍କର ଯୋଜନାନୁସାରେ ପଣ୍ଡ ହୋଇଛି, ତେଣୁ ଏହାକୁ ନାଗା ସନ୍ନ୍ୟାସୀମାନେ ଗୁରୁତ୍ୱ ଦେଇନାହାନ୍ତି, ଅର୍ଥାତ୍ ଆକ୍ରମଣକାରୀର ଉଦ୍ୟମକୁ ପଣ୍ଡ କରିବାରେ ଏମାନେ ସଂପୃକ୍ତ ଥିବା ହିଁ ବିଦିତ ହେଉଛି ।

୭- ଏ ଦିଗରେ ଆହୁରି ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ- ଦର୍ଶନମାତ୍ରେ ଦୃଷ୍ଟିପଥାରୂଢ଼ ହେଉଛି, ତାହା ହେଉଛି କଳାଘାଟ ଦ୍ୱାରର ସପ୍ତବନ୍ଧ ବା କାରୁକାର୍ଯ୍ୟର 'ଧ୍ୱଂସସାଧନ'' । ସେହିପରି ସପ୍ତବନ୍ଧ ତାହାର ସମ୍ମୁଖଦ୍ୱାର ବା ଜୟବିଜୟ ଦ୍ୱାରର ସଂପୂର୍ଣ୍ଣ ଅକ୍ଷୁର୍ଣ୍ଣ ରଖିଦେଇ କଳାପାହାଡ଼ କଳାଘାଟ ଦ୍ୱାରର ସପ୍ତବନ୍ଧକୁ ଖଣ୍ଡ ବିଖଣ୍ଡ କଲେ କାହିଁକି ? ଏହାର ଏକମାତ୍ର କାରଣ ହେଇପାରେ ସେହି ଦ୍ୱାରରେ ଏପରି କିଛି ଘଟିଥିବ ଯାହା ଫଳରେ ଆକ୍ରମଣକାରୀର ମୁଖ୍ୟଦୃଷ୍ଟି ସେହିଠାରେ ହିଁ ନିବଦ୍ଧ ରହିଥିଲା ଓ ତାହାକୁ ଭାଙ୍ଗିବା ତାହାଙ୍କର ଆବଶ୍ୟକତା ପଡ଼ିଥିଲା ।

୮- ଏଠାରେ ଗୋଟିଏ ଶଙ୍କା କଳାପାହାଡ଼ ସିଂହାସନ ପର୍ଯ୍ୟନ୍ତ ଯାଇଥିବା ଅନୁମାନକୁ ପୁଷ୍ଟ କରୁଛି ତାହା ହେଉଛି ସିଂହାସନରେ ବୀରକିଶୋର ଦେବଙ୍କ ଓଡ଼ିଆଲେଖ ବା ସାମାନ୍ୟ ଶିଳାଲିପି । ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ନିମ୍ନଦେଶରେ ଏହି ଲିପିଥିବା ଦୃଷ୍ଟିରୁ କୁହା ଯାଇପାରେ ଯେ

କଳାପାହାଡ଼ ସିଂହାସନ ପର୍ଯ୍ୟନ୍ତ ଯାଇ ପ୍ରଭୁଙ୍କୁ ନେଇ ସିଂହାସନ ଭାଙ୍ଗି ଦେଇଥିଲେ । ତେଣୁ ବୀରକିଶୋର ଦେବ ପ୍ରଥମ ତାହା ପରେ ପୁନର୍ନିର୍ମାଣ କରାଇଥିଲେ । ମାତ୍ର ନିର୍ମାଣକଳା ଦୃଷ୍ଟିରୁ ଏହା ମହାରାଷ୍ଟ୍ରକାଳୀନ ନୁହେଁ, ବହୁ ପୂର୍ବବର୍ତ୍ତୀ ଅଟେ । ବୀରକିଶୋର ଦେବ ରାଜା ମୂର୍ତ୍ତି ତଳରେ ଆପଣାର ନାମ ଖୋଦନ ମାତ୍ର କରାଇଛନ୍ତି ତତ୍କାଳୀନ କର୍ତ୍ତୃତ୍ୱବଳରେ । ଏପରି ବହୁସ୍ଥାନରେ ତାଙ୍କର ନାମ ଦେଖିବାକୁ ମିଳେ । କୋଳବେଦୀ ମୂର୍ତ୍ତି ମଧ୍ୟରେ ଏକ ଚକ୍ରରେ ସେପରି ଧାଡ଼ିକିଆ ଲିପି ମଧ୍ୟ ଦେଖାଯାଏ । ତେଣୁ ଏ ଲିପି ପ୍ରମାଣ କରୁନାହିଁ ଯେ ସିଂହାସନ ବୀରକିଶୋରଙ୍କ ଦ୍ୱାରା ନିର୍ମିତ ଏହାର ସାକ୍ଷ ପ୍ରାଚୀନ କନକ ମୁଣ୍ଡାଇ ଓ ପୂର୍ବକାଳୀନ ଚାରୁକଳା ।

୯- ସିଂହାସନରେ ସ୍ୱର୍ଣ୍ଣମୟୀ ମହାଲକ୍ଷ୍ମୀ, ରଜତମୟୀ ବିଶ୍ୱଧାତ୍ରୀ ମୂର୍ତ୍ତି ବିରାଜିତା । ଏକ ଲୋଲୁପି ଆକ୍ରମଣକାରୀର ନିମନ୍ତେ ଦାରୁମୂର୍ତ୍ତିଠାରୁ ସେମାନଙ୍କର ମୂଲ୍ୟ ଅଧିକ ! ମାତ୍ର ଭଣ୍ଡାରରେ ଥିବା ପୂର୍ବବର୍ତ୍ତୀ ମୂର୍ତ୍ତି ଓ ସିଂହାସନର ପ୍ରାଚୀନ ମୂର୍ତ୍ତି ଦେଖିଲେ ଜଣାଯାଉଛି ତାହା ଲୁଣ୍ଠକର ହସ୍ତକୁ ଯାଇନାହାନ୍ତି । ତାପରେ ପ୍ରଭୁଙ୍କର ମୂଲ୍ୟବାନ ରତ୍ନଚିତା ତ୍ରୟ ଯାହା ପୃଥିବୀର ଶ୍ରେଷ୍ଠରତ୍ନରେ ନିର୍ମିତ ତାହା କଳାପାହାଡ଼ର ଆକ୍ରମଣରେ କୌଣସି ରାଜଶକ୍ତି କରାଇବାରେ ସକ୍ଷମ ହୋଇ ନ ପାରନ୍ତି ତେଣୁ ସେ ପ୍ରାଚୀନତମ କଳାର ରତ୍ନଚିତା, ରାହୁରେଖ ଅବିକଳ ଥିବାବେଳେ ସିଂହାସନ ପର୍ଯ୍ୟନ୍ତ ସେ ଯାଇ ନାହାଁନ୍ତି ଏହା ନିଶ୍ଚିତ ପରି ଜଣାପଡ଼େ ।

୧୦- ଏ ଦିଗରେ ଅନ୍ୟତମ ଧାରଣା ହେଉଛି ପ୍ରଭୁଙ୍କ ପରି ଓଜନଦାର ମୂର୍ତ୍ତିକୁ ବହନ କଳା ନ ଜାଣି ଯେତେଲୋକ ହୁଅନ୍ତୁ ନା କାହିଁକି ଦେଉଳ ମଧ୍ୟରୁ ହାତୀ ଉପରକୁ ଉଠାଇବା ସମ୍ଭବ ନୁହେଁ । ଶ୍ରୀଜଗନ୍ନାଥ ମୂର୍ତ୍ତିଙ୍କ ଗଠନ ଏପରି ନୁହେଁ ଯେ 'ପହଣ୍ଡି' ପଦ୍ଧତି ବ୍ୟତୀତ ତାଙ୍କୁ କିଏ ନେଇପାଇ ପାରିବ । ତେଣୁ କ୍ଷୁଦ୍ରମୂର୍ତ୍ତି ବା ୮୧ ଯବରୁ କ୍ଷୁଦ୍ର ବିକଳ୍ପ ମୂର୍ତ୍ତିକୁ କଳାପାହାଡ଼ ନେଇଥାଇ ପାରେ ।

୧୧- ଏଠାରେ ଗଡ଼କୁଜଙ୍ଗ ତଥା ବିଶରମହାନ୍ତିଙ୍କ ପ୍ରସଙ୍ଗ ସାମାନ୍ୟତଃ ଆଲୋଚନା ମଧ୍ୟକୁ ଆସିବା ପ୍ରୟୋଜନ ଅଛି । କୁଜଙ୍ଗର କିମ୍ବଦନ୍ତୀ ଓ ପ୍ରାମାଣିକ ଇତିହାସ କହନ୍ତି ବିଶର କରଣ ତିନିମୂର୍ତ୍ତିଙ୍କ ବ୍ରହ୍ମ ବା ଦାରୁଖଣ୍ଡକୁ କଟକ ଦେଇ ଆଣିବାବେଳେ ଚନ୍ଦନ ମହାପାତ୍ର ଅଧିକାରୀ କଟକ ଉପାନ୍ତ (ନୂଆବଜାର) ଶିବାଳୟରେ ରହୁଥିଲେ । ବିଶର କରଣଙ୍କୁ ଜଗନ୍ନାଥଙ୍କ ବ୍ରହ୍ମଦାରୁଙ୍କୁ ସେ କୁଜଙ୍ଗ ନେଇ ଯିବାକୁ କହିଲେ । ସେ କୁଜଙ୍ଗ ରାଜ୍ୟର ଗୁରୁ ଥିବାରୁ ତାହା ହିଁ ହେଲା ଓ ସମୁଦ୍ର କୂଳରେ କୁଞ୍ଜବିହାରୀ ଯେଉଁଠାରେ ଅଛନ୍ତି ସେଠାରେ ବ୍ରହ୍ମଦାରୁ ରହିଲେ । ତାଙ୍କର ରକ୍ଷା ନିମନ୍ତେ ପୁରୀର ଦରିଆ ହନୁମାନଙ୍କ ନ୍ୟାୟରେ ଦରିଆ ହନୁମନ୍ତ ରହିଲେ । ଏ ସମୟରେ ଦାରୁ କୁଜଙ୍ଗରେ ଥିବା ଖବର ଖୋର୍ଦ୍ଧା ରାଜା ପାଇ ଜଗନ୍ନାଥଙ୍କ ମୂଳଦାରୁ ସେଠାରେ ରହିବା ସଙ୍ଗତ ନୁହେଁ ବୋଲି ଷଣ୍ଢ ରାଜାଙ୍କୁ ଜଣାଇଲେ । ମାତ୍ର କୁଜଙ୍ଗ ରାଜା ମନା କରି ଦେଲେ । ତେଣୁ ମୁକୁନ୍ଦଦେବ (ରାମଚନ୍ଦ୍ରଦେବ ?) କୁଜଙ୍ଗ

ରାଜ୍ୟ ଉପରେ ଚଢ଼ାଉ କଲେ । ମାତ୍ର କୁଜଙ୍ଗ ରାଜ୍ୟ ଲୋକେ ଦୁର୍ବଳ ଗଜପତିଙ୍କୁ ଗାଈ, ଆପଣା ରାଜାଙ୍କ ଷଣ୍ଢ କହି ପ୍ରତିରୋଧ କଲେ, ଫଳରେ ସନ୍ଧି ହେଲା । ସୁଭଦ୍ରାଙ୍କୁ ଛାଡ଼ି ଅନ୍ୟମୂର୍ତ୍ତି ଆଣି ମେରଦାରେ ରଖାଇଲେ । ଏବେ ମଧ୍ୟ କୁଜଙ୍ଗରେ ଡ଼ମାଳି ଅଛି -

ହାଇ କି ମନ ବାଇ

ଖୋର୍ଦ୍ଧା ଗାଈ ବତର ପଡ଼ିଛି

କୁଜଙ୍ଗ ଷଣ୍ଢଙ୍କ ପାଇଁ ।

ତେଣୁ ବିଶର କରଣ ବଟ-ମାଧବଙ୍କ ଅର୍ଦ୍ଧଦଗ୍ଧ ଦାରୁ ଆଣି ତାହାର ଅଂଶ ରଖି କୁଜଙ୍ଗ ରାଜାଙ୍କ ଦ୍ୱାରା ଚନ୍ଦନ ଅଧିକାରୀଙ୍କର ବ୍ୟବସ୍ଥାନୁଯାୟୀ ପୂଜା କରୁଥିଲେ । ତାହା ଯଦି ପ୍ରଭୁ ଜଗନ୍ନାଥାଦିଙ୍କର ବହୁମୂଲ୍ୟମୟ, ଦେବଦୁର୍ଲଭ ବ୍ରହ୍ମ ପଦାର୍ଥ ହୋଇଥାନ୍ତା, ତେବେ କୁଜଙ୍ଗ ହେଉ ବା କେଉଁ ରାଜ୍ୟ ହେଉ ତାହାକୁ ରଖିବାକୁ ସମର୍ଥ ବା ଇଚ୍ଛୁକ ହୋଇ ନଥାନ୍ତେ । ତେଣୁ ତାହା ବଟମାଧବ ବିଗ୍ରହଙ୍କର ଦାରୁ ଥିଲା ଓ ପବିତ୍ର ବସ୍ତୁ ଥିଲା । ଯଦି ବିଶର କରଣ ଯୁଗ ଯୁଗ ଧରି ଗୋପନୀୟ ବ୍ରହ୍ମଙ୍କୁ ଦେଖିଥାନ୍ତେ ତେବେ ଜଗନ୍ନାଥଙ୍କ ମଧ୍ୟର ବ୍ରହ୍ମ ପଦାର୍ଥ ବୋଲି କେଉଁ ବସ୍ତୁ ତାହା ପ୍ରକଟ ହୋଇଥାନ୍ତା । ମାତ୍ର ତାହା ପ୍ରକଟ ହୋଇ ନଥିବାରୁ ତାହା ବ୍ରହ୍ମଦାରୁ ହେବ । ମାତ୍ର ପ୍ରଭୁଙ୍କ ବ୍ରହ୍ମ ପଦାର୍ଥ ନଥିଲା ।

୧୨- ଏହା ପରେ ନୀତି ଦୃଷ୍ଟିରୁ ସମ୍ୟକ ବିଷୟାନୁଶୀଳନ ସମୁଚିତ ଅର୍ଥାତ୍ ଶ୍ରୀମନ୍ଦିରରେ ଥରେ ଶ୍ରୀଭାଷ୍ୟକାର 'ରାମାନୁଜ' ସଂସ୍କାର ଆଣିବା ନିମନ୍ତେ ମକରସଂକ୍ରାନ୍ତିର ପୂର୍ବଦିନ ଲେପସଂସ୍କାର କରିଥିଲେ । ତାହାର ସ୍ମୃତିରେ ମକରସଂକ୍ରାନ୍ତି ପୂର୍ବଦିନ ଅଳାଶ୍ରୀ ଧଉଳା ହେଉଛି । ହନୁହାଡ଼ ଚଢ଼େଇଗୁହାରେ ଯବନ ଆକ୍ରମଣ ଭୟରେ ଲୁଚାଇ ରଖିବା ବେଳେ ମହାପ୍ରସାଦ ନୈବେଦ୍ୟ ବନ୍ଦ ହୋଇଥିବା ହେତୁ ନାନା ବିଚାର ବିମର୍ଶ ପରେ ଯେଉଁ ଦିନ ପ୍ରଥମେ ପୁନଃ ପ୍ରଚଳନ ହେଲା ସେ ଦିନ ଉତ୍ସବ ଅନୁଷ୍ଠିତ ହେଉଛି ସ୍ମୃତିରକ୍ଷା ନିମନ୍ତେ । ଥରେ ଚକ୍ର ଉଡ଼ିଗଲା ତୋଫାନରେ ଯେଉଁଦିନ ସ୍ଥାପନ ହେଲା ତାହାର ପ୍ରତୀକ ଚକ୍ରବୁଲା ଏକାଦଶୀରେ ଚକ୍ର ବୁଲୁଛନ୍ତି । ଭୀଷଣ (କଲେରା) ମହାମାରୀ ହେତୁ ଲୋକଙ୍କ ମନରେ ଆତ୍ମବଳ ବଢ଼ାଇବାକୁ ନୃସିଂହ ବୁଲିଥିଲେ । ଏବେ ବାଡ଼ିନୃସିଂହ ପ୍ରତିବର୍ଷ ବୁଲୁଛନ୍ତି, ଏପରି ବହୁନୀତି ସ୍ମାରକ ସମ୍ପଦ ପରି ରହିଥିବା ବେଳେ କଳାପାହାଡ଼ ନେଇଗଲା ପରେ ଯେତେବେଳେ ମୂର୍ତ୍ତି ବସିଲେ ଓ ରାମଚନ୍ଦ୍ର ଦେବ ସମାରୋହ କଲେ ସେହି ଅକାଳ କଳେବର ଦିବସ ପାଳିତ ହେଉନାହିଁ କିପରି ? ତେଣୁ କଳାପାହାଡ଼ ସିଂହାସନସ୍ଥିତ ବିଗ୍ରହମାନଙ୍କୁ ନେଇଛନ୍ତି ବୋଲି କୁହା ଯାଇପାରେ । ପୁଣି ସମୟରେ ଜଗନ୍ନାଥଙ୍କ ସ୍ଥାନାନ୍ତରିତ ଦିଗରେ ସାହାଯ୍ୟ କରିବା ସ୍ୱର୍ଣ୍ଣପୁର ବିନକାର ସାମନ୍ତଙ୍କୁ 'ମହାନାୟକ' ସେବା ପ୍ରଦତ୍ତ ହୋଇଥିବା ସ୍ଥଳେ, ଆଠଗଡ଼ ମେରଦାରେ ଶ୍ରୀମୂର୍ତ୍ତିଙ୍କୁ ରଖାଇଥିବା ହେତୁ ଟିକାଲି ହରିଚନ୍ଦନଙ୍କୁ ଶରଣପଂଜର ଭାଇ ଜଗଦେବ ପଦବୀ ଦେଇ ମହାଦୀପ ସିଦ୍ଧି ପ୍ରଦତ୍ତ ହୋଇଛି । ପଦବୀ ଦେବାବେଳେ ମହାନାୟକ ସେବାରେ

ନାନା ବ୍ୟକ୍ତିଙ୍କୁ ଏହି କାରଣରୁ ସମ୍ମାନିତ କରିବା ବେଳେ ଯଦି ତ୍ରିମୂର୍ତ୍ତିଙ୍କର ବ୍ରହ୍ମ ରଖିବାକୁ କୁଜଙ୍ଗ 'ମହାନାୟକ' ସିଦ୍ଧି ପାଇଥାନ୍ତେ ତେବେ ଉକ୍ତ ବିଷୟକୁ ଗୁରୁତ୍ୱ ଦିଆ ଯାଇଥାନ୍ତା । ମାତ୍ର ତାହା ହୋଇନାହିଁ ।

ଉପରୋକ୍ତ ବାରଟି ବିନ୍ଦୁକୁ ଉପସ୍ଥାପନ କରି ପଣ୍ଡିତ ମହାଶୟ ଶେଷ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, କଳାପାହାଡ଼ର ଏକମାତ୍ର ଲକ୍ଷ୍ୟ ଜଗନ୍ନାଥ ମନ୍ଦିର, ଏହା ଜାଣିପାରି ରାଜା କଟକରୁ ପରିଛାଙ୍କୁ ଖବର ପଠାଇଛନ୍ତି । ପରିଛା ସ୍ଥାନାନ୍ତର କରିବାକୁ ସମୟ ନପାଇ କଳାଘାଟ ଦ୍ୱାରର ନଣ୍ଡାବର୍ତ୍ତ ଉପରେ ନକଲି ମୂର୍ତ୍ତିଙ୍କୁ ବସାଇ ଥିଲେ । ମହାପ୍ରଭୁ ପୂର୍ବପରି ରତ୍ନସିଂହାସନ ଉପରେ ବିଜେ ରହିଥିଲେ । କଳାପାହାଡ଼ 'ଅଣସରପିଣ୍ଡି'କୁ ରତ୍ନ ସିଂହାସନ ମନେ କରି ମୂର୍ତ୍ତିଙ୍କୁ ଅକ୍ତିଆର କରି କଳାଘାଟ ଦ୍ୱାରର ରମଣୀୟ ସପ୍ତବନ୍ଧକୁ ନିର୍ମମ ଭାବରେ ଭାଙ୍ଗି ଦେଇଥିବ । ଅବଶ୍ୟ ଏହା ସେ ସମ୍ଭାବନା କରିଛନ୍ତି ।

କିନ୍ତୁ ପଣ୍ଡିତ ମହାଶୟଙ୍କ ଯେ ସମ୍ଭାବନାକୁ ଗ୍ରହଣ କରିନେବା ସହଜସାଧ୍ୟ ନୁହେଁ । କାରଣ ବିନ୍ଦୁଗୁଡ଼ିକ ତର୍ଜମା କଲେ ଅନେକ ସଂଶୟ ଉନ୍ମୋଚନ ହେଉନାହିଁ । ଯଦିଓ ଏକ ଅର୍ବାଚୀନ 'ଛାମୁ ଚିଟାଉ'କୁ ଆଧାର କରି ଚିଟାଉର ନିର୍ଯାସ ସ୍ୱରୂପ ସେ ଅନେକ ସମ୍ଭାବନା କରିଛନ୍ତି । ତଥାପି ଯେ ସବୁ ସମ୍ଭାବନାକୁ ସିଦ୍ଧାନ୍ତ ରୂପେ ଗ୍ରହଣ କରିବାକୁ ଆଉ କିଛି ବଳିଷ୍ଠ ଯୁକ୍ତି ଆବଶ୍ୟକ ହେଉଛି । କିନ୍ତୁ ଯା ବୋଲି ପଣ୍ଡିତ ମହାଶୟଙ୍କର ବିନ୍ଦୁଗୁଡ଼ିକ ଯେ ଅଯୌକ୍ତିକ ସେଥିରେ ପ୍ରାସଙ୍ଗିକତା ନାହିଁ ତାହା ଆଦୌ କହିହେବ ନାହିଁ ।

ପ୍ରଥମ ବିନ୍ଦୁରେ ସେ କହୁଛନ୍ତି ଯଦି କଳାପାହାଡ଼ ହିନ୍ଦୁହେବା ନିମନ୍ତେ ରାଜାଙ୍କ ନିକଟରେ ଦ୍ୱାରସ୍ଥ ହୋଇଥାନ୍ତେ, ତେବେ ଜଗନ୍ନାଥ ମନ୍ଦିରର ତତ୍‌କାଳୀନ ବ୍ୟବସ୍ଥାପକ ଶଙ୍କରାଚାର୍ଯ୍ୟ ମଠ ଥିବାରୁ ଆଧ୍ୟାତ୍ମିକ ବିଚାର ବିମର୍ଶ ଲିପିବଦ୍ଧ ଥାନ୍ତା । ବର୍ତ୍ତମାନର ବ୍ୟବସ୍ଥାପକ ସଭା 'ମୁକ୍ତିମଣ୍ଡପ ପଣ୍ଡିତ ସଭା' ସେତେବେଳେ ନଥିଲା । ତାହା ସତ୍ୟ । ମାତ୍ର କଳାପାହାଡ଼ ରାଜାଙ୍କ ଦ୍ୱାରସ୍ଥ ହୋଇଥିବେ । ରାଜବାଟୀରେ ଥିବା ପଣ୍ଡିତ ସଭା ତାର ବ୍ୟବସ୍ଥା ଦେଇ ଥିବେ । ରାଜବାଟୀ ପୁରୀରେ ନଥିଲା । ତେଣୁ କଟକ ରାଜବାଟିର ଅନେକ କାଗଜାତ୍ ନ ମିଳିଲା ପରି ଆଧ୍ୟାତ୍ମିକ ବିଚାର ବିମର୍ଷର କାଗଜାତ୍ ମିଳୁନାହିଁ । ଯେଥିରେ ଆଶ୍ଚର୍ଯ୍ୟ ହେବାର ନାହିଁ । କାଗଜାତ୍ ମିଳୁନାହିଁ ବୋଲି କଳାପାହାଡ଼ ହିନ୍ଦୁ ହେବା ପାଇଁ ରାଜାଙ୍କ ଦ୍ୱାରସ୍ଥ ହୋଇ ନଥିଲା ବୋଲି କହିହେବ ନାହିଁ । ଶଙ୍କରାଚାର୍ଯ୍ୟ ମଠର ଅବସ୍ଥା ସେୟା । ହୁଏତ ଶଙ୍କରାଚାର୍ଯ୍ୟ ମଠ ପକ୍ଷରୁ ବ୍ୟବସ୍ଥା ଦିଆ ଯାଇଥିବ ମାତ୍ର ମଠର ଅନେକ କାଗଜାତ୍ ଉପଲବ୍‌ଧ ନ ହେବା ପରି ଯେ ସଂପର୍କୀୟ କାଗଜାତ୍ ମିଳୁ ନଥିବ ।

ଚତୁର୍ଥ ବିନ୍ଦୁରେ ପଣ୍ଡିତ ମହାଶୟ ମତ ଦେଇଛନ୍ତି ଯେହେତୁ ୧୫ଶ ଶତାବ୍ଦୀର ପୂର୍ବବର୍ତ୍ତୀ 'ଚାପ ନାକୁଆସୀ' ରହିପାରିଛି ସେହେତୁ କଳାପାହାଡ଼ ଦ୍ୱାରା ଲୁଣ୍ଠନ ହୋଇନାହିଁ । କଳାପାହାଡ଼ ପରେ ଆଉରି ବହୁବାର ଲୁଣ୍ଠନ ହୋଇଛି ତେବେ ବି ଚାପ-ନାକୁଆସୀ ଯେବେ ବି ଅଛି । ତା ଅର୍ଥ କ'ଣ ପ୍ରମାଣ ମିଳୁଥିବା ଲୁଣ୍ଠନ ଗୁଡ଼ିକୁ ଆମେ ମିଛ ବୋଲି କହିବା ?

ଚାପ-ନାକୁଆସି ଗଢ଼େଇ ନେବା କ'ଣ ସମ୍ଭବ ନୁହେଁ ନା ବଣିଆ ନଥିଲେ ? ରାଜା କେବଳ ଜଗନ୍ନାଥ ଭଣ୍ଡାରକୁ ବୃଦ୍ଧି କରାଉଥିଲେ ଅନ୍ୟମାନେ କରୁନଥିଲେ କହିହେବ ନାହିଁ । ସେବକ ସମ୍ପ୍ରଦାୟ ମଧ୍ୟ ବିଶେଷ ଅନୁଷ୍ଠାନ ମାନଙ୍କରେ ଜଗନ୍ନାଥଙ୍କୁ ଭେଟି ଦିଅନ୍ତି । ସେଠ, ସାହୁକାର ଅନ୍ୟାନ୍ୟ ଜମିଦାରମାନେ ହୀରାଲୀଳା ଭେଟିଦେବାର ଅନେକ ଦୃଷ୍ଟାନ୍ତ ମଧ୍ୟ ରହିଛି । ତେଣୁ ପ୍ରାଚୀନ ରତ୍ନଜଡ଼ିତ ଚାପ-ନାକୁଆସି ଅକ୍ଷୁର୍ଣ୍ଣ ରହିଥିବାରୁ କଳାପାହାଡ଼ ଯେ ଲୁଣ୍ଠନ କରିନାହିଁ କହିହେବ ନାହିଁ । ବିଗ୍ରହ ସ୍ଥାନାନ୍ତର ବେଳେ ସେବକମାନେ ତାହା ପ୍ରଭୁଙ୍କ ଦେହରୁ ନିଶ୍ଚୟ ଓହ୍ଲାଇ ଦେଇଥିବେ ଏବଂ ତାହା ସୁରକ୍ଷିତ ରଖି ପରେ ପ୍ରଭୁଙ୍କୁ ପିନ୍ଧାଇଥିବେ । ସେବକମାନେ ପ୍ରଭୁଙ୍କୁ ଏହିମାନି ଦୃଷ୍ଟିରେ ଯେବେ ବି ଦେଖୁଛନ୍ତି । ଯେମିତି ପ୍ରଭୁ ତାଙ୍କର, ସେ ପ୍ରଭୁଙ୍କର ।

ଠିକ୍ ଏହିପରି ଏକ ଶଙ୍କା ନବମ ବିନ୍ଦୁରେ ପଣ୍ଡିତ ମହାଶୟ ଉଠାଇଛନ୍ତି ସିଂହାସନରେ ବିରାଜିତା ସ୍ୱର୍ଣ୍ଣମୟୀ ମହାଲକ୍ଷ୍ମୀଙ୍କୁ ଲକ୍ଷ୍ୟ କରି । ଏବଂ ପ୍ରଭୁଙ୍କର 'ରତ୍ନଚିତା'କୁ ଲକ୍ଷ୍ୟ କରି । ଏହା ମଧ୍ୟ ପାଠକମାନେ ପୂର୍ବାଲୋଚନାରୁ ଅବଗତ ହୋଇ ସାରିବେଣି । ଚର୍ବିତ ଚର୍ବଣ ଅନାବଶ୍ୟକ ।

ପଞ୍ଚମ ବିନ୍ଦୁରେ ପଣ୍ଡିତ ମହାଶୟଙ୍କ କହିବା କଥା ତତ୍‌କାଳୀନ କବି (ଯେଉଁମାନଙ୍କ ନାମ ସେ ଲେଖିଛନ୍ତି)ମାନଙ୍କ ଲେଖନୀରେ ଯେ ଘଟଣା ପ୍ରକାଶ ପାଇନାହିଁ । ତାହା ଠିକ୍ । ମାତ୍ର ସେଇ କବିମାନଙ୍କ ସମୟରେ କେବଳ କ'ଣ କଳାପାହାଡ଼ ଆକ୍ରମଣ କରିଥିଲା । ନାଁ, ଅନେକ ଆକ୍ରମଣ ଘଟିଥିଲା ! ଲୁଣ୍ଠନ ବି ହୋଇଥିଲା । ଯାହା ପ୍ରାମାଣିକ । ସେ ସବୁ ବି ସେଇ କବିମାନେ ପ୍ରକାଶ କରିନାହାଁନ୍ତି । ତା ବୋଲି କ'ଣ ପ୍ରାମାଣିକ ଅନ୍ୟାନ୍ୟ ଲୁଣ୍ଠନକୁ ଆମେ ଅସ୍ୱୀକାର କରିପାରିବା !

ଦଶମ ବିନ୍ଦୁ ଓ ଏକାଦଶ ବିନ୍ଦୁ ସେପରି ବଳିଷ୍ଠ ଓଜନଦାର ପ୍ରାମାଣିକ ବିନ୍ଦୁ ନୁହେଁ । ଯାହା ଆଲୋଚିତ ହୋଇଛି ପଣ୍ଡିତ ମହାଶୟଙ୍କ ଲେଖନୀରେ, ତାହା ଏକଦମ ଅସମ୍ଭବ କହିହେବ ନାହିଁ । ବିଗ୍ରହଙ୍କୁ କୌଣସି ପ୍ରକାରେ ଉଠାଇ ନେବା ଅସମ୍ଭବ ନୁହେଁ । ବିଶରମହାନ୍ତି ଜଗନ୍ନାଥ ଧାରାର ସଚ୍ଚା ବୈଷ୍ଣବ ଦୃଷ୍ଟିକୋଣରୁ ସେ ପ୍ରକାଶ ନ କରିବା ଅସମ୍ଭବ ନୁହେଁ ।

ଦ୍ୱାଦଶ ବିନ୍ଦୁ ମଧ୍ୟ ନିରାଧର ମନେ ହୁଏ । କାରଣ ଶ୍ରୀମନ୍ଦିର ସହିତ ଜଡ଼ିତ ସମସ୍ତ ଘଟଣାବଳୀର ସ୍ମୃତି ପାଳିତ ହେଉନାହିଁ । ଅନେକ ଥର ପ୍ରଭୁ ସିଂହାସନ ଛାଡ଼ି ପୁଣି ଫେରିଛନ୍ତି । ସବୁ ଫେରିବା ଦିନ ସ୍ମୃତି ହୋଇ ପାଳିତ ହେଉନାହିଁ । ଯଦି ବି ପାଳିତ ହେଉଥିବ ତାହା କାଳକ୍ରମେ ଲୋପ ବି ହୋଇ ଯାଇଥିବ । ଅନେକ ସ୍ମୃତି ବିଜଡ଼ିତ ଉତ୍ସବ ଏବଂ ସେବା ଲୋପ ପାଇଗଲା ପରି । ଦୋଳବେଦୀ ଉପରେ ଗଜପତିଙ୍କର ଛେରାପହଁରା ଯାହା ବନ୍ଦ ଥିଲା ଯେବେ ଆରମ୍ଭ ହୋଇଛି । ସ୍ୱୟଂ ଜଗନ୍ନାଥ ବିଗ୍ରହ ଦୋଳବେଦୀକୁ ଯାଉଥିଲେ ଯେବେ ବନ୍ଦ ହୋଇ 'ଚଳନ୍ତି ବିଗ୍ରହ' ଯାଉଛନ୍ତି । ଦତ୍ତମହାପାତ୍ରଙ୍କର 'ଅଧରପୋଛା' ସେବା ବନ୍ଦ ହୋଇଗଲା ପରି । ଯେଉଁଠି ବ୍ରହ୍ମ ପଦାର୍ଥ ଶ୍ରୀକ୍ଷେତ୍ରକୁ ଆଣିବାକୁ କୁଜଙ୍ଗ ରାଜାଙ୍କ ସହ ଯୁଦ୍ଧ ହୋଇଛି

ସେଠି ଗଜପତି ସେ ରାଜାଙ୍କୁ ପଦପଦବୀ ଦେଇ ସମ୍ମାନିତ କରିବାର ଚିନ୍ତାଧାରା ସୃଷ୍ଟି ହୋଇ ନଥିବ । ଯେଉଁ ରାଜା ଓ ଜମିଦାର ମାନେ ସମ୍ମାନିତ ହୋଇଛନ୍ତି ଗଜପତିଙ୍କ ଦ୍ୱାରା ସେମାନେ ଭକ୍ତି-ଭାବ-ପ୍ରେମ-ସହଯୋଗ-ସୌହାର୍ଦ୍ଦ୍ୟରେ ଗଜପତିଙ୍କ ସହ ସର୍ବୋପରି ପ୍ରଭୁଙ୍କ ସହ ଅନୁବନ୍ଧିତ ହୋଇଥିବେ । ଯୁଦ୍ଧ ଡାକରାରେ ପୁଣି ସନ୍ଧି ସମ୍ପାଦନରେ ସେ ସବୁ ''ଯୋଗୀ ଘରେ ଡ଼ିଙ୍କି'' ଖୋଜିଲା ପରି ହେବ ।

ଅତଏବ କଳାପାହାଡ଼ ଆକ୍ରମଣରେ ପ୍ରଭୁ ଯେ ସ୍ଥାନାନ୍ତରିତ ହୋଇନାହାଁନ୍ତି, 'ଛାମୁ ଚିଟାଉ' ଅନୁସାରେ ପ୍ରଭୁ ରତ୍ନସିଂହାସନରେ ସୁରକ୍ଷିତ ରଖାଯାଇ କଳାପାହାଡ଼ ଦ୍ୱାରା ନକଲି ବିଗ୍ରହ ରଖାଯାଇ କଳାପାହାଡ଼ଙ୍କୁ ଠକାଯାଇ [illegible] ନିର୍ବିବାଦ ହେବା ପାଇଁ ଆଉରି କିଛି ପ୍ରମାଣ ଆବଶ୍ୟକ ମନେ ହେଉନି । [illegible] ପଙ୍କ୍ତିକୁ ଦେଖିଲେ -

ଶ୍ରୀଯୁକ୍ତ ଫକୀର ହରିଚନ୍ଦନ ମହାଶୟ 'ଖୋର୍ଦ୍ଧା ଇତିହାସର ଅନ୍ତରାଳେ' ପୁସ୍ତକରେ ଶ୍ରୀଜଗନ୍ନାଥଙ୍କ ସ୍ଥାନାନ୍ତର ସମ୍ବନ୍ଧରେ ଆଲୋଚନା କରିଛନ୍ତି । ସେ 'ଚକଡ଼ାପୋଥି' ଓ ଅନ୍ୟାନ୍ୟ କାଗଜାତ୍‌କୁ ଭିତ୍ତିକରି ସ୍ୱମତ ଉପସ୍ଥାପନ କରିଛନ୍ତି । କଳାପାହାଡ଼ ଆକ୍ରମଣ କାଳରେ ମହାପ୍ରଭୁ ଯାଇଥିବା ସ୍ଥାନ ଏବଂ ମହାପ୍ରଭୁଙ୍କ ସମ୍ପର୍କରେ କଳାପାହାଡ଼କୁ ସମ୍ବାଦ ଦେଇଥିବା ଗଡୁଆ ଦାନପାତ୍ର ତଥା ତାର ଉପାଧି ଓ ଜାଗିର ପ୍ରଭୃତିର ସବିଶେଷ ବିବରଣୀକୁ ହେୟ ଜ୍ଞାନ କରାଯାଇ ନପାରେ । ଶ୍ରୀ ହରିଚନ୍ଦନଙ୍କ ଉପସ୍ଥାପନାକୁ ଅପ୍ରାମାଣିକ ତଥା ଅଣଐତିହାସିକ ଭାବେ ବିହିତ କରିବା ସହଜ ମଧ୍ୟ ମନେ ହୁଏ ନାହିଁ । ପ୍ରସଙ୍ଗ ଦୃଷ୍ଟିରୁ ସେଗୁଡ଼ିକ ପାଠକମାନଙ୍କ ଅବଗତି ନିମନ୍ତେ ପୂର୍ବରୁ ସଂଯୋଜିତ କରାଯାଇଛି ।

**ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ପୁନଃ ପ୍ରତିଷ୍ଠା :**

ଶ୍ରୀଜଗନ୍ନାଥଙ୍କ ପୁନଃ ପ୍ରତିଷ୍ଠା ସମ୍ବନ୍ଧରେ ମାଦଳାପାଂଜି ବିବରଣୀକୁ କେଦାରନାଥ ମହାପାତ୍ର ବିଶ୍ୱାସଯୋଗ୍ୟ ମାନିଛନ୍ତି । ଚକଡ଼ାପୋଥିରେ ବର୍ଣ୍ଣିତ ବିଷୟବସ୍ତୁ ଯଦିଓ ମାଦଳାପାଂଜି ବର୍ଣ୍ଣିତ ବିଷୟ ସହିତ ସଂପୂର୍ଣ୍ଣ ମେଳ ଖାଉନାହିଁ ତଥାପି ଏହା ଗ୍ରହଣୀୟ ।

କାରଣ କୁଜଙ୍ଗରୁ ବ୍ରହ୍ମ ଆଣିବା ଭକ୍ତଙ୍କ ନାମ ବିଶର ମହାନ୍ତି ନାଁ ପଦ୍ମନାଭ ପଟ୍ଟନାୟକ ! ଚକଡ଼ାପୋଥି ଅନୁଯାୟୀ ୮ ଅଙ୍କରେ ବିଗ୍ରହ ପ୍ରତିଷ୍ଠିତ ହୋଇଥିଲେ ନାଁ ପାଞ୍ଜି ମତରେ ୯ ଅଙ୍କରେ ବ୍ରହ୍ମ ଅଣାଯାଇ ୧୧ ଅଙ୍କରେ ପ୍ରତିଷ୍ଠିତ ହେଲେ । କାରଣ ପାଂଜି ଅନୁସାରେ ଶ୍ରୀବିଗ୍ରହମାନ ପ୍ରଥମେ ଖୁରୁଧା କଟକରେ ନିର୍ମିତ ହୋଇ ପରେ ପୁରୀ ମନ୍ଦିରରେ ପ୍ରତିଷ୍ଠିତ ହେଲେ ।

ଚକଡ଼ାପୋଥିର ଦୁଇଟି ନୂତନ ତଥ୍ୟ ହେଲା -

୧ - ସ୍କନ୍ଦପୁରାଣ ବିଧିରେ ଚଉରାଶି ଯବରେ ଶ୍ରୀମୂର୍ତ୍ତି ନିର୍ମିତ ହୋଇଥିଲେ ।

୨ - ଏହି ପ୍ରସିଦ୍ଧ ଘଟଣାକୁ ସ୍ମରଣୀୟ କରିବା ପାଇଁ ରାମଚନ୍ଦ୍ର ଦେବ ତିନୋଟି ବ୍ରାହ୍ମଣ ଶାସନ ଦାନ କରିଥିଲେ ।

**ମାଦଳାପାଂଜି ମତ :**

(ପ୍ରାଚୀ ସଂସ୍କରଣ, ପୃ-୬୨-୬୩) ''ଅ୯ଙ୍କେ ରାଜା କୁଜଙ୍ଗ ଗଡ଼ରୁ ବ୍ରହ୍ମ ଅଣାଇଲେ । ଖୁରାଧା କଟକେ ବନଯାଗ କରି ସୁମୁରୁତି କରାଇଲେ । ଅ୧୧ଙ୍କ କକଡ଼ା ୧୮ଦିନ ଶ୍ରାବଣ ଶୁକ୍ଳ ନବମୀ ଦିନ ଶ୍ରୀପୁରୁଷୋତ୍ତମ ବଡ଼ଦେଉଳେ ରତ୍ନସିଂହାସନେ ବିଜେ କରାଇଲେ । ବ୍ରହ୍ମ ଅଣିଲା ବିଶରମହାନ୍ତିଙ୍କ ପୋର ନାଏକ କଲେ । ଏ ଦାରୁବ୍ରହ୍ମ ଘେନି ଅଇଲା ଏ ତାଟି ଭିତରେ ପଶିବ ବୋଲି ଶାଢ଼ି ଦେଲେ ।''

**ଚକଡ଼ାପୋଥି ଓ ଚୟନୀଚକଡ଼ା ମତ (ପୃ-୬-୭) :**

ସେହି ଖୋରଧା ଗଡ଼ର ଶୁଭବେଳା ଦିନ ବୀରରାମଚନ୍ଦ୍ରପୁର ବୋଲି ଏକ ଶାସନ କରିବେ ବୋଲି ରାଜା ସଭାରେ ପଚାରିଲେ ଓ ଶ୍ରୀପୁରୁଷୋତ୍ତମ ଦେଉଳରେ କେଉଁ ଦେବତା ବସାଇବାର ପରାମର୍ଶ ପ୍ରଶ୍ନ କଲେ । ମାତ୍ର କେହି କିଛି ଉତ୍ତର ନ ଦେଇ ବିସ୍ମିତ ହୋଇ ରହିଲେ । ରାତ୍ରିରେ ରାଜାଙ୍କୁ ସ୍ୱପ୍ନରେ ଆଜ୍ଞା ହେଲା ଯେ, ଆମ୍ଭେ କୁଜଙ୍ଗଠାରେ ବିଜେ କରି ରହିଅଛୁ । ସେ ଶାଳଖାକୁ ତୁ ନୂଆକରି ଦାରୁବ୍ରହ୍ମ ମୂର୍ତ୍ତି କରିବୁ । ଭିତର ପୋଟଳରେ ଆମ୍ଭକୁ ବିଜେ କରାଇବୁ । ମହା-ଅଣସରରେ ବାଲି ନୃସିଂହଠାରୁ ଆମ୍ଭକୁ ବିଜେ କରାଇନେଇ ଦେଉଳ ଭିତରେ ରତ୍ନ ସିଂହାସନେ ଆମ୍ଭଙ୍କୁ ବିଜେ କରାଇବୁ ।....

ଏହା କହିବାରୁ ରାଜା ପଦ୍ମନାଭ ପଟ୍ଟନାୟକଙ୍କୁ ଆଜ୍ଞା ଦେଲେ । ସେ ଯାଇ କୁଜଙ୍ଗଠାରେ ମହାପ୍ରଭୁଙ୍କୁ ଆଣିଲେ । ମହାରାଜ ସ୍କନ୍ଦପୁରାଣ ବିଧିରେ ଚଉରାଶି ଯବରେ ଦାରୁ ଶ୍ରୀମୂର୍ତ୍ତି କରି ଭିତର ପୋଟଳରେ ଶାଳଖା ବିଜେ କରାଇ ଶ୍ରୀମୂର୍ତ୍ତି କଲେ । x x x

ଐତିହାସିକ କେଦାରନାଥ ମହାପାତ୍ର ଉଭୟର ରାଜାଙ୍କ ଅଙ୍କ ଗଣନା ଅନୁସାରେ କାଳ ଗଣନା କରି ମତ ଦିଅନ୍ତି - ଚକଡ଼ାରେ ଲେଖାଥିବା ମିଥୁନ ୧୮ଦିନ ଆଷାଢ଼ ଶୁକ୍ଳ ଦଶମୀ ଗୁରୁବାର- ୧୬-୬-୧୫୭୫, ପାଂଜି ପ୍ରଦତ୍ତ କକଡ଼ା ୧୮ ଦିନ, ଶ୍ରାବଣ ଶୁକ୍ଳ ନବମୀ, ୧୭-୭-୧୫୭୫ ।

୧୫-୭-୧୫୭୫ ମସିହା ରାମଚନ୍ଦ୍ର ଦେବଙ୍କ ୧୦ ଅଙ୍କରେ ପଡ଼ିଥିଲା । ତେଣୁ ପାଂଜି ମତକୁ ସେ ଗ୍ରହଣ କରିଛନ୍ତି । ଅର୍ଥାତ୍ ୧୫-୭-୧୫୭୫ରେ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ପ୍ରତିଷ୍ଠା ହୋଇଥିଲେ ।

ପ୍ରାୟ ଆଠ ବର୍ଷ ପର୍ଯ୍ୟନ୍ତ ବନ୍ଦ ହୋଇଥିବା ରଥଯାତ୍ରା ବା ଗୁଣ୍ଡିଚା ମହୋତ୍ସବ ପୁନଃ ଆରମ୍ଭ ହୋଇଥିଲା ।






## ସୁଲେମାନ ଏବଂ ଓସମାନ୍‌ଙ୍କ ଶ୍ରୀମନ୍ଦିର ଲୁଣ୍ଠନ

ସୁଲେମାନ ଏବଂ ଓସମାନ୍ ଉଭୟ ମିଶି ଏକ କୋକୁଆ ଭୟ ସୃଷ୍ଟି କରି ନିର୍ଦ୍ଦୟ ଭାବରେ ଅନେକଙ୍କୁ ହତ୍ୟାକରି ଶ୍ରୀମନ୍ଦିର ଲୁଣ୍ଠନ କରିଥିଲେ ୧୫୯୨ ଖ୍ରୀଷ୍ଟାବ୍ଦର ପ୍ରଥମ ଭାଗରେ । ବାସ୍ତବରେ ସେମାନେ ଦିଲ୍ଲୀ ବାଦଶାହାଙ୍କ ପାଇଁ କିମ୍ବା ତାଙ୍କ ତରଫରୁ ଲୁଣ୍ଠନ କରି ନଥିଲେ । ସୁଲେମାନ ଥିଲା ପଠାଣ କ୍ୱତୁଲୁଙ୍କ ପୁତ୍ର । ଓସମାନ୍ ଥିଲା ଖ୍ୱାଜା ଇଶାଙ୍କ ପୁତ୍ର । ଖ୍ୱାଜା ଇଶା ଥିଲା ତତ୍‌କାଳୀନ ଓଡ଼ିଶାର ସର୍ବେସର୍ବା । ତାକୁ ଆୟତ୍ତାଧୀନ କରିବାକୁ ଦିଲ୍ଲୀର ତତ୍‌କାଳୀନ ବାଦଶାହା ଆକବର ନିଜର ଦୂତ ରୂପେ 'ମାନସିଂହ'ଙ୍କୁ ପଠାଇଥିଲେ । ମାନସିଂହ ଓ ଖ୍ୱାଜା ଇଶାଙ୍କ ମଧ୍ୟରେ ଏକ ସନ୍ଧି ହୋଇଥିଲା । ଯେଉଁଥିରେ ତିନୋଟି ସର୍ତ୍ତ ଥିଲା ।

**ସନ୍ଧି :**

୧୫୯୦ ଖ୍ରୀ.ରେ ଖ୍ୱାଜା ଇଶା ଓ ମାନସିଂହଙ୍କର ମଧ୍ୟରେ ଏହି ସନ୍ଧି ହୋଇଥିଲା । ସେହି ସନ୍ଧିରେ ସ୍ଥିର ହୋଇଥିଲା - ଓଡ଼ିଶାରେ ଆକବର ବାଦ୍‌ଶାହାଙ୍କ ନାମରେ ମୁଦ୍ରା ପ୍ରଚଳିତ ହେବ । ତାଙ୍କ ନାମରେ ମସ୍‌ଜିଦ୍‌ରେ 'ଖୁତବା' ପଢ଼ା ହେବ । ପୁରୀର ଜଗନ୍ନାଥ ମନ୍ଦିର ଓ ତାର ଆଖପାଖ ସ୍ଥାନମାନ ବାଦ୍‌ଶାହାଙ୍କ ଅଧୀନରେ ରହିବ ।

ଏଥିରୁ ଅନୁମିତ ହେଉଛି ଜଗନ୍ନାଥ ମନ୍ଦିର ତାର ଆଖପାଖ ଅଞ୍ଚଳକୁ ସେମାନେ ସିଧା ନିଜ ଅଧୀନରେ ରଖିବାକୁ ବ୍ୟାକୁଳ ଥିଲେ । କାରଣ କୌଣସି ପ୍ରକାରେ ଏହିଠାରୁ ହିଁ ତାଙ୍କର ଇପ୍‌ସିତ ଧନରତ୍ନ ଆହରଣ କରିବାର ପ୍ରବୃତ୍ତି ରହିଥିଲା ।

ତାହା ବାସ୍ତବରେ ପରିଣତ ମଧ୍ୟ ହେଉଥିଲା । ଖ୍ୱାଜାଙ୍କ ମୃତ୍ୟୁ ପରେ ସନ୍ଧି କାର୍ଯ୍ୟକାରୀ ହେଲା ନାହିଁ । ପଠାଣମାନେ ଉତ୍ପାତ୍ତ ଆରମ୍ଭ କଲେ । କ୍ୱତଲୁଙ୍କ ପୁତ୍ର 'ସୁଲେମାନ' ଓ ଖ୍ୱାଜାଙ୍କ ପୁତ୍ର 'ଓସ୍‌ମାନ' ଜଗନ୍ନାଥ ମନ୍ଦିର ଅଧିକାର କରି ଧନରତ୍ନ ଲୁଣ୍ଠନ କଲେ । ଦେବମୂର୍ତ୍ତିର ଅବମାନନା କଲେ । ଏହି ବିଦ୍ରୋହ ୧୫୯୨ ରେ ରାଜା ମାନସିଂହ ଦମନ କରିଥିଲେ । ରାଜା ମାନସିଂହ ମୋଗଲ ଶାସନ ସହିତ ସଂପୃକ୍ତ ଥିଲେ । ସେତେବେଳେ ଖୋର୍ଦ୍ଧାର ରାଜା ଥିଲେ ରାମଚନ୍ଦ୍ର ଦେବ । ରାମଚନ୍ଦ୍ର ଦେବଙ୍କ ନେତୃତ୍ୱରେ ଓଡ଼ିଶାର ଅନେକ ରାଜା ଓ ସାମନ୍ତରାଜା ପଠାଣମାନଙ୍କୁ ମୋଗଲମାନଙ୍କ ବିରୋଧରେ ସାହାଯ୍ୟ କରିଥିବାର ଜଣାଯାଏ । (ଓ.ଇ.ପୃ-୮୯, ୨ୟ ମହତାବ)

ଏହି ଲୁଣ୍ଠନର ସବିଶେଷ ବିବରଣୀ ଯେବେ ବି ରହସ୍ୟାବୃତ୍ତ । ଯେ ଦୁଇ ଜଣ ଯାକ ଶ୍ରୀମନ୍ଦିରରୁ ଲୁଣ୍ଠନ କରିଥିବା ଧନରତ୍ନ ଦିଲ୍ଲୀରେ ପହଞ୍ଚି ନଥିବାରୁ ସେ ବିଷୟରେ ବିଶେଷ

ଉଲ୍ଲେଖ ନାହିଁ । ଓସମାନ ଓ ସୁଲେମାନ କେବଳ ମାନସିଂହଙ୍କ ସନ୍ଧିକୁ ନମାନି ଆକବରଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରିବା ସହିତ କିଛି ସୈନ୍ୟଙ୍କୁ ନେଇ କିଛି ଧନରତ୍ନ ନେଇଯିବାର ଉଦ୍ଦେଶ୍ୟରେ ହିଁ ହଠାତ୍ ଶ୍ରୀମନ୍ଦିର ଉପରେ ଆକ୍ରମଣ କରିଥିଲେ । ପ୍ରାରମ୍ଭିକ ସ୍ତରରେ ସେମାନେ ସଫଳ ହୋଇଥିଲେ ମଧ୍ୟ । କିନ୍ତୁ ସେମାନଙ୍କ ଲୁଣ୍ଠିତ ଦ୍ରବ୍ୟ କୁଆଡ଼େ ଗଲା ସେ ବିଷୟରେ ଇତିହାସ ନୀରବ । ଯେପରିକି ମାନସିଂହ ତାଙ୍କୁ ଦମନ କରିବା ପରେ ତାଙ୍କର ଅବସ୍ଥା କ'ଣ ହୋଇଥିଲା ତାହା ଆଲୋଚନାକୁ ଅପେକ୍ଷା ରଖେ ।






## ମିର୍ଜା ଖୁରୁମୁଙ୍କ ଶ୍ରୀମନ୍ଦିର ଆକ୍ରମଣ

ଜାହାଙ୍ଗୀରଙ୍କ ରାଜତ୍ୱ ଆରମ୍ଭରେ ମୁସଲମାନମାନେ ମଧ୍ୟ ପୁରୀ ମନ୍ଦିର ଆକ୍ରମଣ କରିଥିଲେ । ମାଦଳାପାଂଜି ଅନୁଯାୟୀ ''ଏ ମହାରାଜାଙ୍କ ୪୮ଙ୍କ ଖୁରୁମ୍ ଅଇଲା । ଠିଓମେଶ୍ୱରଙ୍କୁ ଠକା ଛଡ଼ାଇ ଚନ୍ଦନଦୋଳ ବିଜେ କରାଇ କପିଳେଶ୍ୱରପୁର ଶାସନ ପଞ୍ଚମୁଖୀ ଗୋସାଣୀଙ୍କ ଯାଏ ନେଲେ । ସେଠାରେ ଦୋଳଯାତ୍ରା ନହୋଇ ବାହୁଡ଼ା ବିଜେ କଲେ ।''

ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ ମତରେ ଖୁରୁମୁଙ୍କ ପୁରୀ ଆଗମନ ସମ୍ବନ୍ଧରେ ଏ ପର୍ଯ୍ୟନ୍ତ ଅନ୍ୟ କୌଣସି ସୂତ୍ରରୁ ଜଣାଯାଇ ନାହିଁ । ମାତ୍ର ଶ୍ରୀ ମହାପାତ୍ର ବଙ୍ଗ ସୁବାଦାର ଇସଲାମ୍ ଖାଁଙ୍କ ସେନାପତି ମିର୍ଜା ଖୁରୁମୁଙ୍କ ସହିତ ଚିହ୍ନିତ କରାଯାଇ ପାରେ ବୋଲି ସମ୍ଭାବନା କରିଛନ୍ତି । (ମିର୍ଜାନାଥନ୍ କୃତ ବହିରିସ୍ତାନ-ଇ-ଘାଇବି, ପ୍ରଥମ ଭାଗ, ପୃ-୨୦) ।

ଶ୍ରୀ ମହାପାତ୍ରଙ୍କ ସମ୍ଭାବନା ସତ୍ୟ ମନେ ହୁଏ । କାରଣ ତତ୍‌କାଳୀନ ବଙ୍ଗ ସୁବାଦାର ଇସଲାମ୍ ଖାଁଙ୍କୁ ପ୍ରଫେସର ଏସ୍.ଆର୍. ଶର୍ମା ନିଜ ଗ୍ରନ୍ଥ 'କ୍ରିସେଣ୍ଟ ଇନ୍ ଇଣ୍ଡିଆ' ନାମକ ପୁସ୍ତକରେ ଉସ୍ମାନ୍ ଖାଁ ବୋଲି ଲେଖିଛନ୍ତି । ବାସ୍ତବରେ ପର୍ଯ୍ୟାଲୋଚନା କଲେ ପ୍ରଫେସର ଶର୍ମାଙ୍କ ଉସ୍‌ମାନ ଖାଁ ହିଁ ଶ୍ରୀଯୁକ୍ତ ମହାପାତ୍ର ଗ୍ରହଣ କରିଥିବା ଇସଲାମ୍ ଖାଁ ଅଟନ୍ତି ।

ପୂର୍ବରୁ କୁହାଯାଇଛି ୮ମ ଅଙ୍କରେ ଖୁରୁମୁ ଆସିଥିଲେ । ଅର୍ଥାତ୍ ପୁରୁଷୋତ୍ତମ ଦେବଙ୍କର ୮ମ ଅଙ୍କରେ । ଅର୍ଥାତ୍ ୧୬୦୧ ଖ୍ରୀଷ୍ଟାବ୍ଦରେ । ସେତେବେଳକୁ ବଙ୍ଗର ସୁବାଦାର ଥିଲେ ଉସ୍‌ମାନ ଖାଁ ବା ଇସଲାମ୍ ଖାଁ । ଯେ କି ୧୬୦୦ ଖ୍ରୀଷ୍ଟାବ୍ଦରେ ଆକବରଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରି ଦେଇଥିଲେ । ଏହାଙ୍କୁ ପ୍ରଫେସର ଶର୍ମା ଆଫଗାନ୍ ସରଦାର ବୋଲି ଉଲ୍ଲେଖ କରିଛନ୍ତି ।

ସେତେବେଳେ ସଲୀମଙ୍କୁ ଯେ କି ପରେ ଜାହାଙ୍ଗୀର ନାମରେ ପରିଚିତ ହେଲେ ତାଙ୍କୁ ପୂର୍ବଭାରତ ପଟକୁ ଯିବାପାଇଁ ନିର୍ଦ୍ଦେଶ ଦିଆ ଯାଇଥିଲା । ମାତ୍ର ସେ 'ଇଲାହାବାଦ'ରେ ରହିବାକୁ ପସନ୍ଦ କଲେ । ବିହାରରୁ ୩୦ ଲକ୍ଷ ଟଙ୍କା ଭୂମିକର ଆଦାୟ କରି ୩୦ ହଜାର ଅଶ୍ୱାରୋହୀଙ୍କ ସହିତ 'ଇଟାଓ୍ୱା'ଠାରେ ପହଞ୍ଚିଲା ବେଳକୁ ଆକବର 'ଅସୀରଗଡ଼' ବିଜୟ କରି ୧୬୦୧ରେ ଆଗ୍ରାରେ ପହଞ୍ଚିଥିଲେ । ସେତିକିବେଳେ ଆକବର ପୁନଃ ଇଲାହାବାଦ ଫେରିଯିବା ପାଇଁ ସଲୀମଙ୍କୁ ଆଦେଶ ଦେବା ସହିତ ଓଡ଼ିଶା ଓ ବଙ୍ଗଳାର ଶାସକ ନିଯୁକ୍ତି କରିଥିଲେ ।

ଅତଏବ ୧୬୦୧ ଖ୍ରୀଷ୍ଟାବ୍ଦରେ ଆକବର ପୁତ୍ର ସଲୀମଙ୍କୁ ଓଡ଼ିଶା ଓ ବଙ୍ଗଳାର ଶାସକ ରୂପେ ନିଯୁକ୍ତ କରିଥିଲେ । ୧୬୦୦ ଖ୍ରୀ.ରେ ଆକବରଙ୍କ ବିରୋଧରେ ଇସଲାମ୍ ଖାଁ ବିଦ୍ରୋହ

ଘୋଷଣା କରିବା ଫଳରେ ୧୬୦୧ରେ ଆକବର ସଲୀମ୍‌ଙ୍କୁ ଓଡ଼ିଶାର ଶାସକ ରୂପେ ନିଯୁକ୍ତି କରିଥିଲେ । କିନ୍ତୁ ସେ ସେହି ଇଲାହାବାଦରେ ହିଁ ରହିଲେ । (କ୍ରିସେଣ୍ଟ ଇନ୍ ଇଣ୍ଡିଆ, ପୃ- ୩୮୨) ।

ଫଳରେ ଇସଲାମ୍ ଖାଁର ସେନାପତି ମିର୍ଜା ଖୁରୁମୁ ନିଷ୍କଣ୍ଟକ ଭାବରେ ସେଇ ୧୬୦୧ରେ ଶ୍ରୀମନ୍ଦିର ଆକ୍ରମଣ କରିଥିଲା । ସେବକମାନେ ଖୁରୁମୁ ଆକ୍ରମଣରୁ ଶ୍ରୀବିଗ୍ରହଙ୍କୁ ରକ୍ଷା କରିବା ପାଇଁ ପୁରୀଠାରୁ ୮/୧୦ କିଲୋମିଟର ଦୂର ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଜନ୍ମଭୂମି କପିଳେଶ୍ୱରପୁର ବ୍ରାହ୍ମଣ ଶାସନକୁ ସ୍ଥାନାନ୍ତର କରି ନେଇଥିଲେ । ଏହି ଗ୍ରାମଟି ଭାର୍ଗବୀ ନଦୀ ଉପତ୍ୟକାରେ ରାଜ ପ୍ରତିଷ୍ଠିତ ଏକ ବ୍ରାହ୍ମଣ ଗ୍ରାମ । ଚାରୋଟି 'ଶ'ରେ ବିଭକ୍ତ । ଦୁଇଟି 'ଶ' ମଝିରେ ପୁରୀ ଗଜପତିଙ୍କ ଦ୍ୱାରା ପ୍ରତିଷ୍ଠିତ ପାଞ୍ଚମୁଖ ଥିବା ଠାକୁରାଣୀ ମନ୍ଦିର ବିଦ୍ୟମାନ । ପଞ୍ଚମୁଖ ଥିବାରୁ ଯେ ପଞ୍ଚମୁଖୀ ଏବଂ ଠାକୁରାଣୀ ବିଶେଷ ଦାର୍ଶନିକ ଅର୍ଥରେ ପୁରୀ ଅଞ୍ଚଳରେ 'ଗୋସାଣୀ' ଶବ୍ଦରେ ଧ୍ୱନିତ ହେଉଥିବାରୁ ସେଇ ପଞ୍ଚମୁଖୀ ଗୋସାଣୀଙ୍କ ମନ୍ଦିରରେ ଶ୍ରୀବିଗ୍ରହଙ୍କୁ ଲୁଚାଇ ରଖିଥିଲେ ।

ମାଦଳାରୁ ଜଣାପଡ଼ିଛି ମିର୍ଜା ଖୁରୁମୁ ଦୋଳଯାତ୍ରା ସମୟରେ ଶ୍ରୀମନ୍ଦିର ଆକ୍ରମଣ କରିଥିଲା । ପ୍ରଭୁଙ୍କୁ ନ ପାଇ ସେ ଅନେକ ଧନରତ୍ନ ଲୁଣ୍ଠନ କରି ନେଇଥିଲା । କିନ୍ତୁ ଏଇ ଲୁଣ୍ଠିତ ଦ୍ରବ୍ୟ ତତ୍‌କାଳୀନ ଦିଲ୍ଲୀ ବାଦଶାହା ଆକବର କିମ୍ବା ଓଡ଼ିଶାର ଶାସକ ରୂପେ ନିଯୁକ୍ତ ହୋଇଥିବା ଭୋଗ୍ ବିଳାସପ୍ରିୟ ସଲୀମ ଓରଫ୍ ଜାହାଙ୍ଗୀରଙ୍କ ପାଖରେ ପହଞ୍ଚି ନଥିଲା । ସଲୀମଙ୍କ ପାଖରେ ପହଞ୍ଚିଥିଲେ ଇଲାହାବାଦରେ ପହଞ୍ଚିଥାନ୍ତା । ମାତ୍ର ସଲୀମଙ୍କ ଇଲାହାବାଦ ରହଣୀ ସମୟର ଟିକ୍‌ନିଖି ବିବରଣୀ ଡ଼ଃ ଶ୍ରୀବାସ୍ତବ ତାଙ୍କର 'ଆକବର ଦି ଗ୍ରେଟ୍' ପୁସ୍ତକରେ ଦେଇଥିବା ବେଳେ ଶ୍ରୀମନ୍ଦିରରୁ ଲୁଣ୍ଠିତ ଧନରତ୍ନର ବିବରଣୀ ଦେଇ ନାହାଁନ୍ତି ।

ଖୁରୁମୁଙ୍କ ଲୁଣ୍ଠିତ ଧନରାଶି ସୁଲେମାନ ଏବଂ ଓସମାନ୍‌ଙ୍କ ଲୁଣ୍ଠିତ ଦ୍ରବ୍ୟ ପରି ବାଟମାରଣା ହୋଇ ନିଜ ଧନରେ ପରିଣତ ହୋଇଥିଲା ।






## ହାସିମ୍ ଖାଁଙ୍କ ଶ୍ରୀମନ୍ଦିର ଆକ୍ରମଣ

ପୂର୍ବରୁ କୁହାଯାଇଛି ଓଡ଼ିଶା ମୋଗଲ ସାମ୍ରାଜ୍ୟର ପ୍ରଥମ ପ୍ରଦେଶ ମାନ୍ୟତା ପାଇବା ପରେ ୨୬-୯-୧୬୦୭ ଖ୍ରୀଷ୍ଟାବ୍ଦରେ ହାସିମ୍ ଖାଁ ସୁବାଦାର ହୋଇ ଓଡ଼ିଶାକୁ ଆସିଲେ । ଜାହାଙ୍ଗୀରଙ୍କ ତୁଷ୍ଟି ପାଇଁ ସେ ହିନ୍ଦୁ ମନ୍ଦିର ଆକ୍ରମଣ ଓ ଲୁଣ୍ଠନ ପାଇଁ ସର୍ବଦା ବ୍ୟଗ୍ର ଥିଲେ ।

ତାଙ୍କରି ସମୟରେ ଓଡ଼ିଶାର ରାଜା ଥିଲେ ପୁରୁଷୋତ୍ତମ ଦେବ । ୧୬୦୧ ଖ୍ରୀଷ୍ଟାବ୍ଦରେ ମିର୍ଜା ଖୁରୁମୁ ନାମରେ ଜଣେ ମୁସଲମାନ ସେନାପତି ଶ୍ରୀମନ୍ଦିର ଆକ୍ରମଣ କରିଥିଲେ । ଏହା ଘଟିଥିଲା ପୁରୁଷୋତ୍ତମ ଦେବଙ୍କ ୮ ଅଙ୍କ ୧୬୦୧ ଖ୍ରୀ.ରେ । ପୁରୁଷୋତ୍ତମ ଦେବଙ୍କ ୧୪ ଅଙ୍କରେ ନିଜେ ହାସିମ୍ ଖାଁ ପୁରୀ ମନ୍ଦିର ଆକ୍ରମଣ କରିଥିଲେ । ଅର୍ଥାତ୍ ୧୬୦୭ ଖ୍ରୀଷ୍ଟାବ୍ଦରେ ।

ପାଞ୍ଜି ମତରେ ''... ଏ ମହାରାଜାଙ୍କ ଅ୧୪ଙ୍କେ ଆସିମ୍ ଅଇଲା । ସେବକେ ପରମେଶ୍ୱରଙ୍କୁ ନେଇ ଖୁରୁଧାରେ ଗୋପାଳ ଦେଉଳେ ବିଜେ କରାଇଥିଲେ । ଅ୧୫ଙ୍କେ ଶ୍ରୀପୁରୁଷୋତ୍ତମ ବଡ଼ଦେଉଳେ ବିଜେ କରାଇଲେ । (ପୃ-୬୫)

କିନ୍ତୁ ଭବାନୀ ଚରଣ ରାୟଙ୍କ ମତରେ ଶାସନଗତ ସୁବିଧା ସକାଶେ ଓଡ଼ିଶାକୁ ବଙ୍ଗଳାଠାରୁ ଅଲଗା କରି ଦିଆଯିବା ପରେ ୧୬୦୬ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସ ୧୭ ତାରିଖ ଦିନ ଜାହାଙ୍ଗୀରଙ୍କର ଜନୈକ ସମ୍ପର୍କୀୟ କାଶିମ ଖାଁଙ୍କ ପୁତ୍ର ହାସିମ୍ ଖାଁ ୨୦୦୦ ଘୋଡ଼ା ସମେତ ୩୦୦୦ କର୍ମଚାରୀ ପଦବୀକୁ ଉନ୍ନୀତ ହୋଇ ପ୍ରଥମ ଥର ପାଇଁ ଓଡ଼ିଶାର ଗଭର୍ଣ୍ଣର ରୂପେ ନିଯୁକ୍ତ ହୋଇଥିଲେ । (ମୋଗଲ ଓଡ଼ିଶା ଇତିହାସ ଓ ସଂସ୍କୃତି, ପୃ-୪୨) ।

କିନ୍ତୁ ଡ଼ଃ ରାୟଙ୍କ ମତକୁ ଗ୍ରହଣ କରିବା ସହଜ ମନେ ହେଉ ନାହିଁ । ୧୬୦୬ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସ ୧୭ ତାରିଖରେ ହାସିମ୍ ଖାଁ ନିଯୁକ୍ତି ସନ୍ଦେହ ଜନକ । ପୂର୍ବ ନିର୍ଦ୍ଦିଷ୍ଟ ୧୬୦୭ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ୨୬ ତାରିଖ ଯୁକ୍ତିଯୁକ୍ତ ମନେ ହୁଏ । କାରଣ ୧୬୦୫ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ ଆଗ୍ରାଠାରୁ ଛ ମାଇଲ ଦୂର ସିକନ୍ଦରାଠାରେ ଆକବରଙ୍କ ମୃତ୍ୟୁ ହୋଇଥିଲା । ଜାହାଙ୍ଗୀର ୩୬ ବର୍ଷ ବୟସରେ ଗୁରୁବାର ଅକ୍ଟୋବର ୨୪ ତାରିଖ ସେଇ ୧୬୦୫ ଖ୍ରୀଷ୍ଟାବ୍ଦରେ ଆଗ୍ରାଠାରେ ସିଂହାସନରେ ବସିଥିଲେ । ସେହି ବର୍ଷ ତାଙ୍କ ପୁତ୍ର 'ଖୁସରୁ' ତାଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରିଥିଲେ । ଖୁସରୁ ଥିଲେ ଜୟପୁର ରାଜକୁମାରୀ ମାନବାଈଙ୍କ ପୁତ୍ର । ଅର୍ଥାତ୍ ଜାହାଙ୍ଗୀରଙ୍କ ଔରସରୁ ହିନ୍ଦୁଗର୍ଭ ସମ୍ଭୂତ । ଏଇ ମାନବାଈଙ୍କୁ ଜାହାଙ୍ଗୀର ହତ୍ୟା କରି ଦେଇଥିଲେ ।

ଜାହାଙ୍ଗୀର ଯୁବରାଜ ଖୁସରୁଙ୍କୁ ଦମନ କରିବା ଇଚ୍ଛାରେ ଥିବାବେଳେ ଅପ୍ରେଲ ୧୬ ତାରିଖ ୧୬୦୬ ଖ୍ରୀଷ୍ଟାବ୍ଦରେ ସେ ପଳାୟନ କରିଥିଲେ । ଖୁସରୁ ପଞ୍ଜାବ ଗଲେ । କିଛି

ମୁସଲମାନ ସେନାପତି ତାଙ୍କ ସଙ୍ଗରେ ଥିଲେ । ମାତ୍ର ଲାହୋର ଶାସକ ତାଙ୍କୁ ନଗରରେ ପ୍ରବେଶ କରାଇ ଦେଲେ ନାହିଁ । ପ୍ରତିବନ୍ଧ ଲାଗୁ କରିଥିଲେ । ସେଇ ଅପ୍ରେଲ ମାସରେ ହିଁ ଖୁସରୁ ଧରା ହେଲେ । ଶିକୁଳିରେ ବନ୍ଧା ଯାଇ ତାଙ୍କୁ ଜାହାଙ୍ଗୀରଙ୍କ ସମ୍ମୁଖରେ ଉପସ୍ଥିତ କରା ଯାଇଥିଲା । ତାଙ୍କୁ ସାହାଯ୍ୟ କରୁଥିଲେ ବୋଲି ସନ୍ଦେହ କରି ଗୁରୁ ଅର୍ଜ୍ଜୁନଦେବଙ୍କୁ ୨ ଲକ୍ଷ ଟଙ୍କା ଜୋରିମାନା କରାଗଲା । ଶେଷରେ ଜୁନମାସ ୧୬୦୬ ଖ୍ରୀଷ୍ଟାବ୍ଦରେ ଲାହୋର ନିକଟରେ 'ରାବୀ' ନଦୀ କୂଳରେ ତାଙ୍କୁ ବର୍ବରତା ପୂର୍ଣ୍ଣ ହତ୍ୟା କରା ଯାଇଥିଲା । ୭୦୦ ବିଦ୍ରୋହୀଙ୍କୁ ଲାହୋର ଠାରେ ଶୂଳୀରେ ବସା ଯାଇଥିଲା । ଖୁସରୁଙ୍କୁ ଏକ ତାର ଦ୍ୱାରା ଅନ୍ଧ କରାଯାଇ ବନ୍ଦୀ ରୂପେ ରଖା ଯାଇଥିଲା । ତାରରେ ଆଖି କଣା କରି ଅନ୍ଧ କରାଯିବାର ବର୍ଣ୍ଣନା ହୃଦୟ ବିଦାରକ ଥିଲା । (ଇନ୍ତଖାବ-ଏ-ଜହାଁଗୀରଶାହୀ, ଭାଗ-ଷଷ୍ଠ, ପୃ-୨୭୩ ଏବଂ ୪୪୮) ।

ଏତଦ୍‌ବ୍ୟତୀତ ସିଂହାସନରେ ବସିବା ପରଠାରୁ ସେ ପ୍ରଥମେ ମେବାଡ଼ ବିରୋଧରେ ଯୁଦ୍ଧ ଘୋଷଣା କରିଥିଲେ । ତେଣୁ ୧୬୦୫ ଖ୍ରୀଷ୍ଟାବ୍ଦ ଠାରୁ ୧୬୦୬ ଖ୍ରୀଷ୍ଟାବ୍ଦର ଶେଷ ପର୍ଯ୍ୟନ୍ତ ନିଜ ସିଂହାସନ ରକ୍ଷାପାଇଁ ନିଜ ରାଜମହଲ ବିଦ୍ରୋହ ଦମନ କରି ନିରଙ୍କୁଶ ହେବାପାଇଁ ବ୍ୟସ୍ତ ରହିଥିଲେ । ସେତେବେଳେ ନିଜ ସମ୍ପର୍କୀୟ କାଶିମ ଖାଁଙ୍କ ପୁତ୍ର ହାସିମ୍ ଖାଁଙ୍କ କଥା ବୁଝିବାକୁ ସେ ସମୟ ପାଇ ନଥିବେ । ତେଣୁ ୧୬୦୭ ଖ୍ରୀଷ୍ଟାବ୍ଦରେ ହିଁ ହାସିମ୍ ଖାଁ ସୁବାଦାର ହୋଇ ନିଯୁକ୍ତ ପାଇଥିବା ଯୁକ୍ତିଯୁକ୍ତ ମନେ ହୁଏ ।

ଦ୍ୱିତୀୟତଃ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ୧୬୦୭ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସରେ ମିଳିଥିଲା । ୧୬୦୬ ଖ୍ରୀଷ୍ଟାବ୍ଦରେ ନୁହେଁ । ୧୬୦୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ହିଁ ଜାହାଙ୍ଗୀର ଓଡ଼ିଶା ପାଇଁ ଏକ ସ୍ୱତନ୍ତ୍ର ସୁବାଦାର ପଠାଇ ଥିବେ । ତେଣୁ ହାସିମ୍ ଖାଁ ୧୬୦୭ ରେ ହିଁ ସୁବାଦାର ହୋଇ ଆସିଥିଲେ । ଯାହାକି ଗୌହାଟୀର ସୁବାଦାର ମିର୍ଜାଙ୍କ ଲେଖାରୁ ଜଣାପଡୁଛି । ସେ ତାଙ୍କ ବହିରିସ୍ତାନ-ଇ-ଘାଇବି ନାମକ ମୋଗଲ ଇତିହାସ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ଯେ କଟକର ପ୍ରଥମ ମୋଗଲ ସୁବାଦାର ହେଲେ ହାସିମ୍ ଖାଁ । ସେ ୨୬-୯-୧୬୦୭ ଖ୍ରୀଷ୍ଟାବ୍ଦରୁ ୨୪-୫-୧୬୧୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାର ସୁବାଦାର ରୂପେ କଟକଠାରେ ରହି ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ ।

ଏଠାରେ ତତ୍‌କାଳୀନ ଓଡ଼ିଶାର ରାଜନୀତିକ ଅବସ୍ଥାକୁ ଲକ୍ଷ୍ୟ କରିବା କଥା । ଆଫଗାନ୍ ମାନେ ଓଡ଼ିଶା ଅଧିକାର କରିବା ପରେ ଓଡ଼ିଶାରେ ହିନ୍ଦୁ ରାଜତ୍ୱର ଅବସାନ ହୋଇଥିଲେ ମଧ୍ୟ ଖୋର୍ଦ୍ଧା ରାଜା ହିନ୍ଦୁ ରାଜାମାନଙ୍କର ବଂଶଧର ବୋଲି ସମ୍ମାନିତ ହୋଇଥିଲେ । ଓଡ଼ିଶାର ବହୁ ସଂଖ୍ୟକ ରାଜା ତାଙ୍କୁ ସମ୍ମାନ କରୁଥିଲେ । ଜନସାଧାରଣଙ୍କର ବିଶେଷ ଶ୍ରଦ୍ଧା ତାଙ୍କ ପ୍ରତି ଥିଲା । ଜଗନ୍ନାଥ ମନ୍ଦିରର ସେ ଥିଲେ ତତ୍ତ୍ୱାବଧାରକ । ସେ ଥିଲେ ଧର୍ମର ରକ୍ଷାକର୍ତ୍ତା ବୋଲି ଜନସାଧାରଣଙ୍କର ବିଶ୍ୱାସ ଥିଲା ।

ଜନସାଧାରଣଙ୍କର ଯେ ବିଶ୍ୱାସକୁ ଚୁରମାର କରିବା ପ୍ରଥମ କର୍ତ୍ତବ୍ୟ ବୋଲି ଆକ୍ରମଣକାରୀମାନେ ମନେ କରୁଥିଲେ । ତେଣୁ ଯେଉଁଥିପାଇଁ ଖୋର୍ଦ୍ଧା ରାଜା ସମ୍ମାନଷ୍ପଦ

ଥିଲେ ତାର ମୂଳସୂତ୍ର ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥ ବୋଲି ସମସ୍ତ ଆକ୍ରମଣକାରୀ ମନେ କରିଛନ୍ତି । ତେଣୁ ସେମାନେ ଶ୍ରୀମନ୍ଦିର ଆକ୍ରମଣ କରି ଲୁଣ୍ଠନ କରିପାରିଲେ ଖୋର୍ଦ୍ଧା ରାଜାଙ୍କ ସମ୍ମାନହାନି ହେବ ଏବଂ ଏକ ମାନସିକ ଚାପରେ ତାଙ୍କ ବ୍ୟକ୍ତିତ୍ୱ ନିମ୍ନ ହୋଇପାରିବ ଏଇ ବିଶ୍ୱାସ ସେମାନଙ୍କର ଥିଲା ।

ହାସିମ୍ ଖାଁଙ୍କ ଶ୍ରୀମନ୍ଦିର ଆକ୍ରମଣ ଓ ଲୁଣ୍ଠନକୁ ଅନୁଶୀଳନ କଲେ ଏୟା ହିଁ ଶତକଡ଼ା ୭୫ ଭାଗ ପ୍ରତୀୟମାନ ହୁଏ । ଅନ୍ୟ ୨୫ ଭାଗ ମଧ୍ୟରେ ହିନ୍ଦୁ ବିଗ୍ରହଙ୍କୁ ଅବମାନନା କରିବା ଏବଂ ଧନଲୋଭ ଅନ୍ତର୍ଭୁକ୍ତ । ଦ୍ୱିତୀୟରେ ସେ ପ୍ରଥମ ସୁବାଦାର ହୋଇ ଆସିଥିବା ଯୋଗୁଁ ନିଜର ପ୍ରତିପତ୍ତି ଓ ସ୍ଥିତି ସୁଦୃଢ଼ ପାଇଁ ଏକ ସୁଚିନ୍ତିତ ଆକ୍ରମଣ ଯୋଜନା କାର୍ଯ୍ୟକାରୀ କରିଥିଲେ । ରାଜା ଖୋର୍ଦ୍ଧାଠାରେ ରହି ଶାସନ କରୁଥିବା ଜାଣି ସେ ପୁରୀ ମନ୍ଦିର ଉପରେ ଆକ୍ରମଣ କରି ଲୁଣ୍ଠନ କରିଥିଲେ । ତାଙ୍କୁ ପ୍ରତିହତ କରିବାର କୌଣସି ବିବରଣୀ ଇତିହାସରେ ସ୍ଥାନ ପାଇନାହିଁ । ତେଣୁ ମନେ ହୁଏ ୨୦୦୦ ଅଶ୍ୱାରୋହୀ ଏବଂ ୩୦୦୦ ପଦାତିକ ସୈନ୍ୟଙ୍କ ସହ ସେ ଶ୍ରୀମନ୍ଦିରରୁ ଲୁଣ୍ଠିତ ଧନ-ରତ୍ନ ନେଇ କଟକ ଚାଲି ଯାଇଥିଲେ । ତାଙ୍କ ଲୁଣ୍ଠିତ ଧନରାଶୀ ମଧ୍ୟ ଦିଲ୍ଲୀ ଦରବାର ପର୍ଯ୍ୟନ୍ତ ପହଞ୍ଚିପାରି ନଥିଲା । କାରଣ ତତ୍‌କାଳୀନ ଦିଲ୍ଲୀ ଦରବାର ଉପରେ ଲେଖା ଯାଇଥିବା କୌଣସି ଐତିହାସିକ ଦଲିଲରେ ଲୁଣ୍ଠିତ ଧନରାଶିର ବିବ୍‌ରଣୀ ଜଣାପଡ଼ି ନାହିଁ । ହୁଏତ ଭବିଷ୍ୟତ ଗବେଷଣାରୁ ଉପଲବ୍‌ଧ ହୋଇପାରେ ।

କିନ୍ତୁ ହାସିମ୍ ଖାଁ ଦ୍ୱାରା ଶ୍ରୀମନ୍ଦିର ଲୁଣ୍ଠନ ହେଲାବେଳେ ମହାପ୍ରଭୁ ଶ୍ରୀମନ୍ଦିରରେ ନଥିବା କଥା ମାଦଳାପାଂଜିରୁ ଜଣାପଡ଼ିଛି । ସେବକମାନେ ଖୋର୍ଦ୍ଧାର ଗୋପାଳ ଦେଉଳରେ ନେଇ ପ୍ରଭୁଙ୍କୁ ରଖିଥିଲେ । ପୁରୁଷୋତ୍ତମ ଦେବ ୧୫ ଅଙ୍କରେ ଅର୍ଥାତ୍ ୧୬୦୮ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାରୁ ମହାପ୍ରଭୁଙ୍କୁ ଆଣି ରତ୍ନସିଂହାସନରେ ବିଜେ କରାଇଥିଲେ ।

ଉପରୋକ୍ତ ଗୋପାଳ ମନ୍ଦିର ଖୋର୍ଦ୍ଧା ରାଜବାଟି ମଧ୍ୟରେ ଅବସ୍ଥିତ ଥିଲା । ଅନେକ ଐତିହାସିକ ମହାପ୍ରଭୁ ୧୬୧୦ ଖ୍ରୀଷ୍ଟାବ୍ଦରେ ରତ୍ନସିଂହାସନକୁ ଫେରିଥିବା କଥା ଉଲ୍ଲେଖ କରିଛନ୍ତି । ମାତ୍ର ତାହା ସତ୍ୟ ନୁହେଁ । କାରଣ ଗଜପତିଙ୍କ ୧୪ ଅଙ୍କ ଅର୍ଥାତ୍ ୧୬୦୭ ଖ୍ରୀଷ୍ଟାବ୍ଦର ନଭେମ୍ବର ଶେଷ ଡ଼ିସେମ୍ବର ମାସ ବେଳକୁ ହାସିମ୍ ଖାଁ ଶ୍ରୀମନ୍ଦିର ଲୁଣ୍ଠନ କରିଥିଲା । ସେ ଲୁଣ୍ଠନ କରି ଫେରିଯିବା ପରେ ମହାପ୍ରଭୁଙ୍କୁ ଖୋର୍ଦ୍ଧାରୁ ଗଜପତି ପୁରୀ ଆଣିଥିବେ । ତାହା ୧୬୦୮ ଖ୍ରୀଷ୍ଟାବ୍ଦରେ ପ୍ରଥମ ବା ଦ୍ୱିତୀୟ ମାସରେ ସମ୍ଭବ ହୋଇଥିବ । କାରଣ ୧୬୧୦ ବେଳକୁ କେଶୋଦାସ ଲୁଣ୍ଠନ ଆରମ୍ଭ କରି ଦେଇଥିଲା ।






## କେଶୋଦାସଙ୍କ ଶ୍ରୀମନ୍ଦିର ଲୁଣ୍ଠନ

କେଶୋଦାସ ଆକବରଙ୍କ ସମୟରେ ୩୦୦ ଅଶ୍ୱବିଶିଷ୍ଟ ସେନାବାହିନୀର ସେନାପତି ଥିଲେ । ଜାହାଙ୍ଗୀର ସିଂହାସନ ଆରୋହଣ କରିବା ପରେ ୧୫ ଶହ କର୍ମଚାରୀ ଓ ଅଶ୍ୱ ରହିଥିବା ସେନାବାହିନୀର ସେନାପତି ପଦବୀକୁ ପଦୋନ୍ନତି ପାଇଥିଲେ । ନିଜର ନିଷ୍ଠା କର୍ତ୍ତବ୍ୟ ପରାୟଣତା ଏବଂ ବୀରତ୍ୱ ବଳରେ ସେ ୨୦୦୦ କର୍ମଚାରୀ ଏବଂ ୧୦୦୦ ଅଶ୍ୱ ଥିବା ସେନାବାହିନୀର ସେନାପତି ପଦବୀ ଅଳଙ୍କୃତ କରି ପାରିଥିଲେ ପରବର୍ତ୍ତୀ କାଳରେ ।

ସୁବାଦାର ହାସିମ୍‌ଙ୍କ ସମୟରେ ସେ ଥିଲେ ଜଣେ ପ୍ରଧାନ ଅଧିକାରୀ । ଇତିହାସରେ 'କେଶୋଦାସ ମାରୁ' ନାମରେ ମଧ ସେ ପରିଚିତ । ହାସିମ୍ ଖାଁ ୧୬୦୭ ଖ୍ରୀଷ୍ଟାବ୍ଦରେ ଓ ସେପ୍ଟେମ୍ବର ମାସରେ ଓଡ଼ିଶାର ପ୍ରଥମ ସୁବାଦାର ହୋଇ ଆସିବାର ୨/୩ ମାସ ମଧ୍ୟରେ ଥରେ ଶ୍ରୀମନ୍ଦିର ଆକ୍ରମଣ କରି ଲୁଣ୍ଠନ କରିଥିଲେ । ସେତେବେଳେ ଦିଲ୍ଲୀରେ ବାଦଶାହା ଥିଲେ ସେଲୀମ୍ ଓରଫ୍ ଜାହାଙ୍ଗୀର । ଜାହାଙ୍ଗୀରଙ୍କର ସମ୍ପର୍କୀୟଙ୍କ ପୁତ୍ର ହୋଇଥିବାରୁ ହାସିମ୍ ଖାଁ ସଦାବେଳେ ଜାହାଙ୍ଗୀରଙ୍କ ସନ୍ତୋଷ ପାଇଁ କାର୍ଯ୍ୟ କରୁଥିଲେ । ତେଣୁ ଶ୍ରୀମନ୍ଦିର ପୁନଃଲୁଣ୍ଠନ କରିବାକୁ ସେ ନିଜେ ନ ଆସି କେଶୋଦାସଙ୍କୁ ତା ପରେ ପରେ ପଠାଇଲେ । ଉଦ୍ଦେଶ୍ୟ କେବଳ ହିନ୍ଦୁ ମନ୍ଦିର ଆକ୍ରମଣ ଓ ଲୁଣ୍ଠନ ହେଲେ ବାଦଶାହା ଖୁସି ହେବେ ।

ବାଦଶାହାମାନେ ନିଜ ଦରବାରୀମାନଙ୍କୁ ବିଭିନ୍ନ ସୁବାରେ ଇଲାକା ଅନୁଯାୟୀ 'ଜାଗିରଦାର' ରୂପେ ନିଯୁକ୍ତି ଦେଉଥିଲେ । ଏଇ ଜାଗିରଦାରମାନେ ଲୋକଙ୍କୁ ମାଡ଼ପିଟ୍ କରି 'କର' ଅସୁଲ କରୁଥିଲେ । ହାସିମ୍ ଖାଁଙ୍କ ଅମଳରେ ଓଡ଼ିଶାର 'ଜାଗିରଦାର' ପଦବୀ ଏକ ସମ୍ମାନପ୍ରଦ ପଦବୀ ରୂପେ ଗଣ୍ୟ ହେଉଥିଲା । ସେନାପତି କେଶୋଦାସ ଓଡ଼ିଶାର 'ଜାଗିରଦାର' ହେବାକୁ ଶ୍ରେୟ ମନେ କରିଥିଲେ ।

ସେ ତୀର୍ଥ କରିବା ବାହାନାରେ ପୁରୀ ଆସି ଶ୍ରୀମନ୍ଦିର ଅଧିକାର କରି ଏକ ଦୁର୍ଗରେ ପରିଣତ କରିଦେଲେ ଶ୍ରୀମନ୍ଦିରକୁ । ସେଇ ସୁଯୋଗରେ ସେ କୋଟି କୋଟି ଟଙ୍କାର ଧନରତ୍ନ ଲୁଣ୍ଠନ କରି ନେଇଥିଲେ ।

### ଆକ୍ରମଣର କାରଣ :

୧୬୧୦ ଖ୍ରୀଷ୍ଟାବ୍ଦରେ କେଶୋଦାସ ମାରୁ ଶ୍ରୀମନ୍ଦିର ଲୁଣ୍ଠନ କରିଥିଲେ । ସେ ପ୍ରଥମେ ଥିଲେ କଟକରେ ଥିବା ହାସିମ୍ ଖାଁର ଜଣେ ପଦାଧିକାରୀ । କେଶୋଦାସ ଥିଲେ ରାଜପୁତ । କେତେକ ହିନ୍ଦୁ ସୈନିକଙ୍କୁ ଧରି ସେ କଟକଠାରୁ ପୁରୀ ଆସିଲେ ଶ୍ରୀମନ୍ଦିର ଲୁଣ୍ଠନ କରିବାର ଉଦ୍ଦେଶ୍ୟ ନେଇ । ସେତେବେଳକୁ ସେ 'ଜାୟଗିରି' ବା ଜାଗିରଦାର ପଦବୀ ପାଇ ସାରିଥିଲେ ।

ଜଣେ ହିନ୍ଦୁ ରାଜପୁତଙ୍କର ଏତାଦୃଶ କାର୍ଯ୍ୟକଳାପ ପଛରେ ଯେଉଁ ଉଦ୍ଦେଶ୍ୟ ରହିଥିଲା, ତାହା ତତ୍‌କାଳୀନ ଇତିହାସକୁ ଅଧ୍ୟୟନ କଲେ ସ୍ପଷ୍ଟ ଜଣାପଡ଼ୁଛି। ତାହାର କାରଣ ଗୁଡ଼ିକ ହେଲା :-

୧- ୧୬୧୦ ଖ୍ରୀଷ୍ଟାବ୍ଦ ବେଳକୁ ଖୋର୍ଦ୍ଧା ରାଜା ପୁରୁଷୋତ୍ତମ ଦେବ ଦିଲ୍ଲୀ ମୋଗଲ ସମ୍ରାଟଙ୍କ ବଶ୍ୟତା ସ୍ୱୀକାର କରିଥିଲେ ମଧ୍ୟ କାର୍ଯ୍ୟ ଦୃଷ୍ଟିରୁ ସ୍ୱାଧୀନ ଥିଲେ। ଏହା ହାସିମ୍ ଖାଁଙ୍କ ଦେହରେ ଯାଇ ନଥିଲା।

୨- ସେତେବେଳେ ମୋଗଲ ଦରବାର କର୍ମଚାରୀମାନେ ଅର୍ଦ୍ଧସ୍ୱାଧୀନ ରାଜ୍ୟଗୁଡ଼ିକରେ ଅତ୍ୟାଚାର କରିପାରୁ ନଥିଲେ।

୩- ଫଳରେ ଧନରତ୍ନ ଆହରଣ ହୋଇପାରୁ ନଥିଲା।

୪- ଅର୍ଦ୍ଧସ୍ୱାଧୀନ ରାଜ୍ୟଗୁଡ଼ିକୁ ଲୋପ କରିବାର ପ୍ରଚେଷ୍ଟାରେ ତତ୍‌ସମ୍ପୃକ୍ତ ସୁବାଦାରମାନେ ଉଦ୍ୟମ ଚଳାଉଥିଲେ।

୫- ଯେ ଦିଗରେ ଯେଉଁ କର୍ମଚାରୀ ଯେତେ ଆଗୁଆ ହେଉଥିଲା ସେ ସେତେ ସମ୍ମାନ ପାଉଥିଲା ଦିଲ୍ଲୀ ଦରବାରରୁ।

୬- ଉକ୍ତ କର୍ମଚାରୀମାନଙ୍କ ପ୍ରତିପତ୍ତି ମଧ୍ୟ ମୋଗଲ ଦରବାରରେ ବୃଦ୍ଧି ପାଉଥିଲା।

କେଶୋଦାସ 'ଜାୟଗିରି' ପଦବୀ ପାଇବା ପରେ ମୋଗଲ ଦରବାରର ଦୃଷ୍ଟି ଆକର୍ଷଣ କରିବାର ସୁଯୋଗରେ ଥିଲେ। ହାସିମ ଖାଁ ବି ଜଣେ ଜାୟଗିରି ପାଇଥିବା ବ୍ୟକ୍ତିଙ୍କ କାନ୍ଧରେ ତଲୱାର ଥୋଇ ନାଁ ନେଇଯିବା ଲକ୍ଷ୍ୟରେ ଥିଲେ। ବ୍ୟକ୍ତିଗତ ଆକାଂକ୍ଷା ଭିତରେ ରହିଲା ଓ ପରେ ସଲାସୁତୁରା ହୋଇ ଆକ୍ରମଣ ଯୋଜନା ହୋଇଥିଲା।

ପୂର୍ବରୁ କୁହାଯାଇଛି କେଶୋଦାସ ମୋଗଲ ଦରବାରରେ ନିଜର ପତିଆରା ବୃଦ୍ଧି କରିବା ଉଦ୍ଦେଶ୍ୟରେ ପୁରୀ ମନ୍ଦିର ଆକ୍ରମଣ ଓ ଲୁଣ୍ଠନ କରି ପୁରୁଷୋତ୍ତମ ଦେବଙ୍କ ସ୍ୱାଧୀନ କାର୍ଯ୍ୟଧାରାକୁ ଚୁରମାର କରିବାର ଲକ୍ଷ୍ୟରେ ହିଁ ପୁରୀ ଆସିଥିଲେ।

## ଆକ୍ରମଣ :

ସେତେବେଳେ ରଥଯାତ୍ରା ସମୟ। ପୁରୁଷୋତ୍ତମ ଦେବ ସେ ବର୍ଷ ରଥଯାତ୍ରାକୁ ପୁରୀ ନ ଆସି ଖୋର୍ଦ୍ଧା ରାଜବାଟୀରେ ଥିଲେ। ରଥଯାତ୍ରାରେ ଗଜପତିଙ୍କର ଦୁଇଟି ମୁଖ୍ୟ ସେବା ରହିଛି। ଶ୍ରୀଗୁଣ୍ଡିଚା ଦିନ ରଥ ଉପରେ ଛେରାପହଁରା ଏବଂ ବାହୁଡ଼ା ଦିନ ରଥ ଉପରେ ଛେରାପହଁରା। ଗଜପତି ଯଦି କୌଣସି କାରଣରୁ ରଥଯାତ୍ରାରେ ଉପସ୍ଥିତ ରହି ନ ପାରନ୍ତି ତେବେ ତାଙ୍କର ପ୍ରତିନିଧି ରୂପେ 'ମୁଦିରଥ' ଗଜପତିଙ୍କ ସେବାକାର୍ଯ୍ୟ ତୁଲାଇ ଥାନ୍ତି। ସେଥିପାଇଁ ଗଜପତିଙ୍କର ଶ୍ରୀଗୁଣ୍ଡିଚା ଯାତ୍ରା ପାଇଁ ବିଶେଷ ଚିନ୍ତା କରିବାର ନଥିଲା।

ମାତ୍ର ସେ ଯେତେବେଳେ ଶୁଣିଲେ ହାସିମ୍ ଖାଁ ନିଜେ ନ ଆସି ଜାୟଗିରି ପାଇଥିବା ରାଜପୁତ୍ କୋଶୋଦାସ ଆସି ଶ୍ରୀମନ୍ଦିର ଭଣ୍ଡାରଘରୁ ତିନି କୋଟି ଟଙ୍କାରୁ ଉର୍ଦ୍ଧ୍ୱ ସମ୍ପତ୍ତି ଲୁଣ୍ଠନ କରି ସାରିଲାଣି ଏବଂ ଅନ୍ୟ ସ୍ଥାନରୁ ମୂଲ୍ୟବାନ ପଦାର୍ଥ ସବୁ ଆଣି ଭେଟିଦେବାକୁ ସେବକମାନଙ୍କୁ ନିର୍ଦ୍ଦେଶ ଦେଉଛି, ପୁଣି ଯେଉଁ ସେବକ ତାଙ୍କ କଥା ନ ମାନିଲା, ତାକୁ କଠୋର ଶରୀରିକ ଦଣ୍ଡ ଦିଆଯାଉଛି ! ବଡ଼ଦାଣ୍ଡରେ ଥିବା ରଥଗୁଡ଼ିକୁ ପୋଡ଼ି ଦିଆଗଲାଣି ! ସେତେବେଳେ ସେ ବିବ୍ରତ ହୋଇପଡ଼ିଲେ ଏବଂ ସଙ୍ଗେ ସଙ୍ଗେ ଯୁଦ୍ଧଯାତ୍ରା ଆରମ୍ଭ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ୧୦ ହଜାର ଅଶ୍ୱାରୋହୀ, ୩/୪ ହଜାର ପଦାତିକ ଏବଂ ବହୁ ଯୁଦ୍ଧରଥ ସଙ୍ଗରେ ଧରି ଗଜପତି ପୁରୀ ଅଭିମୁଖେ ଯୁଦ୍ଧଯାତ୍ରା ଆରମ୍ଭ କରିଥିଲେ ।

ପୁରୀରେ ପହଞ୍ଚିବା ମାତ୍ରେ ଗଜପତିଙ୍କର ନିର୍ଦ୍ଦେଶ ଅନୁଯାୟୀ ବାହାରପଟୁ ଶ୍ରୀମନ୍ଦିର ଘେରାଉ କରାଗଲା । ଚାରିଦ୍ୱାରରେ ଦୁର୍ଦ୍ଧର୍ଷ ଗଡ଼ୁଆ ପାଇକମାନେ ଜଗି ରହିଲେ । ଯୁଦ୍ଧ ରଥଗୁଡ଼ିକ ଶ୍ରୀମନ୍ଦିରର ବାହାର ପଟ ମେଘନାଦ ପ୍ରାଚୀରକୁ ଲାଗି ରଖାଗଲା । ତାରି ଉପରେ ଚଢ଼ି ମେଘନାଦ ପ୍ରାଚୀର ଡେଇଁ ସୈନ୍ୟମାନେ ଶ୍ରୀମନ୍ଦିର ଭିତରେ ପ୍ରବେଶ କରିବା ଯୋଜନା କରା ଯାଇଥିଲା । କାରଣ କେଶୋଦାସର ସୈନିକମାନେ ଶ୍ରୀମନ୍ଦିରର ଚାରିଦ୍ୱାର ଭିତରପଟୁ ବନ୍ଦ କରି ଦେଇଥିଲେ ।

ଗଜପତିଙ୍କର ଲଢ଼ୁଆ ସୈନ୍ୟ ପାଇକ ବୀରମାନଙ୍କ ରଣହୁଙ୍କାରରେ ବଡ଼ଦାଣ୍ଡ ନିନାଦିତ ହେଲା । କେଶୋଦାସ ସେଣେ ଶଙ୍କିତ ହୋଇପଡ଼ିଲା । ଶ୍ରୀମନ୍ଦିରରୁ ବାହାରି ଯିବାର ଉପାୟ ମଧ୍ୟ ଆଉ ନଥିଲା ।

ଶେଷକୁ ପ୍ରତିଆକ୍ରମଣ ଆରମ୍ଭ ହେଲା । କେଶୋଦାସର ସୈନିକମାନେ ବଡ଼ ବଡ଼ ବାଉଁଶରେ ଲୁଗା ଗୁଡ଼ାଇ ମନ୍ଦିରରେ ବ୍ୟବହୃତ ହେବାପାଇଁ ଥିବା ତେଲରେ ବୁଡ଼ାଇ ନିଆଁ ଲଗାଇ ଦେଲେ । ସେଇ ନିଆଁ ମାଧ୍ୟମରେ ଗଜପତିଙ୍କର ବାହାରପଟେ ଥିବା ରଥଗୁଡ଼ିକୁ ପୋଡ଼ିବା ଆରମ୍ଭ କଲା । ବହୁ ସୈନିକ ମୃତାହତ ହେଲେ । ଅନେକ ରଥ ପୋଡ଼ି ପାଉଁଶ ହୋଇଗଲା । ମେଘନାଦ ପ୍ରାଚୀର ଡେଇଁ ଭିତରକୁ ପ୍ରବେଶ କରିବା ଯୋଜନା ଗଜପତିଙ୍କର ପରାହତ ହେଲା । ରଥପୋଡ଼ିର ବିଭତ୍ସ ଦୃଶ୍ୟ ରାଜାଙ୍କୁ ସ୍ତବ୍ଧ କରିଦେଲା । କିନ୍ତୁ ହଟି ଯିବାର ପ୍ରଶ୍ନ ଉଠୁନି । ପୁନଃ ପ୍ରତିଆକ୍ରମଣର ସୁଚିନ୍ତିତ ଯୋଜନାରେ ସେ କାର୍ଯ୍ୟରତ । ମହାପ୍ରଭୁଙ୍କ ରଥ ବଡ଼ଦାଣ୍ଡରେ ପୋଡ଼ି ଧ୍ୱଂସ ହୋଇ ଯାଇଥିଲା । ଯେବେ ଯୁଦ୍ଧ ରଥ ଗୁଡ଼ିକ ବି ଜଳିପୋଡ଼ି ଧ୍ୱଂସ ହୋଇଗଲା । ବିଦେଶାଗତ ଯାତ୍ରୀ ଏବଂ ଦର୍ଶନାର୍ଥୀ କିଏ କୁଆଡ଼େ ଛିନ୍ନଛତ୍ର । ବଡ଼ଦାଣ୍ଡରେ ରଥଯାତ୍ରାର କୋଳାହଳ ପରିବର୍ତ୍ତେ ଯୁଦ୍ଧ ରଣହୁଙ୍କାରର କୋଳାହଳ । ଆକ୍ରମିତଙ୍କର ଆର୍ତ୍ତନାଦରେ ଚଉଦିଗ ପ୍ରକମ୍ପିତ । ବ୍ରାହ୍ମଣ, ସେବକ, ସାଧାରଣ ଜନତା ସମସ୍ତେ ସନ୍ତ୍ରସ୍ତ । ମହାପ୍ରଭୁଙ୍କର ସମସ୍ତ ନୀତି ବନ୍ଦ । ଯେ ସବୁ ଗଜପତିଙ୍କୁ ଅହରହ ବ୍ୟଥିତ କରୁଥିଲେ ମଧ୍ୟ ପରବର୍ତ୍ତୀ ଆକ୍ରମଣର ଯୋଜନାରେ ସେ ବିଚାର ବିମର୍ଷ କରୁଥାନ୍ତି । ପାଖେ ପାଖେ ରହିଥାନ୍ତି ରାଜଗୁରୁ, ମନ୍ତ୍ରୀ, ସେବାୟତ ମାନଙ୍କର ମୁଖିଆମାନେ । ପ୍ରତ୍ୟେକ ସେବାୟତ ଗଜପତିଙ୍କର ସମସ୍ୟାକୁ ନିଜ ସମସ୍ୟା ବୋଲି ମନେ କରି ଆନୁଗତ୍ୟ ପ୍ରକାଶ କରୁଥାନ୍ତି ।

ତେଣେ ଗଡୁଆ ପାଇକମାନେ ଶ୍ରୀମନ୍ଦିର ଘେରାଉ କରିଥାନ୍ତି ଅହର୍ନିଶ । ହଟିଯିବାର ପ୍ରଶ୍ନ ନାହିଁ ।

କେଶୋଦାସ ଭାବିଥିଲା ଯୁଦ୍ଧରଥଗୁଡ଼ିକ ପୋଡ଼ିଗଲେ ସୈନ୍ୟମାନଙ୍କର ମନୋବଳ ଭାଙ୍ଗିଯିବ । ସେମାନେ ହଟିଯିବେ । ମାତ୍ର ଓଲଟା ହେଲା । ଦିନ ପରେ ଦିନ ରାତି ପରେ ରାତି ଗଜପତିଙ୍କ ସୈନ୍ୟମାନେ ଅବିଚଳିତ ଭାବେ ଘେରାଉ କରି ରହିଲେ । କେଶୋଦାସର ମନୋବଳ ଦୁର୍ବଳ ହେବାକୁ ଲାଗିଲା । ଶ୍ରୀମନ୍ଦିର ଭିତରେ ଥିବା ଖାଦ୍ୟସାମଗ୍ରୀ ହିଁ କେଶୋଦାସର ସୈନିକମାନଙ୍କର ଶେଷ ଅବଲମ୍ବନ । କେଶୋଦାସ ବିପଦରେ ପଡ଼ିଥିବା ସମ୍ବାଦ କୌଣସି ପ୍ରକାରେ ବଙ୍ଗ ସୁବାଦାର ଇସଲାମ ଖାଁଙ୍କ ନିକଟରେ ପହଞ୍ଚିବାରୁ ସେ ଖ୍ୱାଜା ତହିର ମହମ୍ମଦ ବକ୍‌ସି ନାମକ ଜଣେ ସେନାପତିଙ୍କୁ ଓଡ଼ିଶା ସୁବାଦାର ହାସିମ୍ ଖାଁଙ୍କ ନିକଟକୁ ପଠାଇଥିଲେ (ଖୁରୁଧା ଇତିହାସ, ପୃ-୪୯) । ଏକ ବିଶାଳ ସେନାବାହିନୀର ନେତୃତ୍ୱ ନେଇ ପୁରୀକୁ ସାମରିକ ଅଭିଯାନ ଆରମ୍ଭ କରିବାକୁ ହାସିମ୍ ଖାଁଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ହାସିମ୍ ଖାଁ ଓ ମହମ୍ମଦ ବକ୍‌ସି କଟକରୁ ସୈନ୍ୟବାହିନୀ ଧରି ପୁରୀରେ ପହଞ୍ଚିଲେ କେଶୋଦାସଙ୍କୁ ସାହାଯ୍ୟ କରିବାକୁ । ଗଜପତିଙ୍କର ସେନାମାନେ ଶ୍ରୀମନ୍ଦିର ଭିତରକୁ ପ୍ରବେଶ କରିବା ପାଇଁ ଚେଷ୍ଟା କରି ଶ୍ରୀମନ୍ଦିର ଭିତରୁ ଆକ୍ରମଣର ସମ୍ମୁଖୀନ ହେଉଥିଲେ । ମାତ୍ର ହାସିମ୍ ଖାଁ ସେନାମାନେ ପୁରୀରେ ପହଞ୍ଚିବାରୁ ବାହାରୁ ମଧ୍ୟ ଆକ୍ରମଣର ଆଶଙ୍କା ସୃଷ୍ଟି ହେଲା । ତାହା ହିଁ ସତ୍ୟରେ ପରିଣତ ହେଲା । ଓଡ଼ିଶା ସୁବାଦାର ଏବଂ ବଙ୍ଗର ସେନାପତିଙ୍କ ନେତୃତ୍ୱରେ ଶତ୍ରୁପକ୍ଷ ସେନାମାନେ ବାହାରୁ ଆକ୍ରମଣ ଆରମ୍ଭ କରିଦେଲେ । ବାଧ ହେଲେ ପୁରୁଷୋତ୍ତମ ଦେବ ସନ୍ଧି କରିବାକୁ । ମନ୍ତ୍ରୀ ବିଦ୍ୟାଧରଙ୍କ ପରାମର୍ଶରେ ଯେ ସନ୍ଧି ସ୍ୱାକ୍ଷରିତ ହୋଇଥିଲା ।

**ସନ୍ଧିର ସର୍ତ୍ତ** - (ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଅନୁଯାୟୀ)

୧. ପୁରୁଷୋତ୍ତମ ଦେବ ନିଜ କନ୍ୟାଙ୍କୁ ଦିଲ୍ଲୀ ସମ୍ରାଟଙ୍କୁ ଭେଟି ଦେବେ ।

୨. ଦିଲ୍ଲୀ ସମ୍ରାଟଙ୍କୁ ତିନି ଲକ୍ଷ ଟଙ୍କା ଦେବେ ।

୩. ପୁରୁଷୋତ୍ତମ ଦେବ ନିଜ ଭଉଣୀଙ୍କୁ କେଶୋଦାସ ସହିତ ବିବାହ ଦେବେ ।

୪. କେଶୋଦାସକୁ ଲକ୍ଷେ ଟଙ୍କା ଯୌତୁକ ଦେବେ ।

ଯେ ସନ୍ଧିର ସର୍ତ୍ତ ସବୁ ସର୍ବମାନ୍ୟ ନୁହେଁ । ଅନେକ ଐତିହାସିକ ଏହି ସର୍ତ୍ତକୁ ଗ୍ରହଣ କରିବାକୁ ରାଜି ହୋଇନାହାନ୍ତି । ଅରାଜି ହେବାର ବଳିଷ୍ଠ ଯୁକ୍ତି ଉପସ୍ଥାପନ ବି କରି ନାହାନ୍ତି ।

ସନ୍ଧି ହେବାପରେ କେଶୋଦାସ ଶ୍ରୀମନ୍ଦିର ଭିତରୁ ନିଜର ୪୦୦ ସୈନିକଙ୍କ ସହ ବଡ଼ଦାଣ୍ଡକୁ ବାହାରି ଆସିଥିଲେ । ସେଠାରୁ ୪୦ ଜଣ ଅଶ୍ୱାରୋହୀ ସୈନ୍ୟଙ୍କ ସହ ଖୋର୍ଦ୍ଧାରେ

ପହଞ୍ଚି ପୁରୁଷୋତ୍ତମ ଦେବଙ୍କ ଭଉଣୀକୁ ବିବାହ କଲେ । ଯୌତୁକ ରୂପେ ଗୋଟିଏ ଅକର୍ମଣ୍ୟ ଓ ଦୁର୍ବଳ ହାତୀ ଦିଆଯିବାରୁ ସେ ଜବରଦସ୍ତ ଗୋଟିଏ ବଡ଼ହାତୀ ଓ ୫ଟି ମାଈ ହାତୀ ଆଣିଲେ । ଯେଥିରେ ଉତ୍ୟକ୍ତ ଗଜପତିଙ୍କ ସୈନ୍ୟ ତାଙ୍କୁ ଆକ୍ରମଣ କରିବାରୁ ପ୍ରଥମେ ସ୍ତ୍ରୀଙ୍କୁ ଘୋଡ଼ାରେ ବସାଇ ପଠାଇ ଦେବାପରେ ସୈନ୍ୟଙ୍କୁ ହତ୍ୟାକରି ପୁରୀ ଫେରିଲେ । ପୁରୀରେ ପହଞ୍ଚି ସର୍ତ୍ତ ପୂରଣ କରିବାକୁ ରାଜାଙ୍କୁ ଧମକଦେଇ ଚିଠି ଲେଖିଲେ । ରାଜା ମଧ୍ୟ ଭୟରେ ସେ ସବୁ ପଠାଇଦେଲେ ।

ଏହି ସମୟରେ ସାକ୍ଷାତ ହେଲା ତହିର ମହମ୍ମଦ ବକ୍ସି ଓ ହାସିମ୍ ଖାଁଙ୍କ ସହିତ । କେଶୋଦାସ ସେମାନଙ୍କୁ କଥା କହି ନଥିଲେ କ୍ରୋଧରେ । ପରେ ଅବଶ୍ୟ ବକ୍ସିଙ୍କ ସହ ସାକ୍ଷାତ ହେଲା । ତା ପରେ ୪୦୦ ରାଜପୁତ୍ ସୈନ୍ୟଙ୍କୁ ସେମାନଙ୍କ ଭୀରୁତା ଯୋଗୁଁ କାର୍ଯ୍ୟରୁ ତଡ଼ି ଦେଇଥିଲେ । (ଖୁ.ଇ., ପୃ-୪୯)

ବାସ୍ତବରେ ବିଶାଳ ସେନାବାହିନୀ ପୁରୀ ଆଡ଼କୁ ଆସୁଛି ଯୁଦ୍ଧ କରିବାକୁ ଏହି ସମ୍ବାଦ ଗଜପତିଙ୍କ ମନୋବଳ ପ୍ରଥମେ ଭାଙ୍ଗିଦେଲା ପରି ମନେ ହୁଏ । ସେ ଦୁଇପଟରୁ ଆକ୍ରମଣ ହେବା କଥା ଆଶଙ୍କା କଲେ । ସାମନାରୁ ମନ୍ଦିର ଭିତରୁ ଆକ୍ରମଣ ଚାଲୁ ରହିଥିବା ବେଳେ ପଛରୁ ବିଶାଳ ସେନାବାହିନୀ ମଧ୍ୟ ଆକ୍ରମଣ ଆରମ୍ଭ କରିଦେଲେ । ତେବେ ଖୋର୍ଦ୍ଧା ଫେରିଯିବା ପୂର୍ବରୁ କୌଣସି ସମାଧାନ ନ କରି ଫେରିବେ ନାହିଁ ବୋଲି ସେ ନିଶ୍ଚିତ ହୋଇଥିଲେ । ଯାର ଦୁଇଟି କାରଣ ଲକ୍ଷଣୀୟ ।

(୧) ପୁରୀରୁ ଯେପରି କୌଣସି ବିନା ସମାଧାନରେ ଆକ୍ରମଣକାରୀଙ୍କ ହାତରେ ଶ୍ରୀମନ୍ଦିରକୁ ଟେକିଦେଇ ଫେରିଯିବା ଦ୍ୱାରା ନିଜ ଲୋକଙ୍କ ପାଖରେ ନିନ୍ଦନୀୟ ହେବେ । ଜନସାଧାରଣ ଭାବିବେ ଯେ ଶ୍ରୀମନ୍ଦିରରେ ପୁନଃ ପୂଜାପ୍ରତିଷ୍ଠା ନିମନ୍ତେ ଗଜପତି କିଛି କରିପାରିଲେ ନାହିଁ ।

(୨) ସମାଧାନ ନ କରି ଫେରିଗଲେ ମଧ୍ୟ ହାସିମ୍ ଖାଁ ଓ ତାଙ୍କ ବିଶାଳ ସେନାବାହିନୀର ଆକ୍ରମଣ ଚାଲୁରହିବ । ଧନ-ଜୀବନ ନିଶ୍ଚୟ ନଷ୍ଟ ହେବ । ତେଣୁ ଶାନ୍ତି ପ୍ରତିଷ୍ଠା ପାଇଁ ସେ ଆଗ୍ରହ ପ୍ରକାଶ କଲାବେଳକୁ ସେଣେ କେଶୋଦାସ ମଧ୍ୟ ଯେପରି ସୁଯୋଗକୁ ଚାହିଁ ବସିଥିଲେ । କାରଣ ସେମାନେ ମଧ୍ୟ ଶ୍ରୀମନ୍ଦିର ଭିତରେ ସବୁପ୍ରକାର ଅସୁବିଧାର ସମ୍ମୁଖୀନ ହୋଇ ସାରିଥିଲେ । ଗଜପତି ଯଦି ଦୃଢ଼ ନିଶ୍ଚିତ ହୋଇ ଆଉ କେତେଘଣ୍ଟା ଯୁଦ୍ଧ ଚାଲୁ ରଖିଥାନ୍ତେ ତେବେ ସେ ଆପେ ଆପେ ପରାଜିତ ହୋଇଥାନ୍ତା ।

ଅନ୍ୟଦିଗରେ ଗଜପତିଙ୍କ ସହିତ ସଂଘର୍ଷରେ କେଶୋଦାସଙ୍କର ଅନେକ ସୈନ୍ୟ ନିହତ ହୋଇ ସାରିଥିଲେ । ଇତିହାସର ବୀବରଣୀ ଅନୁଯାୟୀ ମାତ୍ର ୪୦୦ ସୈନ୍ୟ ଆଉ ତାଙ୍କ ପାଖରେ ଥିଲେ । ଖୋର୍ଦ୍ଧା ରାଜାଙ୍କ ପକ୍ଷରୁ ପୁନଃ ଆକ୍ରମଣର ଗୁଜବରେ ସେମାନେ ବସ୍ତୁତଃ ଭୟଭୀତ ହୋଇ ପଡ଼ିଥିଲେ । ଯେଥିରେ କେଶୋଦାସଙ୍କ ସୈନ୍ୟମାନେ ଭୟଭୀତ

ହୋଇପଡ଼ିବା ସ୍ୱାଭାବିକ । ତେଣୁ ସେମାନେ ଶାନ୍ତି ପ୍ରତିଷ୍ଠା ନିମନ୍ତେ କେଶୋଦାସଙ୍କୁ ପରାମର୍ଶ ଦେଇଥିଲେ । ପ୍ରଥମେ ଅମଙ୍ଗ ହେଲେ ମଧ୍ୟ ପରେ ଖୋର୍ଦ୍ଧାରାଜା ତାଙ୍କର ସର୍ତ୍ତଗୁଡ଼ିକ ଗ୍ରହଣ କରିନେବାରୁ କେଶୋଦାସ ଶାନ୍ତି ପ୍ରତିଷ୍ଠା ପାଇଁ ସମ୍ମତି ପ୍ରକାଶ କରିଥିଲେ ବୋଲି ଡ଼କ୍ଟର ଭବାନୀଚରଣ ରାୟ ମତ ଦେଇଛନ୍ତି । (ପୃ-୪୬)

ଗଜପତି ନିଜ ମନ୍ତ୍ରୀଙ୍କ ସହିତ ପରାମର୍ଶ କରି ସନ୍ଧି ନିମନ୍ତେ ପ୍ରାଥମିକ ପର୍ଯ୍ୟାୟ ଆଲୋଚନା ସ୍ୱରୂପ ଜଣେ ରାଜଦୂତଙ୍କୁ ଶ୍ରୀମନ୍ଦିର ଭିତରକୁ କେଶୋଦାସଙ୍କ ନିକଟକୁ ପଠାଇଥିଲେ । କେଶୋଦାସ ଯେଉଁ ସର୍ତ୍ତଗୁଡ଼ିକ ଉପସ୍ଥାପନ କରିଥିଲେ ତାହା ଖୁବ୍ ଶ୍ରୁତିକଟୁ ଏବଂ ଅସମ୍ମାନଜନକ ଥିଲା । ସେତେବେଳକୁ ପରିସ୍ଥିତି ଯେପରି ଅବସ୍ଥାକୁ ଆସି ଯାଇଥିଲା ଯେ ସନ୍ଧି କରିବା ବ୍ୟତୀତ ଗଜପତିଙ୍କ ନିକଟରେ ଆଉ କୌଣସି ଉପାୟ ନଥିଲା ।

ସନ୍ଧି ପରେ ମୋଗଲ ଦରବାରରେ କେଶୋଦାସଙ୍କୁ ସମ୍ମାନ ମିଳିଲା । ସେ ଯେଉଁ ସ୍ୱାର୍ଥ ନେଇ ଶ୍ରୀମନ୍ଦିର ଲୁଣ୍ଠନ କରିବାକୁ ଆସିଥିଲେ ସେଥିରେ ବିଜୟ ହେବା ସଙ୍ଗେ ସଙ୍ଗେ ଜୋରିମାନା ମଧ୍ୟ ନଗଦ ୩ ଲକ୍ଷ ଟଙ୍କା ଆଦାୟ କରି ପାରିଲେ । ହିନ୍ଦୁ ମନ୍ଦିର ଆକ୍ରମଣ ଏବଂ ଲୁଣ୍ଠନ, ହିନ୍ଦୁ ରମଣୀ ବିବାହ, ଜୋରିମାନା ବାବଦକୁ ଅର୍ଥ ଆଦାୟ ଏବଂ ବଳିଷ୍ଠ ହାତୀ ୬ଟି ଅକ୍ତିଆର କରିବା ପରେ ମୋଗଲ ସାମ୍ରାଜ୍ୟର ଲକ୍ଷ୍ୟ ପୂରଣ ଦିଗରେ ଅସୁବିଧା ରହିଲା କେଉଁଠି ? ପୁଣି ହିନ୍ଦୁ ରାଜପୁତ ହାତରେ ହିନ୍ଦୁମାନଙ୍କର ଯେପରି କ୍ଷତି କରାଯାଇ ପାରିଲା ସେଥିରେ କେଶୋଦାସ ପୁରସ୍କୃତ ହେବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

କ୍ଷମତାଲୋଭୀ କେଶୋଦାସ ଓଡ଼ିଶା ଇତିହାସର ଏକ କଳଙ୍କିତ ମହାନାୟକ । ତାର ଇତିହାସ ଓଡ଼ିଶା ଇତିହାସରେ ସବିଶେଷ ସ୍ଥାନ ପାଇନାହିଁ । ମାତ୍ର ଐତିହାସିକ ମିର୍ଜାନାଥନ୍‌ଙ୍କ କୃତ 'ବହିରିସ୍ତାନ-ଇ-ଘାଇବି' (Baharistan-I-Ghaybi)ର ଇଂରେଜୀ ଅନୁବାଦ ପ୍ରଥମ ଭାଗରେ କେଶୋଦାସ ବିଷୟରେ ସବିଶେଷ ଉଲ୍ଲେଖ ରହିଛି (ପୃ-୩୫-୩୮) । ମାତ୍ର ଶ୍ରୀମନ୍ଦିର ଭିତରେ ଯେତେଦିନ ରହି ଯେଉଁ ହୀରା-ନୀଳା-ସୁନା-ରୂପା ସେ ହସ୍ତଗତ କରିଥିଲା ତାର ସଠିକ୍ ହିସାବ ମିର୍ଜାନାଥନ୍ ଉଲ୍ଲେଖ କରିନାହାଁନ୍ତି ।

### ମୋଗଲ ଦରବାର ପୁରସ୍କାର :

୧- ବାଦଶାହା କେଶୋଦାସଙ୍କୁ ୪୦୦୦ ଅଶ୍ୱାରୋହୀ ସୈନ୍ୟ ରଖିବା ଅଧିକାର ଦେଲେ ।

୨- ତାଙ୍କର ସମ୍ମାନ ବୃଦ୍ଧିପାଇଁ ତାଙ୍କୁ ଏକ ପତାକା ଦେଇଥିଲେ ।

୩- ଅନ୍ୟମାନଙ୍କୁ ଏପରି କାର୍ଯ୍ୟ କରିବା ପାଇଁ ଉତ୍ସାହ ଦେବାପାଇଁ ତାଙ୍କୁ ମୂଲ୍ୟବାନ ପୋଷାକ, ମଣିମୁକ୍ତା ଖଚିତ ଖଣ୍ଡା ଉପହାର ଦେଇଥିଲେ ।

୪- ଏକ ସ୍ୱତନ୍ତ୍ର କମରପଟି ଦାନ କରିଥିଲେ, ଯାହା କେଶୋଦାସ ବ୍ୟବହାର କରିପାରିବେ ।

୫- ଗୋଟିଏ ଭଲ ଘୋଡ଼ା ସର୍ବଦା ବ୍ୟବହାର ପାଇଁ ଉପହାର ଦେଇଥିଲେ ।

୬- ରତ୍ନଖଚିତ ଜିନ୍ ଓ ଲଗାମ୍ ପ୍ରଦାନ କରା ଯାଇଥିଲା ।

କେଶୋଦାସଙ୍କ ଆକ୍ରମଣ ପାଂଜିରେ ସଂକ୍ଷିପ୍ତ ଭାବରେ ସ୍ଥାନିତ ହୋଇଥିଲେ ମଧ୍ୟ ସୁସଙ୍ଗତ ଜଣାଯାଏ । (ଖୁ.ଇ., ପୃ-୫୦) । କେଶୋଦାସଙ୍କ ଆକ୍ରମଣ ଓ ଲୁଣ୍ଠନର ଇତିହାସକୁ ବିଭିନ୍ନ ଦିଗରୁ ତର୍ଜମା କରି ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର କେତୋଟି ବିନ୍ଦୁରେ ପହଞ୍ଚିଛନ୍ତି ।

(୧) ମିର୍ଜାନାଥନ୍ ୧୬୦୮ ଖ୍ରୀ.ରୁ ୧୬୨୪ ଖ୍ରୀ. ମଧ୍ୟରେ ଘଟିଥିବା ସମସ୍ତ ଯୁଦ୍ଧର ବିବରଣ ଦେଇଛନ୍ତି । ତାଙ୍କ ମତରେ ପୁରୀ ମନ୍ଦିର ଆକ୍ରମଣ ୧୬୦୯-୧୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଘଟିଥିଲା । ସେ ଗୌହାଟୀରେ ରହୁଥିଲେ । ତେଣୁ ଶୁଣା କଥାରେ ବିଶ୍ୱାସ କରି ଯୁଦ୍ଧ ବିବରଣୀ ଲେଖିଛନ୍ତି ।

(୨) ତେଣୁ ତାଙ୍କ ଲେଖା ଅତିରଂଜିତ, ଦୋଷଦୁଷ୍ଟ ଓ ପ୍ରଶସ୍ତିମୂଳକ ।

(୩) ତିନୋଟି ରଥ ପୋଡ଼ା ହେବା କଥା ଶୁଣି ସେ ଅନେକ ରଥ ପୋଡ଼ା ହେବା କଥା ଲେଖିଛନ୍ତି ।

(୪) ପୁରୁଷୋତ୍ତମ ଦେବ ୩/୪ ଲକ୍ଷ ପାଇକ ନେଇ ପୁରୀ ମନ୍ଦିର ଘେରାଉ କରିଥିବା ବର୍ଣ୍ଣନା ଆଦୌ ବିଶ୍ୱାସ ଯୋଗ୍ୟ ନୁହେଁ । (ଏହି ମତକୁ ପ୍ରମାଣ କରିବା ପାଇଁ ସେ ଖୋର୍ଦ୍ଧାର ତତ୍‌କାଳୀନ ଲୋକସଂଖ୍ୟାକୁ ବିଚାର ପରିସରକୁ ଆଣି ସେ ସମୟରେ ୩/୪ ଲକ୍ଷ ପାଇକ ସଂଗ୍ରହ କରିବା କଳ୍ପନାତୀତ ବୋଲି ମତ ଦେଇଛନ୍ତି ।)

(୫) ଏହି ଦୃଷ୍ଟିରୁ ବିଚାର କରି ମିର୍ଜାନାଥନ୍ ବର୍ଣ୍ଣିତ ସନ୍ଧି ସର୍ତ୍ତକୁ ମଧ୍ୟ ବିଶ୍ୱାସ କରି ନାହାଁନ୍ତି ।

(୬) କାରଣ ଏଭଳି ପ୍ରସିଦ୍ଧ ଘଟଣା ଘଟିଥିଲେ ଜାହାଙ୍ଗୀର ସ୍ୱହସ୍ତଲିଖିତ ଆତ୍ମଚରିତରେ ନିଶ୍ଚୟ ଲିପିବଦ୍ଧ କରିଥାଆନ୍ତେ ।

(୭) କିନ୍ତୁ ଆତ୍ମଚରିତରେ ସନ୍ଧି ବିଷୟ ଉଲ୍ଲେଖ କରାଯାଇ ନାହିଁ ।

(୮) କେଶୋଦାସ ପୁରୁଷୋତ୍ତମ ଦେବଙ୍କୁ ସମ୍ପୂର୍ଣ୍ଣ ରୂପେ ପରାସ୍ତ କରିଥିଲେ । ପୁନଃ ତାଙ୍କୁ ଉଦ୍ଧାର କରିବା ନିମନ୍ତେ ବଙ୍ଗ ଓ ଓଡ଼ିଶାର ସୁବାଦାର ଦ୍ୱୟ ସୈନ୍ୟ ପଠାଇ ନଥାନ୍ତେ ।

(୯) କେଶୋଦାସ ଜିତିଥିଲେ ନିଜର ରାଜପୁତ ସୈନ୍ୟମାନଙ୍କୁ ଭୀରୁତା ଯୋଗୁଁ କାର୍ଯ୍ୟରୁ ତଡ଼ିଦେଇ ନଥାନ୍ତେ । କାରଣ ଜିତିବା ଲୋକ ନିଜ ସୈନ୍ୟଙ୍କୁ ଭୀରୁ ରୂପେ ସ୍ୱୀକାର କରିବ ନାହିଁ କିମ୍ବା କାର୍ଯ୍ୟରୁ ବହିଷ୍କୃତ କରିବ ନାହିଁ ।

ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ ଯୁକ୍ତିରେ ଅନେକ ସତ୍ୟତା ଥାଇପାରେ । ମାତ୍ର କେଶୋଦାସର ଆକ୍ରମଣ ସତ୍ୟ, ଶ୍ରୀମନ୍ଦିର ଭିତରେ ରହି ଲୁଣ୍ଠନ କରିବା ସତ୍ୟ । ରଥ ପୋଡ଼ି

ଦେଇ ଏକ ଅରାଜକତା ସୃଷ୍ଟି କରିବା ସତ୍ୟ । ପୂର୍ବରୁ ଆମେ କହିଛୁ ଯେହେତୁ ମୋଗଲମାନଙ୍କର ଲକ୍ଷ୍ୟ ହିନ୍ଦୁ ମନ୍ଦିର ଆକ୍ରମଣ, ଲୁଣ୍ଠନ ଓ ହିନ୍ଦୁରମଣୀ ଅପରହଣ ବା ଜବରଦସ୍ତ ଉପଭୋଗ କରିବା ତେଣୁ ମିର୍ଜାନାଥନ୍‌ଙ୍କ କଥା କାହିଁକି ବା ଅସତ୍ୟ ହେବ । ବର୍ବରତା ହିଁ ସେମାନଙ୍କର ସଉକ ।

ରଥଗୁଡ଼ିକ ପୋଡ଼ି ଯାଇଥିବାରୁ ବିମାନରେ ପ୍ରଭୁଙ୍କୁ ବହୁ କଷ୍ଟରେ ଶ୍ରୀମନ୍ଦିରକୁ ଅଣାଗଲା । ସେତେବେଳେ ମହାପ୍ରଭୁ ଦୀର୍ଘ ଆଠମାସ ବାହାରେ ରହି ଯାଇଥିବାରୁ ମହାପ୍ରସାଦ ହୋଇ ପାରି ନଥିଲା । (ବହିରିସ୍ତାନ-ଇ-ଘାଇବି) ।

କେଶୋଦାସ ଆକ୍ରମଣ ସମ୍ବନ୍ଧରେ ମାଦଳାପାଂଜିର ୬୫ ପୃଷ୍ଠାରେ ଉଲ୍ଲିଖିତ ଅଛି,- "ଏ ମହାରାଜାଙ୍କ ଯାତ୍ରୀପଣେ କେଶୋମାରୁ ଆସି ଗୁଣ୍ଡିଚାଯାତ୍ରା ଦେଖି ଦୁଇ ଦେଉଳ ଧଇଲା । ପରମେଶ୍ୱର ଗୁଣ୍ଡିଚାଘରେ ବିଜେ କରିଥିଲେ । ତିନିରଥେ ପୋଡ଼ିଦେଲା । ପରମେଶ୍ୱରଙ୍କୁ ଚଉଦୋଳରେ ବିଜେ କରାଇଲେ । ମା୮ସ ପରିଯନ୍ତେ ଦର୍ବନ୍ଧାରେ ରହିଲା । ପରମେଶ୍ୱରଙ୍କୁ ଶିତଳଭୋଗ ମୁଣୋହି ହେଉଥିଲେ । ରାଜାଙ୍କ ସଙ୍ଗେ ପୀରତି ହୋଇଗଲା । ଗୁଣ୍ଡିଚାଘର ଠାରେ ଅନେକ ମାଇଲା ।" କେଶୋଦାସ ମାରୁ ଜାତିରେ ହିନ୍ଦୁଥାଇ, ଛଦ୍ମ ବେଶରେ ଗୁଣ୍ଡିଚାଯାତ୍ରା ଦେଖିବାକୁ ଆସି ତିନିରଥ ପୋଡ଼ିଦେଲା ଓ ପୁରୁଷୋତ୍ତମଦେବଙ୍କ ସହିତ ସନ୍ଧି ସ୍ଥାପନ କରିବ ବୋଲି ଆଶା ପ୍ରକାଶ କରି, ବିଶ୍ୱାସଘାତକ ହୋଇ ପୁରୁଷୋତ୍ତମ ଦେବଙ୍କର ଅନେକ ସୈନ୍ୟଙ୍କୁ ମାଇଲା ବା ହତ୍ୟା କଲା ।

ଏହା ଥିଲା ଶ୍ରୀମନ୍ଦିରରୁ ଏକ ବଡ଼ ଲୁଣ୍ଠନ । ଉକ୍ତ ଲୁଣ୍ଠନ ଧନ ଦିଲ୍ଲୀ ବାଦଶାହାଙ୍କ ପର୍ଯ୍ୟନ୍ତ ଯାଇଥିଲା ବୋଲି ଇତିହାସରୁ ଜଣାପଡୁଛି । ଏହା ବାଦ କେତେ ଯେ ଛୋଟ ଛୋଟ ଲୁଣ୍ଠନର ଇତିହାସ କାଳର କରାଳ ଗତିରେ ଲୀନ ହୋଇ ଯାଇ ନଥିବ କିଏ କହିବ ! କାରଣ ୧୬୦୭ ଖ୍ରୀ.ରୁ ହାସିମ୍ ଖାଁଙ୍କ ଶାସନ ଆରମ୍ଭ ହୋଇ ସାରିଥିଲା ୧୬୧୧ ଖ୍ରୀ.ରେ । ଯେ ଚାରିବର୍ଷ ଥିଲା ଓଡ଼ିଶା ପାଇଁ ଲୁଣ୍ଠନର ବର୍ଷ ।

**ଉପସଂହାର :**

ଯେଥିରୁ ଜଣାପଡୁଛି ଗୁଣ୍ଡିଚା ଯାତ୍ରାରେ ପ୍ରଭୁ ଗୁଣ୍ଡିଚା ଘରେ ଥିଲେ । ସମସ୍ତଙ୍କ ନଜର ଗୁଣ୍ଡିଚା ଘରଠାରେ କେନ୍ଦ୍ରୀଭୂତ ଥିଲା । ଏହି ସମୟରେ କେଶୋଦାସ ଶ୍ରୀଜଗନ୍ନାଥ ମନ୍ଦିର ଦର୍ଶନ କରିବାର ଛଳନାରେ ମନ୍ଦିର ଭିତରେ ପ୍ରବେଶ କରିଥିଲେ । ସଙ୍ଗରେ ଛଦ୍ମବେଶରେ ରାଜପୁତ ସୈନ୍ୟଙ୍କୁ ନେଇଥିଲେ । ସେମାନେ ଜଗନ୍ନାଥଙ୍କ ଭଣ୍ଡାର ଲୁଣ୍ଠନ କରିନେଲେ । ତିନି ରଥକୁ ପୋଡ଼ିଦେଲେ । ପୁରୁଷୋତ୍ତମ ଦେବଙ୍କ ସହିତ ସନ୍ଧି କରିବାର ଛଳନା କରି ଓଡ଼ିଆ ସୈନ୍ୟଙ୍କୁ ହତ୍ୟା କରିଥିଲେ । ହିନ୍ଦୁ ହୋଇ ହିନ୍ଦୁ ମନ୍ଦିର ଆକ୍ରମଣ କରି ଲୁଣ୍ଠନ କରିଥିବାରୁ ଜାହାଙ୍ଗୀରଙ୍କର ପ୍ରିୟ ହୋଇ ପାରିଥିଲେ ।

ବୀର ରାଜପୁତ ଜାତିର ଯେ ହେଉଛି ନୈତିକ ଅଧପତନର ଏକ ଜ୍ୱଳନ୍ତ ନିଦର୍ଶନ । ନିଜର କ୍ଷମତା ଲିପ୍‌ସା ପାଇଁ ସେ ଯେ କୌଣସି ନିମ୍ନସ୍ତରକୁ ଯାଇ ପାରିବାର ଏକ ବ୍ୟକ୍ତିତ୍ୱ । ନିଜ ବାଦଶାହାଙ୍କୁ ଖୁସି କରିବା ପାଇଁ ରକ୍ତରେ ସେ ହୋରି ଖେଳିପାରେ । ବିଶ୍ୱାସରେ ବିଷ ଦେଇପାରେ । ନିଜ ଧର୍ମର ଠାକୁର ଘର ଭଣ୍ଡାର ଖାଲି କରିଦେଇ ପାରେ । ସେୟା ତ ସେ କରିଛି । ଶ୍ରୀମନ୍ଦିର ରତ୍ନଭଣ୍ଡାରରୁ ଅସଂଖ୍ୟ ଧନ-ରତ୍ନ ସେ ଜାହାଙ୍ଗୀରଙ୍କ ପର୍ଯ୍ୟନ୍ତ ପଠାଇ ପାରିଥିଲା । ନଚେତ୍ ଜଣେ ଜାଗିରଦାରର ପଦୋନ୍ନତି କଥା ପ୍ରଶସ୍ତିମୂଳକ ଭାବରେ ଜଣେ ବାଦଶାହା ନିଜ ଜୀବନୀଗ୍ରନ୍ଥରେ ଉଲ୍ଲେଖ କରି ନଥାନ୍ତେ । ଜାହାଙ୍ଗୀର ଲେଖିଥିଲେ -

"(Kesho Das Maru, who is Rajput of the province of Mairtha and is greater in Loyalty than his contemporaries. I promoted his to the rank of 1500. (Tuzuk-i-Jahangiri) (ତୁଜୁକ-ଇ-ଜାହାଙ୍ଗୀର) ବା ଜାହାଙ୍ଗୀରଙ୍କ ଆତ୍ମଜୀବନ ଚରିତ, ଇଂରେଜୀ ଅନୁବାଦ, ପୃ-୨୧ ।






## କଲ୍ୟାଣମଲ୍ଲଙ୍କ ଆକ୍ରମଣ ଓ ଲୁଣ୍ଠନ

ହାସିମ୍ ଖାଁଙ୍କ ପରେ ୧୬୧୧ ଖ୍ରୀଷ୍ଟାବ୍ଦରେ ରାଜା କଲ୍ୟାଣମଲ୍ଲ ଓଡ଼ିଶାର ସୁବାଦାର ହୋଇ ଆସିଥିଲେ । ସେ ୧୬୧୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାର ସୁବାଦାର ଥିଲେ । ସେ କଟକଠାରେ ୬.୭.୧୬୧୧ ଖ୍ରୀ.ରେ ଦାୟିତ୍ୱ ନେବାପରେ କେଶୋଦାସ ମାରୁଙ୍କ ପରି ବାଦଶାହା ଜାହାଙ୍ଗୀରଙ୍କ ସନ୍ତୋଷ ପାଇଁ ପୁନଃ ସେହିଦିନୁ ଖୁରୁଧା ରାଜ୍ୟ ଆକ୍ରମଣ କରିଥିଲେ । ମିର୍ଜାନାଥନ୍‌ଙ୍କ ବର୍ଣ୍ଣନା ଅନୁଯାୟୀ -

The Raja (Kalyan) thought in his mind that he would accomplish such a service which would not only draw the attention of his master but would also keep the high and low of that region under his control. He then put in the fore front of his mind the idea of the conquest of Khurdah and marched against Raja Purushottama Deva. When a large portion of his territory was attacked and looted. Purushottama Deva x x x x expressed his desire to surrender. He offered his daughter as a present for the service of the Emperor and three hundred thousand rupees as peshkash to the imperial exchequer and the best of his elephants Sisnaga for the use of the Emperor. Thus he submitted to the imperialists by handing over the bride to the Raja with a hundred thousand rupees and saved himself from the attack of the Raja and the imperial officers. The Raja after gaining the victory returned to Cuttack an sent his bride (dolah) along with the elephant Sisnag and all the peshkash in cash and kind in charge of trustworthy officers to the august court. (ବହିରିସ୍ତାନ-ଇ-ଘାଇବି, ପୃ-୧୪୪-୧୫୫) ।

ଉପରୋକ୍ତ ଲେଖାରୁ ଜଣାପଡୁଛି "ରାଜା କଲ୍ୟାଣମଲ୍ଲ ଦିଲ୍ଲୀ ବାଦଶାହାଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ସୁବାଦାର ହେବାର ଅଳ୍ପଦିନ ପରେ ତତ୍‌କାଳୀନ ରାଜା ପୁରୁଷୋତ୍ତମ ଦେବଙ୍କ ବିରୋଧରେ ଯୁଦ୍ଧ ଆରମ୍ଭ କରିଥିଲେ ।

### କଲ୍ୟାଣମଲ୍ଲ କିଏ ?

ଅନେକ ଐତିହାସିକ କଲ୍ୟାଣମଲ୍ଲଙ୍କୁ କଲ୍ୟାଣ ସିଂହ ବୋଲି ଦର୍ଶାଇଛନ୍ତି । କଲ୍ୟାଣମଲ୍ଲ ହୁଅନ୍ତୁ କିମ୍ବା କଲ୍ୟାଣ ସିଂହ ହୁଅନ୍ତୁ କେହି ହେଲେ ରାଜା ନଥିଲେ, ଓଡ଼ିଶାର ସୁବାଦାର ବା ଗଭର୍ଣ୍ଣର ଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଟୋଡ଼ରମଲ୍ଲ । ହାସିମ୍ ଖାଁ ଓଡ଼ିଶାର ସୁବାଦାର ଥିଲାବେଳେ କଲ୍ୟାଣ ଥିଲେ ଓଡ଼ିଶାର ଜଣେ ପଦାଧିକାରୀ । ଜନୈକ ଆଫଗାନ୍ ଶାସକଙ୍କ

ବିରୋଧରେ ସାମରିକ ସଫଳତା ପାଇବା ପରେ ଜଣେ ସାହସୀ ଯୋଦ୍ଧାରୂପେ ପରିଚିତ ହୋଇଥିଲେ । ଯେତେବେଳେ ବଙ୍ଗଳାର ଗଭର୍ଣ୍ଣର କୁଲି ଖାଁଙ୍କର ପରଲୋକ ହେଲା ଏବଂ ଶେଖ ଆଲାଉଦ୍ଦିନ୍ 'ଇସ୍‌ଲାମ୍ ଖାଁ' ନାମରେ ବଙ୍ଗଳାର ଗଭର୍ଣ୍ଣର ହେଲେ ସେତିକିବେଳେ 'କଲ୍ୟାଣ' ବଙ୍ଗଳାରେ ଥିଲେ । ସେଇଠି ଆଫଗାନମାନଙ୍କ ଦ୍ୱାରା ଅଧିକୃତ 'ଇରାଜତ ଖାଁ'ଙ୍କ ହାତୀମାନଙ୍କୁ ଉଦ୍ଧାର କରିବାକୁ କଲ୍ୟାଣଙ୍କୁ ଆଦେଶ ଦିଆ ଯାଇଥିଲା ।

ବାସ୍ତବରେ ଏହି ହାତୀଗୁଡ଼ିକ କିଣିନେବା ପାଇଁ ବିହାରର ଜଣେ ଅଧିକାରୀ ରୂପେ ଇରାଜତ ଖାଁ କେତେକ ଅଫିସରଙ୍କୁ ପଠାଇଥିଲେ । ହାତୀ ନେଇ ଓଡ଼ିଶାରୁ ଫେରୁଥିବା ସମୟରେ ଆଫଗାନ୍ ନେତା କମୁରୁଦ୍ଦିନ ପାନି ସଦଳବଳେ ସେମାନଙ୍କ ଉପରେ ଚଢ଼ଉକରି ହାତୀମାନଙ୍କୁ ନେଇ ଯାଇଥିଲେ । ସେଇ ହାତୀଗୁଡ଼ିକଙ୍କର ଉଦ୍ଧାର ପାଇଁ କଲ୍ୟାଣ ପ୍ରଥମ ଆକ୍ରମଣରେ ଆଫଗାନ୍ ସେନାପତିଙ୍କୁ ନିହତ କଲେ । ହାତୀ ସମେତ ବହୁ ଅସ୍ଥାବର ସମ୍ପତ୍ତି ଏବଂ ଲୁଣ୍ଠିତ ଦ୍ରବ୍ୟ ଉଦ୍ଧାର କରିଥିଲେ । ସବୁ ଇସ୍‌ଲାମ ଖାଁଙ୍କ ମାର୍ଫତରେ ଦିଆଯିବାରୁ ଇସ୍‌ଲାମ ଖାଁ ସମ୍ରାଟଙ୍କ ଦରବାରକୁ କଲ୍ୟାଣଙ୍କ ପାଇଁ ସୁପାରିଶ କରିଥିଲେ । ତେଣୁ କଲ୍ୟାଣଙ୍କୁ ଏକ ପତାକା (standard) ଦିଆଯିବା ସହ ୨୦୦ ମାନ୍‌ସବ ଶ୍ରେଣୀ ପଦବୀକୁ ପଦୋନ୍ନତି ଦିଆ ଯାଇଥିଲା ।

ଆଗରୁ କୁହା ଯାଇଅଛି ଓଡ଼ିଶାରେ ହାସିମ୍ ଖାଁଙ୍କ ଅଧୀନରେ କଲ୍ୟାଣମଲ୍ଲ କାର୍ଯ୍ୟ କରୁଥିଲେ । ହାସିମ୍ ଖାଁ କାଶ୍ମୀର ଦାୟିତ୍ୱରେ ଯିବା ପରେ କଲ୍ୟାଣଙ୍କୁ ପତାକା (standard), ନିଶାଣ (ensign), ରାଜକୀୟ ବାଦ୍ୟ ପ୍ରଦାନ କରାଯାଇ ୧୬୧୧ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ନିଯୁକ୍ତି ଦିଆଗଲା ।

ତାହାପରେ ପରେ ସେ କାଳବିଳମ୍ବ ନ କରି ଆକ୍ରମଣ ଯୋଜନା ପ୍ରସ୍ତୁତ କରିଥିଲେ । ତାଙ୍କର ଅମାନୁଷିକ ଆକ୍ରମଣ ସମସ୍ତଙ୍କୁ ସ୍ତବ୍ଧ କରି ଦେଇଥିଲା ।

ନିଜ ରାଜ୍ୟର ବହୁ ଅଞ୍ଚଳ ଆକ୍ରମିତ ଏବଂ ଲୁଣ୍ଠିତ ହେବା ପରେ ଗଜପତି ନିଜେ ଆତ୍ମସମର୍ପଣ ପାଇଁ ଖବର ପଠାଇଲେ । ନିଜର କନ୍ୟା ଓ ଶେଷନାଗ ନାମକ ସର୍ବୋତ୍ତମ ହସ୍ତୀକୁ ବାଦଶାହାଙ୍କୁ ଉପହାର ଦେବାପାଇଁ ଏବଂ ବାଦଶାହାଙ୍କ ରାଜକୋଷକୁ ୩ ଲକ୍ଷ ଟଙ୍କା ଦେବାପାଇଁ ସ୍ୱୀକୃତ ହୋଇଥିଲା । ଏହିପରି ନିଜର କନ୍ୟା ଓ ଟଙ୍କା ଦେଇ ନିଜ ରାଜ୍ୟକୁ ଆକ୍ରମଣରୁ ରକ୍ଷା କରିବା ପାଇଁ କୂଟନୀତି ପ୍ରୟୋଗ କରିଥିଲେ । ଏହା ଏକ ପ୍ରକାର ଖୋର୍ଦ୍ଧା ବିଜୟ ବୋଲି ମନେକରି କଲ୍ୟାଣମଲ୍ଲ କଟକକୁ ଫେରି ଯାଇଥିଲେ । କର୍ମଚାରୀଙ୍କ ଦାୟିତ୍ୱରେ ଦିଲ୍ଲୀ ବାଦଶାହାଙ୍କ ନିକଟକୁ ରାଜକନ୍ୟା, ହାତୀ, ନଗଦ ଟଙ୍କା ଓ ମଣିମୁକ୍ତା ବି ପଠାଇଥିଲେ ।

ମାଦଳାପାଂଜିରେ ବର୍ଣ୍ଣିତ ହୋଇଛି :

ଅ୧୭ଙ୍କେ ରାଜା କଲ୍ୟାଣ ଅଇଲେ । ଦାସ ବିଦ୍ୟାଧରଙ୍କୁ କପଟେ ଗାଡ଼ିଲେ, ଘଟଂଟିଲି ଟାଙ୍ଗିରେ ଭେଟ କରାଇଲେ । ଭେଟରେ ଡେରାଭିତରେ ବିଦ୍ୟାଧରଙ୍କୁ ଧରାଇଲେ । ଷୋହଳ

ସେନାପତିଙ୍କି ମରାଇ ପକାଇଲେ । ଏ ଦିନେ ପରମେଶ୍ୱର ମହିସାନାସିରେ ଥିଲେ । ଏ ଗୋଳ ଶୁଣି ଗୁରୁବାଦାଇ ଗଡ଼ ଦ୍ୱାରେ ଚାପରେ ବିଜେ କରିଥିଲେ । ଅ୧୮ଙ୍କେ ରାଜା କଲ୍ୟାଣକୁ ବେଢ଼ି ମାଇଲେ । ପଳାଇବା ବେଳେ ବାଘସରପୁର ଠାରେ ମାରି ପକାଇଲେ । କଟକ ପରିଯନ୍ତେ ସବୁ ଘେନିଲେ ଛଡ଼ାଇ । (ମା.ପା., ପୃ-୬୫-୬୬) ।

ଅର୍ଥାତ୍ ମନ୍ତ୍ରୀ ଏବଂ ସୁଦକ୍ଷ ସେନାପତି ଦାସ ବିଦ୍ୟାଧରଙ୍କ ସହିତ ରାଜା କଲ୍ୟାଣ କପଟତା ଆଚରଣ କରି ବନ୍ଧୁତ୍ୱ ଆଳରେ ଡେରା ମଧ୍ୟରେ ମାରି ଦେଇଥିଲେ । କିନ୍ତୁ ଡ଼ଃ ଭବାନୀଚରଣ ରାୟଙ୍କ ମତରେ ''କୂଟନୀତି ପ୍ରୟୋଗ କରି ଘଣ୍ଟଗିଳା ଟାଙ୍ଗିଠାରେ ସାକ୍ଷାତ କରିବା ପାଇଁ ବିଦ୍ୟାଧରଙ୍କୁ ଅନୁରୋଧ ଜଣାଇଲେ । ସେହି ସାକ୍ଷାତରେ ସେ ବିଦ୍ୟାଧରଙ୍କ ପ୍ରତି ବିଶ୍ୱାସଘାତକତା କରି ବନ୍ଦୀ କଲେ ।

ଏହା ସମ୍ପୂର୍ଣ୍ଣ ବିଶ୍ୱାସଘାତକତା । କେବଳ ସେତିକି ନୁହେଁ ସେହିପରି ଖୋର୍ଦ୍ଧାର ୧୬ ଜଣ ସୁଦକ୍ଷ ସେନାପତିଙ୍କୁ ହତ୍ୟା କରିଥିଲେ । ଯେଥିରେ ଗଜପତି ବ୍ୟଥିତ ହେବା ସ୍ୱାଭାବିକ । କଲ୍ୟାଣମଲ୍ଲଙ୍କର ୨ ବାର ଆକ୍ରମଣ ବେଳେ ଗଜପତିଙ୍କର ପାଇକଦଳ କ୍ରୋଧାନ୍ୱିତ ହୋଇ ମୋଗଲସେନାଙ୍କୁ ପ୍ରବଳ ଭାବରେ ପ୍ରତି ଆକ୍ରମଣ କରି ଓଡ଼ିଶାରୁ ତଡ଼ି ଦେଇଥିଲେ । କଟକ ପର୍ଯ୍ୟନ୍ତ ଅଧିକାର କରି ନେଇଥିଲେ ।

କଲ୍ୟାଣମଲ୍ଲ ଛତ୍ରଭଙ୍ଗ ଦେଇ ପ୍ରାଣବିକଳରେ ପଳାଇଲା ବେଳକୁ ତାଙ୍କୁ ପିପିଲି ନିକଟସ୍ଥ 'ବାଗସରପୁର'ଠାରେ ମିଳିତ ଆକ୍ରମଣ କରି ହତ୍ୟା କଲେ ।

ଦାସ ବିଦ୍ୟାଧରଙ୍କ ହତ୍ୟା ଘଟଣାକୁ ଦୃଢ଼ୀଭୂତ କରିବା ପାଇଁ ଶ୍ରୀକେଦାରନାଥ ମହାପାତ୍ର 'ସୂରିସର୍ବସ୍ୱମ୍' ଗ୍ରନ୍ଥର ସହାୟତା ନେଇଛନ୍ତି । କବିଭୂଷଣ ଗୋବିନ୍ଦ ସାମନ୍ତରାୟଙ୍କ ରଚିତ ଏହି ଗ୍ରନ୍ଥରେ ଉତ୍ତରାର୍ଦ୍ଧର ଶେଷ ଅଧ୍ୟାୟରୁ ଜଣାପଡୁଛି ଯେ ''ଜଘାନ ରାଜା କପଟେନ ମନ୍ତ୍ରିଣଂ ତଂ ଦାସବିଦ୍ୟାଧର ମଞ୍ଜଶିକ୍ଷୟା'' ।

ତାଙ୍କ ମତରେ ଦାସ ବିଦ୍ୟାଧରଙ୍କ ବିଧବାପତ୍ନୀ ଆତ୍ମରକ୍ଷା ପାଇଁ ନିଜର ଜାମାତା 'ବକ୍ରମହୀପତି' ବା ବାଙ୍କୀ ରାଜାଙ୍କ ନିକଟକୁ ପଳାଇଗଲେ । ରାଜା କଲ୍ୟାଣ କୃତ ଏହି ଜଘନ୍ୟ ହତ୍ୟାକାଣ୍ଡ ପରେ ସମଗ୍ର ଓଡ଼ିଶାରେ ଭୀଷଣ ବିପ୍ଳବ ଘଟିଥିଲା । ଯଥା- ଅଥୋତ୍ରଦେଶେ ତଦନନ୍ତରଂ ମହାନୁପପ୍ଳବୋଽଜାୟତ ଲୋକଦୁଃସହଃ'' । (ଓଡ଼ିଶା ମ୍ୟୁଜିୟମ୍‌ରେ ସଂରକ୍ଷିତ 'ସୂରିସର୍ବସ୍ୱମ୍' ଉତ୍ତରାର୍ଦ୍ଧରୁ ଗୃହୀତ ।)(ଉ.ଖୁ.ଇ., ପୃ-୫୮-୫୯)

ପୁନଃ ସେ କହନ୍ତି ''ଏହି ଘୋର ବିପ୍ଳବ ସମୟରେ ଖୁର୍ଦ୍ଧାର ଦୁର୍ଦ୍ଧର୍ଷ ପାଇକମାନେ ମାତିଉଠି ମୋଗଲ ସେନାକୁ କଟକ ପର୍ଯ୍ୟନ୍ତ ଘଉଡ଼ାଇ ନେଇଥିବା ବର୍ଣ୍ଣନା ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ସତ୍ୟପରି ଜଣାଯାଏ । କିନ୍ତୁ ମାଦଳାପାଂଜିରେ ପ୍ରଦତ୍ତ ବାଘସରପୁର ଠାରେ ରାଜା କଲ୍ୟାଣଙ୍କ ହତ୍ୟାବୃତ୍ତାନ୍ତ ସତ୍ୟ ନୁହେଁ । କାରଣ ସେ ୧୬୧୭ ଖ୍ରୀ. ସେପ୍ଟେମ୍ବର ମାସ ୮ ତାରିଖରେ

ବାଦଶାହା ଜାହାଙ୍ଗୀରଙ୍କୁ ସାକ୍ଷାତ କରିଥିବାର ବିଶ୍ୱାସଯୋଗ୍ୟ ପ୍ରମାଣ ମିଳେ । ଉକ୍ତ ପାଇକବାହିନୀ ଅନ୍ୟ କୌଣସି ରାଜପୁତ ସର୍ଦ୍ଦାରକୁ ହତ୍ୟାକରି ପରମଶତ୍ରୁ ରାଜା କଲ୍ୟାଣକୁ ମାରିଦେଲେ ବୋଲି ମନେ କଲେ ।

## ମିର୍ଜାନାଥନ୍‌ଙ୍କ ମତ ଅବିଶ୍ୱାସଯୋଗ୍ୟ :

(୧) ପ୍ରଥମ କାରଣ - ଗଜପତି ସ୍ୱୀୟ କନ୍ୟାକୁ ଦୋଳାରେ ବସାଇ ବାଦଶାହାଙ୍କ ନିକଟକୁ ପଠାଇଥିବା କଥା ଯାହା ମିର୍ଜାନାଥନ୍ ଲେଖିଛନ୍ତି ତାହା ଆଦୌ ବିଶ୍ୱାସଯୋଗ୍ୟ ନୁହେଁ । ସେଥିପାଇଁ ଶ୍ରୀଯୁକ୍ତ ମହାପାତ୍ର ଦର୍ଶାଇଛନ୍ତି ଯେ ଓଡ଼ିଶା ଗଜପତିମାନେ କନ୍ୟା ଜନ୍ମ ହେଲେ ତାଙ୍କୁ ଘରେ ରଖନ୍ତିନାହିଁ । ତାକୁ ନିଜ ଭାଇ ବିରାଦର ବା ମାମୁଁ ଘରକୁ ପଠାଇ ଦିଅନ୍ତି । ଏ ପରମ୍ପରା ଏ ପର୍ଯ୍ୟନ୍ତ ଗଜପତି ପରିବାରରେ ପ୍ରଚଳିତ ।

(୨) ଦ୍ୱିତୀୟ କାରଣ - ଜାହାଙ୍ଗୀର ଏପରି ଏକ ପ୍ରସିଦ୍ଧ ଘଟଣା ସ୍ୱୀୟ ଆତ୍ମଜୀବନୀରେ ଉଲ୍ଲେଖ କରିନାହାଁନ୍ତି ।

(୩) ତୃତୀୟ କାରଣ - ସେ ସମୟରେ କେତେକ ଧର୍ମଦ୍ରୋହୀ ରାଜପୁତ ରାଜା ମୋଗଲ ରାଜପ୍ରାସାଦକୁ ସ୍ୱୀୟ କନ୍ୟା ଓ ପତ୍ନୀମାନଙ୍କୁ ପଠାଇ ବାଦଶାହାଙ୍କ ପ୍ରୀତି ଅର୍ଜନ କରିଥିବାର ଦୃଷ୍ଟାନ୍ତ ରହିଛି । କଲ୍ୟାଣମଲ୍ଲ ବାଦଶାହାଙ୍କୁ ଖୁସି କରିବା ପାଇଁ ଅନ୍ୟ କାହାର ଝିଅକୁ ଗଜପତିଙ୍କ ଝିଅ ବୋଲି ଦିଲ୍ଲୀ ପଠାଇ ଦେଇଥିବେ । ତାହା ହିଁ ସମ୍ଭବ ମନେ ହୁଏ । କାରଣ କଲ୍ୟାଣମଲ୍ଲଙ୍କ ଏକ ସମ୍ବନ୍ଧୀୟ ମହିଳାଙ୍କୁ ଆକ୍‌ବରଙ୍କ ହାରେମ୍‌କୁ ପଠା ଯାଇଥିଲା । ଯେତେବେଳେ ସେ ୧୫୭୦ ମସିହା ସେପ୍ଟେମ୍ବର ମାସରେ ଫତେପୁର ସୀକ୍ରୀଠାରେ ୧୨ ଦିନ ଆଜମେର ଯିବା ପଥରେ ବିଶ୍ରାମ ନେଇଥିଲେ । (ଫତେପୁର ସୀକରୀ ଏକ ହିନ୍ଦୁ ନଗର, ପୃ-୧୦୧) ।

ଖୁର୍ଦ୍ଧା ଇତିହାସରୁ ଉପରୋକ୍ତ ମତ ବ୍ୟତୀତ ଆଉ ଗୋଟିଏ କଥା ଏଠାରେ ବିଚାର୍ଯ୍ୟ । କଲ୍ୟାଣମଲ୍ଲ ୧୬୧୧ ଖ୍ରୀ.ରେ ଓଡ଼ିଶା ଲୁଣ୍ଠନ କରିବାକୁ ଆରମ୍ଭ କଲେ । ସେତେବେଳକୁ ଦିଲ୍ଲୀ ଦରବାରର ପରିସ୍ଥିତି କ'ଣ ଥିଲା ଦ୍ରଷ୍ଟବ୍ୟ ।

''ଦିଲ୍ଲୀ ଦରବାରକୁ ଲକ୍ଷ୍ୟ କଲେ ଜଣାପଡୁଛି କଲ୍ୟାଣମଲ୍ଲ ଜାହାଙ୍ଗୀରଙ୍କୁ ଭେଟି ନ ଦେଇ ଦରବାରକୁ ଅର୍ଥାତ୍ ପ୍ରଶାସନକୁ ଭେଟି ଦେଇଥିବେ । ଦରବାରର କେହି ପ୍ରଭାବଶାଳୀ ବ୍ୟକ୍ତି ତାଙ୍କୁ ନେଇ ହାରେମ୍‌ରେ ରଖିଥିବେ ।''

ଏହି କାରଣଗୁଡ଼ିକୁ ପର୍ଯ୍ୟାଲୋଚନା କଲେ ମୁସଲମାନ ଐତିହାସିକ ମିର୍ଜାନାଥନ୍‌ଙ୍କ ବିବରଣୀକୁ ସତ୍ୟବୋଲି ଗ୍ରହଣ କରାଯାଇ ନ ପାରେ । କିନ୍ତୁ ମିର୍ଜାନାଥନ୍‌ଙ୍କ 'ଶେଷନାଗ' ନାମକ ହସ୍ତୀ ଏବଂ ବହୁ ଲୁଣ୍ଠିତ ଧନରତ୍ନ ଦିଲ୍ଲୀ ବାଦଶାହାଙ୍କୁ ରାଜା କଲ୍ୟାଣ ଦେଇଥିବା ବିବରଣୀକୁ ଶ୍ରୀଯୁକ୍ତ ମହାପାତ୍ର ସତ୍ୟବୋଲି ଗ୍ରହଣ କରିଛନ୍ତି । (ପୃ-୫୪)

ତେବେ ଯେ ଲୁଣ୍ଠିତ ଧନରତ୍ନ କଲ୍ୟାଣ ଆଣିଲେ କେଉଁଠୁ । ଖୋର୍ଦ୍ଧା ରାଜବାଟୀ କଲ୍ୟାଣଙ୍କ କବଳିତ ହେବା ପୂର୍ବରୁ ଗଜପତି ପୁରୁଷୋତ୍ତମ ଦେବ ସନ୍ଧି କରି ଶାନ୍ତି ପ୍ରତିଷ୍ଠା ପାଇଁ ପ୍ରୟାସ କରି 'ପଞ୍ଚସନ୍ଧି'ରେ ସ୍ୱାକ୍ଷର କଲେ । ରାଜବାଟି ଲୁଣ୍ଠିତ ହେବାର ପ୍ରମାଣ ମିଳୁନାହିଁ । କିନ୍ତୁ ମୋଗଲମାନଙ୍କ ଆକ୍ରମଣ ଓ ରାଜ୍ୟରେ ଲୁଣ୍ଠନଲୀଳା ଶ୍ରବଣ କରି ସେ ଏକ ଅଡୁଆ ପରିସ୍ଥିତିରେ ନିଶ୍ଚୟ ପଡ଼ିଥିଲେ, ନହେଲେ ସେ ସନ୍ଧିରେ ସ୍ୱାକ୍ଷର କରିନଥାନ୍ତେ । ତେବେ ରାଜା ଭୟଭୀତ ହେବାର ମୁଖ୍ୟ କାରଣ ମୋଗଲ ମାନଙ୍କର ବର୍ବରୋଚିତ ଆକ୍ରମଣ ଏବଂ ଅମାନୁଷିକ ଲୁଣ୍ଠନ ।

ଏହି ଲୁଣ୍ଠନ ପୁରୀରେ ହିଁ ଚାଲିଥିଲା । ବିଶେଷତଃ ଶ୍ରୀମନ୍ଦିରରେ ଆମ୍ଭର ମତ । କାରଣ ମାଦଳାପାଂଜି ମତରେ କଲ୍ୟାଣଙ୍କ ଦୌରାତ୍ମ୍ୟ ବେଳକୁ ଶ୍ରୀମନ୍ଦିରରେ ଜଗନ୍ନାଥ ନଥିଲେ 'ମହିସାନାସି'ରେ ଥିଲେ । ତେଣୁ କଲ୍ୟାଣଙ୍କ ଶ୍ରୀମନ୍ଦିର ଆକ୍ରମଣ କରି ଲୁଣ୍ଠନ କରିବା ବେଳକୁ ପ୍ରଭୁଙ୍କୁ ସ୍ଥାନାନ୍ତର କରାଯାଇ ସାରିଥିଲା । ପୁରୀରେ କଲ୍ୟାଣଙ୍କ ଆକ୍ରମଣ ଲୁଣ୍ଠନର ଘଟଣାବଳୀକୁ ମାଦଳାକାର 'ଗୋଳ' ଶବ୍ଦରେ ବ୍ୟକ୍ତ କରିଛନ୍ତି । ଏହି 'ଗୋଳ' ସେବକମାନେ ହିଁ ଶୁଣିଥିବେ ଶ୍ରୀକ୍ଷେତ୍ର ସହ ଜଡ଼ିତ ରାଜକର୍ମଚାରୀ କିମ୍ବା ଜାତିଭାଇ ସେବକମାନଙ୍କ ଠାରୁ । ତେଣୁ କାଳେ ମହାପ୍ରଭୁଙ୍କୁ ଅପବିତ୍ର କରିଦେବ, ତେଣୁ ସତର୍କ ହୋଇ 'ଗୁରୁବାଦଇ' ଗଡ଼ ଦ୍ୱାରରେ ଚାପରେ ଅର୍ଥାତ୍ ନୌକାରେ ମହାପ୍ରଭୁଙ୍କୁ ବିଜେ କରାଇ ରଖିଥିଲେ ଜଳପଥରେ ଅନ୍ୟତ୍ର ନେଇଯିବା ପାଇଁ । ସେବକମାନଙ୍କର ମୂଳଲକ୍ଷ୍ୟ ଥିଲା ଶ୍ରୀମନ୍ଦିର ଲୁଣ୍ଠନ ହୋଇଯାଉ ପଛେ ଶ୍ରୀଜଗନ୍ନାଥ ଅପବିତ୍ର ନ ହୁଅନ୍ତୁ ।

ଏହି ସମୟରେ ପୁରୁଷୋତ୍ତମ ଦେବ ଶାନ୍ତି ପ୍ରତିଷ୍ଠା ସର୍ବୋତ୍ତମ ଉପାୟ ବୋଲି ମନେ କରି ମୋଗଲମାନଙ୍କ ସହ ଶାନ୍ତି ପ୍ରସ୍ତାବ ଆଲୋଚନା ପାଇଁ ରାଜି ହେଲେ । ଏହି ଆଲୋଚନାକୁ ସନ୍ଧି କୁହା ଯାଇପାରେ । ସନ୍ଧିର ସର୍ତ୍ତ ଥିଲା :

୧ - ଖୋର୍ଦ୍ଧାରାଜା କଲ୍ୟାଣଙ୍କ ନିକଟରେ ଆତ୍ମସମର୍ପଣ କରିବେ ।
୨ - ନିଜ କନ୍ୟାକୁ ସମ୍ରାଟଙ୍କ ହାରେମ (ଅନ୍ତଃପୁର)କୁ ପଠାଇବେ ।
୩- ସମ୍ରାଟଙ୍କ ରାଜକୋଷକୁ ୩ ଲକ୍ଷ ଟଙ୍କା ଦେବେ ।
୪- ସମ୍ରାଟଙ୍କ ବ୍ୟବହାର ପାଇଁ 'ଶେଷନାଗ' ହାତୀକୁ ହସ୍ତାନ୍ତର କରିବେ ।
୫- ଖୋର୍ଦ୍ଧାରାଜା ବ୍ୟକ୍ତିଗତ ଭାବରେ ସମ୍ରାଟଙ୍କ ସମ୍ମୁଖରେ ହାଜର ହେବେ ।

ଏହି ସନ୍ଧି କେଶୋଦାସ ସହିତ ହୋଇଥିବା ସନ୍ଧି ସହିତ ପ୍ରାୟ ସମାନ । କେବଳ 'ଭଉଣୀ' ପ୍ରସଙ୍ଗକୁ ଛାଡ଼ିଦେଲେ । ତେଣୁ ଜଣାପଡୁଛି କେଶୋଦାସ ସହିତ ହୋଇଥିବା ସନ୍ଧି ବିଷୟରେ କଲ୍ୟାଣମଲ୍ଲ ବେଶ୍ ଅବଗତ ଥିଲେ । କେଶୋଦାସ ଯଦି ପାଇଲେ ମୁଁ କାହିଁକି ନ ପାଇବି ସେହି ନ୍ୟାୟରେ ସେ ଦାବୀ କଲେ ଏବଂ ପାଇଲେ । ତେଣୁ କେଶୋଦାସଙ୍କ ସନ୍ଧି ପରି କଲ୍ୟାଣମଲ୍ଲଙ୍କ ସନ୍ଧି ମଧ୍ୟ ସତ୍ୟ ଜଣା ପଡୁଛି ।

## ମୋଗଲ / ପାଇକ ବିଦ୍ରୋହ :

୧୬୧୧ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୬ ତାରିଖରେ କଲ୍ୟାଣମଲ୍ଲ ଶ୍ରୀଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ କରିଥିଲେ ତାହା ଥିଲା ଦ୍ୱିତୀୟବାର ଆକ୍ରମଣ । ଏହି ଆକ୍ରମଣରେ ସେ ବହୁ ଧନରତ୍ନ ଲୁଟି ନେଇଥିଲେ । (ଖୋର୍ଦ୍ଧା ଇତିହାସର ଅନ୍ତରାଳେ, ପୃ-୧୪୫) ।

ଆକ୍ରମଣ ପୂର୍ବରୁ ସେବକମାନେ ଶ୍ରୀଜଗନ୍ନାଥଙ୍କ ବିଗ୍ରହକୁ ସ୍ଥାନାନ୍ତର କରି ଚିଲିକାର "ମହିଷାନାସି"ରେ ଲୁଚାଇ ରଖିଥିଲେ । ସେଠାରେ ମଧ୍ୟ ବିପଦର ଆଶଙ୍କା କରି ପରେ 'ବାଣପୁର'ଠାରେ ରଖିଥିଲେ । ମାତ୍ର ଓଡ଼ିଶାର ଗଡ଼ୁଆ ପାଇକମାନେ ସେତେବେଳେ ଖୁବ୍ ସାହସ ପ୍ରଦର୍ଶନ କରିଥିଲେ । ଗଡ଼କୋକଲର ପାଇକବୀର ଶ୍ରୀପତି ଚମ୍ପତିରାୟ ଓ ତାଙ୍କ ପୁତ୍ର ଗୋପାଳ ଚମ୍ପତିରାୟ କଲ୍ୟାଣମଲ୍ଲଙ୍କ ଆକ୍ରମଣକୁ ମୁକାବିଲା କରିବାକୁ ଆଗେଇ ଆସିଥିଲେ । ପାଇକମାନଙ୍କୁ ଧରି ସେ ଘମାଘୋଟ ଲଢ଼େଇ କରିଥିଲେ । ଏହି ଲଢ଼େଇରେ ପାଇକମାନେ ବିଜୟଲାଭ କରିଥିଲେ । କଲ୍ୟାଣମଲ୍ଲଙ୍କୁ ପୁରୀରୁ ତଡ଼ି ଦେଇ କଟକ ପାର କରାଇ ଦେଇଥିଲେ । ଏହି ଯୁଦ୍ଧରେ ଶ୍ରୀପତି ଚମ୍ପତିରାୟ ନିଜ ପୁତ୍ର ଗୋପାଳ ଚମ୍ପତିରାୟଙ୍କୁ ହରାଇଥିଲେ । ଯୁଦ୍ଧରେ ଗୋପାଳ ପ୍ରାଣତ୍ୟାଗ କରିଥିଲେ । ଏହି ଘଟଣା ଶ୍ରୀପତି ଚମ୍ପତିରାୟଙ୍କ ଅନ୍ୟପୁତ୍ର କହ୍ନେଇ ଚମ୍ପତିରାୟ 'ପାଇକଖେଦା'ରେ ସବିଶେଷ ଲେଖିଛନ୍ତି ।

ବସ୍ତୁତଃ ବିଚାର କଲେ ଶ୍ରୀମନ୍ଦିର ଲୁଣ୍ଠନବେଳେ ଶ୍ରୀଜଗନ୍ନାଥଙ୍କ ସୁରକ୍ଷା ଏବଂ ଶତ୍ରୁକୁ ମୁକାବିଲା କରିବାରେ 'କୋକଲଗଡ଼'ର ଅବଦାନ ଇତିହାସ ସ୍ୱୀକୃତ । କେବଳ 'ଦାନପାତ୍ର'ର ବିଶ୍ୱାସଘାତକତା ହିଁ ଗଡ଼କୋକଲର ଚନ୍ଦ୍ରମାରେ କଳଙ୍କର ଛିଟାଟାଏ ମାତ୍ର । ନଚେତ୍ ଗଡ଼କୋକଲ ନିଜ କୋଳରେ ଶ୍ରୀଜଗନ୍ନାଥଙ୍କୁ ସ୍ଥାନଦେବା ସହ ଆକ୍ରମଣକାରୀଙ୍କୁ ପ୍ରତିଆକ୍ରମଣ କରି ଘଉଡ଼ାଇ ଦେବାରେ ବହୁବାର ସଫଳ ହୋଇଛି ।

ମୋଗଲ କାଳରେ ଘନ ଘନ ପୁରୀ ମନ୍ଦିର ଉପରେ ଆକ୍ରମଣ ହୋଇ ଧନରତ୍ନ ଲୁଣ୍ଠନ ହୋଇଛି ।

୧୬୦୯ ଖ୍ରୀ.ରେ- ହାସିମ୍ ଖାଁ ଅମଳରେ କେଶୋଦାସର ଆକ୍ରମଣ

୧୬୧୧ ଖ୍ରୀ.ରେ- କଲ୍ୟାଣମଲ୍ଲର ଆକ୍ରମଣ

୧୬୧୭ ଖ୍ରୀ.ରେ- ମକରମ୍ ଖାଁଙ୍କର ଆକ୍ରମଣ

୧୬୨୨ ଖ୍ରୀ.ରେ-ଅହମଦ୍ ବେଗର ଖୋର୍ଦ୍ଧା ସହ ଜଗନ୍ନାଥ ମନ୍ଦିର ଆକ୍ରମଣ ଶ୍ରୀମନ୍ଦିରକୁ ଶ୍ରୀହୀନ କରି ଦେଇଥିଲା । ସେତେବେଳେ କୋକଲଗଡ଼ର ପାଇକ ବୀରମାନଙ୍କର ରଣହୁଙ୍କାର ଚିଲିକାକୂଳରୁ ନୀଳାଚଳ ଯାଏ ଆଚ୍ଛନ୍ନ କରି ରଖିଥିଲା ।

## ଉପସଂହାର :

ବାସ୍ତବରେ କଲ୍ୟାଣମଲ୍ଲ ଦୁଇଥର ଆକ୍ରମଣ କରିଥିଲେ । ପ୍ରଥମଥର ସେ ଆକ୍ରମଣ କରି ଲୁଣ୍ଠନ କରିଥିଲେ । ଜଣେ ମନ୍ତ୍ରୀ ଏବଂ ୧୬ ଜଣ ସୁଦକ୍ଷ ସେନାପତିଙ୍କୁ ସେ ପ୍ରଥମଥର ଆକ୍ରମଣ ବେଳେ ବିଶ୍ୱାସଘାତକତା କରି ହତ୍ୟା କରିଥିଲେ । ସେତେବେଳେ ମାଦଳାପାଂଜି ମତରେ ଗଜପତି ପୁରୀରେ ନଥିଲେ । ଓଡ଼ିଶାର ଐତିହାସିକମାନେ କଲ୍ୟାଣମଲ୍ଲର ଦୁଇଥର ଆକ୍ରମଣକୁ ସ୍ପଷ୍ଟ ଭାବରେ ଉଲ୍ଲେଖ କରି ନାହାଁନ୍ତି । କିନ୍ତୁ ଦୁଇଥର ଯାକର ଆକ୍ରମଣର ବିବରଣୀକୁ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି । ଯାହାଦ୍ୱାରା ୨ଟି ଯାକ ବିବରଣୀକୁ ଗୋଟିଏ ଆକ୍ରମଣ-କାଳୀନ ବିବରଣୀ ବୋଲି ଅନେକ ପାଠକ ଗ୍ରହଣ କରି ନେଇଛନ୍ତି । ମାତ୍ର ତାହା ପାଠକୀୟ ବିଭ୍ରାନ୍ତି ସୃଷ୍ଟି କରେ । କଲ୍ୟାଣମଲ୍ଲର ଆକ୍ରମଣ, ତା ସହିତ ସନ୍ଧି, ପୁଣି ପାଇକମାନେ ଯୁଦ୍ଧ କରି ତାକୁ କଟକ ପର୍ଯ୍ୟନ୍ତ ଘଉଡ଼ାଇ ଦେଲେ ବା କାହାରି କାହାରି ମତରେ ମାରିଦେଲେ ''ଯେ ସବୁ ଗୋଳମାଳିଆ ଲାଗୁଛି । କିନ୍ତୁ ମାଦଳାପାଂଜିରେ ସ୍ପଷ୍ଟ ଉଲ୍ଲେଖ ଅଛି କଲ୍ୟାଣମଲ୍ଲ ରାଜାଙ୍କ ୧୭ ଅଙ୍କରେ ଥରେ, ୧୮ ଅଙ୍କରେ ଥରେ ଏହିପରି ଦୁଇଥର ଓଡ଼ିଶା ଆକ୍ରମଣ କରିଛି । ୧୭ ଅଙ୍କରେ ପ୍ରଥମ ଆକ୍ରମଣ ୧୬୧୧ ଖ୍ରୀଷ୍ଟାବ୍ଦ ଠିକ୍ । କିନ୍ତୁ ଖୋର୍ଦ୍ଧା ଇତିହାସର ଅନ୍ତରାଳେ ପୁସ୍ତକରେ ଶ୍ରୀ ଫକୀର ହରିଚନ୍ଦନ କଲ୍ୟାଣମଲ୍ଲଙ୍କ ୧୬୧୧ ଖ୍ରୀଷ୍ଟାବ୍ଦ ଜୁଲାଇ ଛଅ ତାରିଖ ଆକ୍ରମଣକୁ ଦ୍ୱିତୀୟ ଆକ୍ରମଣ ବୋଲି ଲେଖିଛନ୍ତି । ତାହା ଯୁକ୍ତିଯୁକ୍ତ ମନେ ହେଉନାହିଁ । କାରଣ ୧୬୧୧ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ କଲ୍ୟାଣମଲ୍ଲ ଓଡ଼ିଶାର ସୁବାଦାର ହୋଇ ନିଯୁକ୍ତ ହେବା କଥା ଇତିହାସ ସ୍ୱୀକୃତ । ତେଣୁ ୧୬୧୧ ଖ୍ରୀ.ର ଆକ୍ରମଣ ପ୍ରଥମ ଆକ୍ରମଣ । ଯେଉଁ ଆକ୍ରମଣରେ ଜଣେ ମନ୍ତ୍ରୀ, ୧୬ ଜଣ ସେନାପତିଙ୍କୁ କପଟତା ଆଚରଣ କରି ହତ୍ୟା କରିବା ପରେ ଲୁଣ୍ଠନ କରିଛି ଏବଂ ଗଜପତି ସନ୍ଧି କରି ପୂର୍ବବର୍ଣ୍ଣିତ ସର୍ତ୍ତ ସବୁକୁ ତାର ପୂରଣ କରିଛନ୍ତି । ସେଥର ସେ ଫେରିଯାଇଛି । ଦିଲ୍ଲୀ ଦରବାରକୁ ଯାହା ପଠାଇବା କଥା ପଠାଇଛି । ତେଣୁ ଗଡୁଆ ପାଇକ ପ୍ରଥମ ଥର ଆକ୍ରମଣ ବେଳେ ଯଦି ତାକୁ ଖେଦି ଯାଇଥାନ୍ତେ ତେବେ ଲୁଣ୍ଠିତ ଦ୍ରବ୍ୟ ଏବଂ ସନ୍ଧିସର୍ତ୍ତ ଦ୍ରବ୍ୟ ସବୁ ଫେରସ୍ତ ଆଣିଥାନ୍ତେ । କାରଣ ଗଡୁଆ ପାଇକଙ୍କ ଆକ୍ରମଣରେ ସେ ପଛଘୁଞ୍ଚା ଦେଇ ପଳାୟନ କରିଥିଲା । ତେଣୁ ବାସ୍ତବରେ ପାଂଜି ବର୍ଣ୍ଣିତ ରାଜାଙ୍କ ୧୮ ଅଙ୍କ ଅର୍ଥାତ୍ ୧୬୧୨ ଖ୍ରୀଷ୍ଟାବ୍ଦରେ କଲ୍ୟାଣମଲ୍ଲ ଦ୍ୱିତୀୟବାର ଆକ୍ରମଣ କରିଥିଲା ସେଇ ଲୁଣ୍ଠନ କରିବା ଆଶାରେ । ମାତ୍ର ସେ ନିରାଶ ହୋଇଥିଲା ଗଡୁଆ ପାଇକଙ୍କ ଆକ୍ରମଣରେ । ଯେପରିକି ପାଇକମାନେ ତାର ଅନେକ ସୈନ୍ୟଙ୍କୁ ହତ୍ୟା କରିବା ପରେ କଲ୍ୟାଣମଲ୍ଲଙ୍କୁ କଟକ ସେପଟକୁ ତଡ଼ିଦେବାରେ ସକ୍ଷମ ହୋଇଥିଲେ । ଯାହାଦ୍ୱାରା ସେ ୧୬୧୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଆଉ ଓଡ଼ିଶାକୁ ଲୁଣ୍ଠନ କରିବାକୁ ସାହାସ କରିପାରି ନାହିଁ ।

କଲ୍ୟାଣମଲ୍ଲର ହାରିବା ବେଳର ବର୍ଣ୍ଣନା ଗବେଷଣାକୁ ଅପେକ୍ଷା ରଖିଛି । କାରଣ ଶହ ଶହ ଅଶ୍ୱାରୋହୀ, ଗଜାରୋହୀ ଓ ପଦାତିକମାନଙ୍କୁ ଓଡ଼ିଆ ପାଇକ ବଡ଼ ଦୟନୀୟ ଭାବରେ ହତ୍ୟାକରି କଲ୍ୟାଣମଲ୍ଲଙ୍କୁ ଘଉଡ଼ାଇ ଥିବେ ।






# ମକରମ୍ ଖାଁଙ୍କ ଶ୍ରୀମନ୍ଦିର ଲୁଣ୍ଠନ

ମକରମ୍ ଖାଁଙ୍କ ନାମ ଇତିହାସ ଗ୍ରନ୍ଥରେ ଭିନ୍ନ ଭିନ୍ନ ଦୃଷ୍ଟିଗୋଚର ହୁଏ । ମୁକରାମ୍ ଖାଁ ନାମରେ ମଧ୍ୟ ସେ ପରିଚିତ । ସେ ଥିଲେ ମଜମ ଖାଁ ବା ମୁଆଜମ୍ ଖାଁଙ୍କ ପୁତ୍ର । କଲ୍ୟାଣମଲ୍ଲଙ୍କ ପରେ ୧୬୧୭ ଖ୍ରୀଷ୍ଟାବ୍ଦରେ ମକରମ୍ ଖାଁ ଓଡ଼ିଶାର ସୁବାଦାର ହୋଇଥିଲେ ବୋଲି ଓଡ଼ିଶାର ଐତିହାସିକମାନେ ଉଲ୍ଲେଖ କରିଛନ୍ତି । ମାତ୍ର ତୁଜୁକ୍-ଇ-ଜାହାଙ୍ଗୀର ଗ୍ରନ୍ଥର ପ୍ରଥମଭାଗ ପୃଷ୍ଠା ୪୩୩ରୁ ଜଣାପଡୁଛି ମକରମ୍ ଖାଁର ପିତା ମଜମ ଖାଁ ଓଡ଼ିଶାର ଗଭର୍ଣ୍ଣର ଥିଲେ । ଯେବେ ପ୍ରଶ୍ନ ଉଠେ ୧୬୧୭ ଖ୍ରୀଷ୍ଟାବ୍ଦରେ ତ କଲ୍ୟାଣମଲ୍ଲ ଗଲେ ମକରମ୍ ଖାଁ ଆସିଲେ ତେବେ ମଜମ ଖାଁ ଗଭର୍ଣ୍ଣର ହୋଇଥିଲେ କେବେ ? ତେଣୁ କଲ୍ୟାଣମଲ୍ଲ ଯିବା ପରେ ମକରମ୍ ଖାଁ ଆସିବା ପର୍ଯ୍ୟନ୍ତ ମଝିରେ କିଛିଦିନ ମଜମ ଖାଁ ଗଭର୍ଣ୍ଣର ହୋଇଥିବେ ।

ନଚେତ୍ ମାଦଳାପାଂଜିର ପୃ ୬୫-୬୬ରେ ବର୍ଣ୍ଣିତ ହୋଇଥିବା କଲ୍ୟାଣମଲ୍ଲର ମୃତ୍ୟୁକଥା ସତ୍ୟ । ତାକୁ ବାଘସରପୁରଠାରେ ମାରି ଦେଇଥିଲେ ଓଡ଼ିଆ ପାଇକମାନେ । ବୋଧହୁଏ ଦ୍ୱିତୀୟବାର ଆକ୍ରମଣ ବେଳେ କଲ୍ୟାଣମଲ୍ଲ ପ୍ରାଣତ୍ୟାଗ କରିବାରୁ ମଜମ ଖାଁ ଗଭର୍ଣ୍ଣର ହୋଇଥିଲେ ଯାହା ଓଡ଼ିଶା ଇତିହାସରେ ସବିଶେଷ ଆଲୋଚିତ ହୋଇନାହିଁ । କେଦାରନାଥ ମହାପାତ୍ର କଲ୍ୟାଣମଲ୍ଲର ମୃତ୍ୟୁକୁ ଅସ୍ୱୀକାର କରିଦେବା ପରେ ବୋଧହୁଏ ଏହା ଘଟିଥାଇ ପାରେ । କାରଣ ଶ୍ରୀଯୁକ୍ତ ମହାପାତ୍ର କଲ୍ୟାଣମଲ୍ଲ ୧୬୧୭ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୮ ତାରିଖରେ ଜାହାଙ୍ଗୀରଙ୍କୁ ସକ୍ଷାତ କରିଥିବା କଥା ବିଶ୍ୱାସ କରିଛନ୍ତି । ତେଣୁ ୧୬୧୭ ଖ୍ରୀ. ପର୍ଯ୍ୟନ୍ତ କଲ୍ୟାଣମଲ୍ଲ ବଞ୍ଚିଥିବାରୁ ସେ ମାଦଳାପାଂଜି ବର୍ଣ୍ଣିତ ଓଡ଼ିଆ ପାଇକଙ୍କ ଦ୍ୱାରା କଲ୍ୟାଣମଲ୍ଲର ମୃତ୍ୟୁ ତଥ୍ୟକୁ ସ୍ୱୀକାର କରିନାହାଁନ୍ତି ।

ବସ୍ତୁତଃ କଲ୍ୟଣମଲ୍ଲ ନାମରେ ଆଉ କିଏ ଥିଲା କି ? ଯିଏ ୧୬୧୭ ରେ ଜାହାଙ୍ଗୀରଙ୍କୁ ଭେଟିଥିଲା । ତାହାକୁ ଶ୍ରୀଯୁକ୍ତ ମହାପାତ୍ର ଓଡ଼ିଶା ଗଭର୍ଣ୍ଣର କଲ୍ୟାଣମଲ୍ଲ ସହ ଚିହ୍ନିତ କରିଛନ୍ତି ? ଏହା ସମ୍ଭାବନା ମାତ୍ର । ନଚେତ୍ କଲ୍ୟାଣମଲ୍ଲ ପରାଜିତ ହେବା ପରେ ଗଭର୍ଣ୍ଣର ପଦରୁ ଅପସାରିତ ହୋଇ ମଜମ ଖାଁ ଗଭର୍ଣ୍ଣର ହୋଇଥିଲେ କି ? କିମ୍ବା ତୁଜୁକ୍-ଇ-ଜାହାଙ୍ଗୀର ଗ୍ରନ୍ଥର ବର୍ଣ୍ଣନା ମନଗଢ଼ା, କପୋଳକଳ୍ପିତ ? ଇଯେ ବିଚାର ବିମର୍ଷକୁ ଅପେକ୍ଷା ରଖୁଛି । କେଉଁଟି ସତ୍ୟ ?

୧ - କଲ୍ୟାଣମଲ୍ଲ ୨ୟ ଆକ୍ରମଣ ବେଳେ ଓଡ଼ିଆ ବୀର ପାଇକଙ୍କ ଦ୍ୱାରା ବୀରଗତି ପ୍ରାପ୍ତ ହୋଇଥିଲା କି ?

୨ - ନାଁ ପଳାୟନ କରି ଓଡ଼ିଶାର ଗଭର୍ଣ୍ଣର ପଦବୀ ହରାଇଥିଲା ?

୩- ନାଁ ୧୬୧୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଗଭର୍ଣ୍ଣର ଥିଲା ?

୪- ତେବେ ମଜ୍ଜମ ଖାଁ କେତେଦିନ ଗଭର୍ଣ୍ଣର ହୋଇଥିଲେ ପୁତ୍ର ମକରମ୍ ଖାଁ ଗଭର୍ଣ୍ଣର ହେବା ପୂର୍ବରୁ ?

୫- ନାଁ ତୁଜୁକ୍-ଇ-ଜାହାଙ୍ଗୀର ବର୍ଣ୍ଣନା ମନଗଢ଼ା ?

ସେ ଯାହାହେଉ ମକରମ ଖାଁ ଗଭର୍ଣ୍ଣର ହୋଇ ଆସିବା ପରେ ଅମାନୁଷିକ ଆକ୍ରମଣ ଏବଂ ପୈଶାଚିକ ଲୁଣ୍ଠନ ଲୀଳାରେ ବ୍ୟାପୃତ ରହିଥିଲେ । ତୁଜୁକ୍-ଇ-ଜାହାଙ୍ଗୀର ଗ୍ରନ୍ଥର ବର୍ଣ୍ଣନା ଅନୁଯାୟୀ ମକରମ୍ ଖାଁର ପ୍ରବଳ ଆକ୍ରମଣରେ ଗଜପତି ପୁରୁଷୋତ୍ତମ ଦେବ ପରାଜିତ ହୋଇ ମହେନ୍ଦ୍ରାଞ୍ଚଳରେ ଅର୍ଥାତ୍ ଓଡ଼ିଶାର ଦକ୍ଷିଣ ସୀମାପଟେ ଆଶ୍ରୟ ନେଇଥିଲେ । ଯଥା-

At this time it was represented to me that Makarram Khan, son of Muazzam Khan, who was the Governor of Orissa, had conquered the country of Khurda, and the Raja of that place had fled and gone to Raja Mahendra x x x Between the province of Orissa and Golconda there were two zamindars, one the Raja of Khurda and the second the Raja of Rajamahendra. The province of Khurda has come in to the possession of the servants of the court. After this it is the turn of the country of Rasamahendra. (ତୁଜୁକ-ଇ-ଜାହାଙ୍ଗୀର, ପ୍ରଥମ ଭାଗ, ପୃ-୪୩୩ ।)

ଅର୍ଥାତ୍, ଏହି ସମୟରେ ମୋତେ ଜଣାଇ ଦିଆଗଲା ଯେ ଓଡ଼ିଶାର ସୁବାଦାର ଥିବା ମଜ୍ଜମ ଖାଁଙ୍କ (କେତେକ ଗ୍ରନ୍ଥରେ ମୁଆଜମ୍ ଖାଁ ବୋଲି ଉଲ୍ଲେଖ ମିଳେ ।) ପୁଅ ମକରମ ଖାଁ ଖୁରୁଧା ରାଜ୍ୟ ଆକ୍ରମଣ କରିବାରୁ ସେଠାରେ ରାଜା ପଳାଇଯାଇ ରାଜମହେନ୍ଦ୍ର ରାଜ୍ୟରେ ଆଶ୍ରୟ ଗ୍ରହଣ କରିଛନ୍ତି । ଓଡ଼ିଶା ଓ ଗୋଲକୁଣ୍ଡା ପ୍ରଦେଶଦ୍ୱୟ ମଧ୍ୟରେ ଦୁଇଜଣ ଶକ୍ତିଶାଳୀ ଜମିଦାର ଅଛନ୍ତି । ପ୍ରଥମ ହେଉଛନ୍ତି ଖୁରୁଧା ରାଜା ଓ ଦ୍ୱିତୀୟ ରାଜମହେନ୍ଦ୍ର ରାଜା । ଖୁରୁଧା ରାଜ୍ୟ ବାଦଶାହଙ୍କ କର୍ମଚାରୀମାନଙ୍କ ଅଧିକାରଭୁକ୍ତ ହେଲାଣି । ଏହା ପରେ ରାଜମହେନ୍ଦ୍ର ରାଜ୍ୟର ପାଳି ପଡ଼ିବ (ଖୁ.ଇ., ପୃ-୫୫) ।

ଯେଥିରୁ ସ୍ପଷ୍ଟ ହେଉଛି ଯେ ଖୁରୁଧା ରାଜ୍ୟ ଖୁବ୍ ଶକ୍ତିଶାଳୀ ଥିଲା । ଖୁରୁଧା ରାଜ୍ୟ ଜୟ କରିବା ହିଁ ବାଦଶାହାଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ ଘଟଣା ଥିଲା । କାରଣ ଏହା ପୂର୍ବରୁ କଲ୍ୟାଣମଲ୍ଲ କରିଥିବା ୨ୟ ଆକ୍ରମଣରେ ବାଦଶାହାଙ୍କ ସମ୍ମାନକୁ ଓଡ଼ିଆ ପାଇକ ଭୂଲୁଣ୍ଠିତ କରିଥିଲେ ।

ମକ୍ରମ୍ ଖାଁ ଓଡ଼ିଶା ଆସିବା ପୂର୍ବରୁ ବଙ୍ଗଳା ସରକାରଙ୍କ ଅଧିନରେ ଜଣେ ଅଫିସର ଭାବରେ କାର୍ଯ୍ୟକରି ପ୍ରଶାସନ ଏବଂ ଯୁଦ୍ଧ ଅଭିଯାନ ଉଭୟ କ୍ଷେତ୍ରରେ ଅଭିଜ୍ଞତା ହାସଲ କରିଥିଲେ । ଇସ୍‌ଲାମ୍ ଖାଁଙ୍କ ନିର୍ଦ୍ଦେଶରେ ସେ ଏକ ସୈନ୍ୟବାହିନୀର ନେତୃତ୍ୱ ନେଇ କାମରୂପକୁ ଯୁଦ୍ଧ ଅଭିଯାନରେ ଯାଇ ବିଜୟ ଲାଭ କରିଥିଲେ । ତେଣୁ ଓଡ଼ିଶାର ଗଭର୍ଣ୍ଣର ଥିଲେ ମଧ୍ୟ ବଙ୍ଗଳା ରାଜନୀତି ସହିତ ତାଙ୍କର ସମ୍ପର୍କ ଥିଲା । ହିଜ୍‌ଲିର ଜମିଦାର ବାହାଦୁର ଖାଁର ସେ ଘନିଷ୍ଠ ବନ୍ଧୁ ଥିଲେ ।

ଖୁରୁଧା ରାଜ୍ୟ ଜୟ କରିବା ପରେ ମକରମ୍ ଖାଁଙ୍କୁ ବାଦଶାହା ସମ୍ମାନସ୍ୱଦ ପୋଷାକପତ୍ର ପ୍ରଦାନ କରିବା ସହ ତାଙ୍କର 'ମନସବ' ବୃଦ୍ଧି କରିଥିଲେ । ତାଙ୍କ ବୀରତ୍ୱପୂର୍ଣ୍ଣ କର୍ମର ସ୍ୱୀକୃତି ସ୍ୱରୂପ ତାଙ୍କୁ ୩ ହଜାର କର୍ମଚାରୀ ଓ ୨ ହଜାର ଅଶ୍ୱ ବିଶିଷ୍ଟ ସେନାବାହିନୀର ମନସବ କରା ଯାଇଥିଲା । ଏତଦ୍‌ବ୍ୟତୀତ ତାଙ୍କୁ ଡ୍ରମ, ଘୋଡ଼ା ଓ ସମ୍ମାନସୂଚକ ପୋଷାକ ମଧ୍ୟ ପ୍ରଦାନ କରା ଯାଇଥିଲା ।

ମକରମ୍ ଖାଁ ୧୬୧୭ ଖ୍ରୀଷ୍ଟାବ୍ଦରୁ ୧୬୨୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାର ଗଭର୍ଣ୍ଣର ଥିଲେ । ସେ କିଛିଦିନ ଦିଲ୍ଲୀର ଗଭର୍ଣ୍ଣର ମଧ୍ୟ ଥିବାର ଜଣାଯାଏ । ଶେଷ ଜୀବନରେ ସେ ବଙ୍ଗଳାର ଗଭର୍ଣ୍ଣର ହୋଇଥିଲେ । ୧୬୧୭ ଖ୍ରୀଷ୍ଟାବ୍ଦ ଫେବୃୟାରୀ ମାସରେ ପାଣିରେ ବୁଡ଼ିଯାଇ ପ୍ରାଣ ହରାଇ ଥିଲେ ।

### ମାଦଳାପାଂଜି ମତ :

ଯେ ସମ୍ବନ୍ଧରେ ମାଦଳାପାଂଜି ମତ ଦେଖିବା । ସେଥିରେ ଅଛି, ''ଅ୨୧ଙ୍କେ ମକରମ୍ ଖାଁ ଅଇଲେ । ଧନୁ ୨୨ ଦିନେ ଖୁରୁଧା ଘେନିଲେ ସାକ୍ଷୀଗୋପାଳକୁ ଖୁଣ କଲେ । ପରମେଶ୍ୱର ଗୁରୁବାଇଠାରୁ ଯାଇ ବାଣପୁରସୀମା ଗବପଦର ଠା ନଇ ଭିତରେ ଚାପରେ ବିଜେ କରିଥିଲେ । ଶୀତଳ ମୁହୋହି କରୁଥିଲେ । ରାଜା ଯାଇ କୁଟୁମ୍ବ ଘେନି ରଣପୁର ସୀମାରେ ମାଣତ୍ରୀ ଗ୍ରାମରେ କଟକ କରିଥିଲେ । ଏ ମହାରାଜାଙ୍କ ଶ୩ଅଙ୍କ ମକରମ୍ ଗଲେ । ପରମେଶ୍ୱରଙ୍କୁ ଗବପଦର ଠାରୁ ଶ୍ରୀପୁରୁଷୋତ୍ତମ ବଡ଼ଦେଉଳେ ବିଜେ କରାଇଲେ । (ମା.ପା., ପୃ-୬୬)

ଏହି ବର୍ଣ୍ଣନାରୁ ସ୍ପଷ୍ଟ ଜଣାପଡୁଛି ଯେ ମକରମ ଖାଁର ଆକ୍ରମଣ ପ୍ରବଳ ହୋଇଥିଲା । ଖୁରୁଧାଗଡ଼ ଅସୁରକ୍ଷିତ ହୋଇ ପଡ଼ିଥିବାରୁ ଗଜପତି ଗଡ଼ ଛାଡ଼ି ପଳାଇ ଯାଇଥିଲେ । ଠାକୁର ବାଣପୁର ସୀମା 'ଗବପଦର' ନିକଟରେ ନଦୀରେ ଚାପରେ ବିଜେ କରିଥିବାର ସ୍ପଷ୍ଟ ସୂଚନା ମିଳୁଥିବାରୁ ପୁରୀ ମନ୍ଦିର ମଧ୍ୟ ଆକ୍ରମିତ ହୋଇଥିଲା ।

ଦୁଇଟିଯାକ ବର୍ଣ୍ଣନାକୁ ଲକ୍ଷ୍ୟ କଲେ ଜଣାପଡୁଛି ଆକ୍ରମଣ ଘଟଣାରେ ବିଶେଷ ସାମଂଜସ୍ୟ ଅଛି । ପାଂଜିମତ ପ୍ରାଞ୍ଜଳ ଏବଂ ସ୍ପଷ୍ଟ । କେଶୋଦାସ ମାରୁ ଏବଂ ରାଜା କଲ୍ୟାଣ ଖୁରୁଧା ଦୁର୍ଗ ଆକ୍ରମଣ କରି ନଥିଲେ । କିନ୍ତୁ ସୁବାଦାର ମକରମ ଖାଁ ପୁରୁଷୋତ୍ତମ ଦେବଙ୍କୁ ଖୋର୍ଦ୍ଧା ଦୁର୍ଗରୁ ତଡ଼ି ଏକ ବର୍ଷ ଅଧିକାର କରି ନେଇଥିଲେ । ରାଜା ସେଠାରୁ ବିତାଡ଼ିତ ହୋଇ 'ଗଡ଼ମାଣିତ୍ରୀ'ଠାରେ ରହି ରାଜକାର୍ଯ୍ୟ ପରିଚାଳନା କରୁଥିଲେ । ସେତିକିବେଳେ ସେ ପୁରୀରୁ ଜଗନ୍ନାଥଙ୍କୁ ସ୍ଥାନାନ୍ତର କରାଇ 'ଗବପଦର' ଠାରେ ଲୁଚାଇ ରଖିଥିଲେ ।

ଏଣୁ ଆମ୍ଭର ମନେହୁଏ ମକରମ୍ ଖାଁର ଖୋର୍ଦ୍ଧା ଆକ୍ରମଣ ଅତ୍ୟନ୍ତ ପ୍ରବଳ ହୋଇଥିଲା । ସେ ପ୍ରଥମେ ରାଜା ରହୁଥିବା ରାଜବାଟି ଆକ୍ରମଣ କରି ନିଜ ଦଖଲକୁ ଆଣିବା ପରେ ଶ୍ରୀମନ୍ଦିର ଲୁଣ୍ଠନ କରିବାକୁ ପ୍ରୟାସ କରିଥିବେ । ଯାହାଦ୍ୱାରା ଶ୍ରୀମନ୍ଦିର ଲୁଣ୍ଠନ ବେଳେ ଯେତେ ପ୍ରତିଆକ୍ରମଣର ଆଶଙ୍କା ଆଉ ନଥିବ । ସୁରୁଖୁରୁରେ ଲୁଣ୍ଠନ କାର୍ଯ୍ୟ ସମାପନ ହୋଇ ପାରିବ ।

ତେଣୁ ରାଜା ବିତାଡ଼ିତ ହେବା ପରେ ଶ୍ରୀମନ୍ଦିର ଲୁଣ୍ଠନକୁ ପ୍ରତିହତ ନକରି ପାରିବାର ଆଶଙ୍କା କରି କେବଳ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଶ୍ରୀମନ୍ଦିରକୁ ସ୍ଥାନାନ୍ତର କରାଇ ନିରାପଦରେ ରଖାଇବା ବ୍ୟବସ୍ଥାଟି କରି ନୀରବ ରହିବା ଛଡ଼ା ଆଉ କିଛି ଚାରା ନଥିଲା ।

କେଦାରନାଥ ମହାପାତ୍ରଙ୍କ ମତରେ ପୁରୁଷୋତ୍ତମ ଦେବ ରାଜମହେନ୍ଦ୍ରକୁ ପଳାଇଯିବା କଥା ଯାହା ବାଦଶାହା ଲେଖିଛନ୍ତି ତାହା ସତ୍ୟ ନୁହେଁ । ସେ ଶୁଣାକଥା ଉପରେ ନିର୍ଭର କରି ଏପରି ବର୍ଣ୍ଣନା କରିଛନ୍ତି ।

କିନ୍ତୁ ଡ଼ଃ ଭବାନୀ ଚରଣ ରାୟ ତାଙ୍କର 'ମୋଗଲ ଓଡ଼ିଶା ଇତିହାସ' ବହିରେ ଏହାକୁ ସ୍ୱୀକାର କରିଛନ୍ତି । ତାଙ୍କ ମତରେ କଲ୍ୟାଣଙ୍କ ସମସ୍ତ ଦାବୀ ପୂରଣ କରି ଗଜପତି ଅପମାନିତ ହୋଇ ସାରିଥିଲେ ।

ମୁକରମ୍ ଖାଁଙ୍କ ଅଭିଯାନରେ ସେ ଆହୁରି ଅପମାନିତ ହେଲେ ସେତିକି କ୍ରୋଧାନ୍ୱିତ ହେଲେ । ତେଣୁ ସେ ମୋଗଲ ଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ । ତାଙ୍କୁ ଦମନ କରିବା ଉଦ୍ଦେଶ୍ୟରେ ମକରମ୍ ଖାଁ ତାଙ୍କ ରାଜ୍ୟ ଅଭିମୁଖେ ସୈନ୍ୟଚାଳନା କରିଥିଲେ । ମୋଗଲ ସୈନ୍ୟମାନଙ୍କ ପ୍ରବଳ ଆକ୍ରମଣରେ ଖୋର୍ଦ୍ଧା ରାଜା ନିଜ ରାଜ୍ୟ ଭିତରେ ନିଜକୁ ରକ୍ଷା କରି ନପାରି ପ୍ରାଣ ଭୟରେ ରାଜମହେନ୍ଦ୍ରୀଠାରେ ଆଶ୍ରୟ ନେଲେ x x x x ଫଳରେ ଖୋର୍ଦ୍ଧା ରାଜ୍ୟରେ ଲୁଣ୍ଠନ ଚାଲିଲା ଏବଂ ଖୋର୍ଦ୍ଧା ମୋଗଲ ସାମ୍ରାଜ୍ୟର ପରିସରଭୁକ୍ତ ହେଲା ବୋଲି ଘୋଷଣା କରାଗଲା । ଖୋର୍ଦ୍ଧାର ରାଜପରିବାରକୁ ଏକ ଜମିଦାର ସ୍ତରକୁ ଖସାଇ ଦିଆ ଯାଇଥିବା କୁହାଯାଏ । ଏହିଠାରେ ସେ ''ୱାକିଆତ-ଇ-ଜାହାଙ୍ଗୀରନାମା'ର ଉଲ୍ଲେଖ କରିଛନ୍ତି । ସେଥିରେ ଜାହାଙ୍ଗୀର ଲେଖିଛନ୍ତି ଓଡ଼ିଶା ପ୍ରଦେଶ ଏବଂ ଗୋଲକୁଣ୍ଡା ରାଜ୍ୟ ମଧ୍ୟରେ ଖୋର୍ଦ୍ଧା ରାଜ୍ୟ ଓ ରାଜମହେନ୍ଦ୍ରୀ ଏହିପରି ୨ଟି ଜମିଦାରୀ ରହିଅଛି । x x x x କିନ୍ତୁ ଡ଼ଃ ରାୟ ଉଲ୍ଲେଖ କରିଛନ୍ତି ଏ ସବୁ ସତ୍ତ୍ୱେ ଖୋର୍ଦ୍ଧା ରାଜ୍ୟକୁ ମୋଗଲ ସାମ୍ରାଜ୍ୟରେ ସାମିଲ କରା ଯାଇଥିବା ଦାବୀ ବିଶ୍ୱାସଯୋଗ୍ୟ ନୁହେଁ । ଖୋର୍ଦ୍ଧା ମିଶ୍ରଣ ଘୋଷଣା କରାଯାଇ ପାରିଥାଏ । କିନ୍ତୁ ମିଶ୍ରଣ ଅସ୍ଥାୟୀ ବୋଲି ଜଣାଯାଏ । କାରଣ ପ୍ରମାଣ ମିଳେ ଯେ ଖୋର୍ଦ୍ଧା ସ୍ଥାୟୀ ଭାବରେ ମୋଗଲ ପରିସରଭୁକ୍ତ ହୋଇ ନଥିଲା, କିମ୍ବା ଖୋର୍ଦ୍ଧା ରାଜବଂଶର ବିଲୁପ୍ତି ଘଟିଛି ବୋଲି ଘୋଷଣା କରା ଯାଇନଥିଲା, ଅଥବା ଉକ୍ତ ରାଜ୍ୟ ଜାହାଙ୍ଗୀରଙ୍କ ପ୍ରତ୍ୟକ୍ଷ ଶାସନାଧୀନକୁ ଆସି ନଥିଲା । (ପୃ- ୫୩)

ତେବେ ମକରମ୍ ଖାଁଙ୍କ ଶ୍ରୀମନ୍ଦିର ଲୁଣ୍ଠନର ସଠିକ ବିବରଣୀ ସମ୍ବନ୍ଧରେ ଇତିହାସ ନୀରବ । ମାଦଳାପାଂଜି ଦୃଷ୍ଟିରୁ ମକରମ୍ ଖାଁ ଖୁରୁଧା ଆକ୍ରମଣ କରି ଜୟ କରିବା ପରେ ପୁରୀପଟକୁ ଯୁଦ୍ଧଯାତ୍ରା କରିଥିଲେ । କାରଣ ସାକ୍ଷୀଗୋପାଳଠାରେ ପହଞ୍ଚି ସେଠାକାର ପୂଜିତ ଶ୍ରୀଗୋପାଳଜୀଉ ମନ୍ଦିରକୁ ଆକ୍ରମଣ କରିଥିଲେ । ଜଣାପଡୁଛି ସତ୍ୟବାଦୀ ମନ୍ଦିର ଆକ୍ରମିତ ହେବା ବେଳକୁ ପୁରୀରୁ ପରମେଶ୍ୱରଙ୍କୁ ଅର୍ଥାତ୍ ଶ୍ରୀଜଗନ୍ନାଥଙ୍କୁ ସ୍ଥାନାନ୍ତର କରାଯାଇ

ସାରିଥିଲା । ମାଦଳାପାଂଜିରେ ଶ୍ରୀଜଗନ୍ନାଥଙ୍କୁ ଲକ୍ଷ୍ୟ କରି ବହୁସ୍ଥଳରେ 'ପରମେଶ୍ୱର' ବା 'ପରମେଶର' ଶବ୍ଦ ପ୍ରୟୋଗ କରାଯାଇଛି । ରାଜା ସେତେବେଳେ ରଣପୁର ସୀମା ଗଡ଼ମାଣିତ୍ରୀଠାରେ ସପରିବାର ରହୁଥିଲେ । ଦୁଇବର୍ଷରୁ ଊର୍ଦ୍ଧ୍ୱକାଳ ଶ୍ରୀଜଗନ୍ନାଥଶ୍ରୀମନ୍ଦିରଠାରୁ ବାହାରେ ଥିଲେ । ଅତଏବ ମକରମ୍ ଖାଁ ସାକ୍ଷୀଗୋପାଳ ମନ୍ଦିର ଆକ୍ରମଣ ପରେ ପ୍ରସିଦ୍ଧ ଶ୍ରୀମନ୍ଦିର ଆକ୍ରମଣ କରିବାକୁ ପୁରୀ ଆସିଥିବେ । ପୂର୍ବରୁ ଶ୍ରୀମନ୍ଦିର ବାରମ୍ବାର ଲୁଣ୍ଠନ ହେବା କଥା ମଧ୍ୟ ସେ ନିଶ୍ଚୟ ଜାଣିଥିବେ । ତେଣୁ ସତ୍ୟବାଦୀ ପର୍ଯ୍ୟନ୍ତ ଆସି ପୁରୀ ନ ଆସି ଫେରି ଯାଇଥିବେ; ଯେପରି ବିଶ୍ୱାସ ହେଉନାହିଁ । ଯଦି ସେ ଫେରି ଯାଇଥାନ୍ତେ, ତେବେ ସେବକମାନେ ମହାପ୍ରଭୁଙ୍କୁ ସ୍ଥାନାନ୍ତର କରିନଥାନ୍ତେ । ମକରମ ଖାଁର ପ୍ରବଳ ଖୋର୍ଦ୍ଧା ଆକ୍ରମଣବେଳେ ଗଜପତି ସପରିବାର ଯାଇ ଗଡ଼ମାଣିତ୍ରୀଠାରେ ଥିବା କଥା ଉଲ୍ଲେଖ ହୋଇ ସାରିଛି । ତେଣୁ ଗଜପତି ପଳାୟନ କରିଥିବାରୁ ମକରମ୍ ଖାଁକୁ ପୁରୀରେ ପ୍ରତିଆକ୍ରମଣ ପାଇଁ ଭୟ ନଥିବ । ଯେଣେ ଗଜପତିଙ୍କର ଅବସ୍ଥା ସେବକମାନେ ଜାଣିପାରି ଶ୍ରୀମନ୍ଦିରରୁ ମହାପ୍ରଭୁଙ୍କୁ ଅପସାରିତ କରି ନେଇଥିବାରୁ ଜନସାଧାରଣ ବା ସେବକ ସଂପ୍ରଦାୟର ମକରମ୍ ଖାଁକୁ ପ୍ରତିରୋଧ କରିବାର ମନୋବଳ ଆଉ ନଥିବ, ଏହା ସହଜେ ଅନୁମେୟ । ତେଣୁ ମକରମ୍ ଖାଁ ନିର୍ବିଘ୍ନରେ ଶ୍ରୀମନ୍ଦିର ଭିତରେ ପ୍ରବେଶ କରି ତାଙ୍କର ଲୁଣ୍ଠନ ଅଭୀପ୍ସା ଚରିତାର୍ଥ କରିଥିବେ ।

ତତ୍‌କାଳୀନ ଅବସ୍ଥା ଦୃଷ୍ଟିରୁ ଲୁଣ୍ଠନର ବିବରଣୀ ଲିପିବଦ୍ଧ ହୋଇପାରି ନାହିଁ କିମ୍ବା କେଉଁ କାରଣରୁ ତାହା ଏପର୍ଯ୍ୟନ୍ତ ଉପଲବ୍ଧ ହେଉନାହିଁ ତାହା ଅନୁସନ୍ଧାନ ସାପେକ୍ଷ । ତାହା ହିଁ ଆମ ପାଇଁ ଆଜି ବିଡ଼ମ୍ବନା ଯେ ଆମ ଘରେ ପଶି ଆମର ଧନ-ରତ୍ନ ଲୁଣ୍ଠନ କରିନେବା ପରେ ଆମେ ତାର ପରିମାଣ ଠାବ କରିବାରେ ଆଜି ଯାଏ ସମର୍ଥ ହୋଇନାହୁଁ ।






## ମିର୍ଜା ଅହମ୍ମଦ ବେଗ୍ ଖାଁଙ୍କ ଶ୍ରୀମନ୍ଦିର ଲୁଣ୍ଠନ

ମିର୍ଜା ଅହମ୍ମଦ ବେଗ୍ ଖାଁ ଥିଲେ ନୁରଜାହାନ୍‌ଙ୍କ ଭାଇର ପୁଅ । ଇବ୍ରାହିମ ଖାଁ ଫତେଜଙ୍ଗ୍‌ଙ୍କର ସେ ଥିଲେ ପୁତୁରା । ୧୬୨୧ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ସେ ଓଡ଼ିଶାର ସୁବାଦାର ହୋଇଥିଲେ । ଓଡ଼ିଶାରେ ନିଯୁକ୍ତି ପାଇବା ପୂର୍ବରୁ ସେ ବଙ୍ଗଳା ସରକାରଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । ବଙ୍ଗଳାର ଗଭର୍ଣ୍ଣର ଇବ୍ରାହିମ୍ ଖାଁଙ୍କୁ ବିଦ୍ରୋହୀ 'ଆରାକାନୀୟ' ମାନଙ୍କ ବିରୋଧରେ ଯୁଦ୍ଧ ଅଭିଯାନରେ ସାହାଯ୍ୟ କରିଥିଲେ ।

ଅନେକ ଅସୁବିଧାଜନକ ପରିସ୍ଥିତିରେ ଅହମ୍ମଦ ବେଗ ଓଡ଼ିଶାର ଗଭର୍ଣ୍ଣର ହୋଇ ଆସିଥିଲେ । ବେଗମ୍ ନୁରଜାହାନ୍‌ଙ୍କର ହସ୍ତକ୍ଷେପ ନ ହୋଇଥିଲେ ସେ ଓଡ଼ିଶାକୁ ଗଭର୍ଣ୍ଣର ହୋଇ ଆସିପାରି ନଥାନ୍ତେ । କାରଣ ମୁକରମ୍ ଖାଁଙ୍କୁ ପୁନଃ ନିଯୁକ୍ତି ଦେବା ପାଇଁ ମୋଗଲ ସରକାର ସ୍ଥିର କରିଥିଲେ । କିନ୍ତୁ ମୁକରମ ଖାଁଙ୍କୁ ବଙ୍ଗଳାରୁ ଓଡ଼ିଶାକୁ ବଦଳି କରିବାକୁ ଇବ୍ରାହିମ୍ ଖାଁଙ୍କର ଇଚ୍ଛା ନଥିଲା । ତେଣୁ ମୋଗଲ ସରକାର ଅହମ୍ମଦ ବେଗଙ୍କୁ 'ଖାଁ' ଉପାଧିରେ ବିଭୂଷିତ କରିବା ସହିତ ତାଙ୍କୁ ଓଡ଼ିଶାର ଗଭର୍ଣ୍ଣର ରୂପେ ନିଯୁକ୍ତ କରିବା ପାଇଁ ପରାମର୍ଶ ଦେଇଥିଲେ । କିନ୍ତୁ ଠିକ୍ ଏତିକିବେଳେ ଜଲାଇର ଖାଁ ଅତ୍ୟନ୍ତ ଚତୁରତାର ସହ ଇବ୍ରାହିମ ଖାଁଙ୍କର ଜଣେ ପ୍ରିୟ ବ୍ୟକ୍ତିଙ୍କ ମଧ୍ୟସ୍ଥତାରେ ଇବ୍ରାହିମ୍ ଖାଁଙ୍କୁ କବଳିତ କରିଥିଲେ । ସେ ପ୍ରିୟ ବ୍ୟକ୍ତି ଜଣକ ହେଉଛନ୍ତି ଇବ୍ରାହିମ୍‌ଙ୍କ ବେଗମ୍ (ପତ୍ନୀ) । ପତ୍ନୀଙ୍କ ମାଧ୍ୟମରେ ୩ ଲକ୍ଷ ଟଙ୍କା ଦେଇ ସେ ଓଡ଼ିଶାର ଗଭର୍ଣ୍ଣର ପଦବୀ ହାସଲ କରି ନେଇଥିଲେ । ବଙ୍ଗଳା ଗଭର୍ଣ୍ଣରଙ୍କ ଯେ କୂଟନୀତି ଅହମ୍ମଦ ବେଗ୍ ଜାଣିପାରି ତୁରନ୍ତ ନୁରଜାହାନଙ୍କ ନିକଟକୁ ଆବେଦନ କରିଥିଲେ । ଫଳରେ ୟାର ବିଚାର ହୋଇ ଜଲାଇର ଖାଁଙ୍କୁ ପ୍ରତ୍ୟାହାର କରାଯାଇ ଅହମ୍ମଦ ବେଗ୍‌ଙ୍କୁ ଓଡ଼ିଶା ଗଭର୍ଣ୍ଣର ଭାବରେ ନିଯୁକ୍ତି ମିଳିଥିଲା ।

ନିଯୁକ୍ତ ପରେ ପରେ ୟାଙ୍କରି ଅମଳରେ ପୁରୁଷୋତ୍ତମ ଦେବଙ୍କର ଦେହାନ୍ତ ହୋଇଥିଲା । କେତେଜଣ ଐତିହାସିକ 'ଗଡ଼ମାଣିତ୍ରୀ'ଠାରେ ପୁରୁଷୋତ୍ତମ ଦେବଙ୍କର ଦେହାନ୍ତ ହୋଇଥିଲା ବୋଲି ମତ ଦେଇଛନ୍ତି । ମାତ୍ର ଡ଼ଃ ଭବାନୀ ଚରଣ ରାୟଙ୍କ ମତରେ ବାଣପୁରଠାରୁ ଅଳ୍ପ କିଛି ମାଇଲ ଦୂରସ୍ଥ 'ଖଣତା' ନାମକ ଗ୍ରାମଠାରେ ଡେରା ପକାଇ ରହିଲେ ଏବଂ ସେହିଠାରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । (ପୃ-୫୫)

ତେବେ ପୁରୁଷୋତ୍ତମ ଦେବଙ୍କର ଦେହାନ୍ତ ଏକ ନାଟକୀୟ ପରିସମାପ୍ତି । କାରଣ ସେ ରାଜ୍ୟର ପୁନରୁଦ୍ଧାର ଏବଂ ନିଜର ସ୍ୱାଧୀନତା ପାଇଁ ଓଡ଼ିଶାର ଅନ୍ୟାନ୍ୟ ରାଜାମାନଙ୍କୁ ସଂଘବଦ୍ଧ କରିବାରେ ଲାଗି ପଡ଼ିଥିଲେ । ୟେଥିରେ ବାଣପୁର, ରଣପୁର ଓ ରାଜମହେନ୍ଦ୍ରୀର ରାଜାମାନେ ସମ୍ମତି ଜଣାଇଥିଲେ । ୟେ ସବୁ ଘଟିଥିଲା ଓଡ଼ିଶା ଗଭର୍ଣ୍ଣର ନିଯୁକ୍ତିର ବାଦବିବାଦ

ସମୟର ସୁଯୋଗରେ । ଯେଥିରେ ମଧ୍ୟ ପୁରୁଷୋତ୍ତମ ଦେବ କେତେକାଂଶରେ ସଫଳ ହୋଇଥିଲେ । ଏବଂ ଯଥେଷ୍ଟ ସଂଖ୍ୟକ ସୈନ୍ୟ ସଂଗ୍ରହ କରି ମୋଗଲମାନଙ୍କ ପକ୍ଷରୁ ପୁନଃ ଆକ୍ରମଣର ପ୍ରତିରୋଧ ନିମନ୍ତେ ନିଜକୁ ପ୍ରସ୍ତୁତ କରିବାରେ ଲାଗି ପଡ଼ିଥିଲେ । ଠିକ୍ ଏଇ ସମୟରେ ଅହମ୍ମଦ ବେଗ୍ ଖୋର୍ଦ୍ଧା ଉପରେ ଆକ୍ରମଣ କରି ବାଣପୁର ପର୍ଯ୍ୟନ୍ତ ଅଞ୍ଚଳକୁ ଅଧିକାର କରିନେବା ଦ୍ୱାରା ପୁରୁଷୋତ୍ତମ ନିରୁପାୟ ହୋଇଗଲେ । ପୁରୁଷୋତ୍ତମ ଦେବଙ୍କୁ ପ୍ରତିଆକ୍ରମଣ କରିବାର ସୁଯୋଗ ଦେଇ ନଥିଲେ ଅହମ୍ମଦ୍ ବେଗ୍ ।

ପୁରୁଷୋତ୍ତମ ଦେବଙ୍କ ଦେହାନ୍ତ ପରେ ତାଙ୍କ ପୁତ୍ର ନରସିଂହ ଦେବ ସିଂହାସନ ଆରୋହଣ କଲେ । ଅହମ୍ମଦ ବେଗ୍ ସେତେବେଳେ ୨ଟି ସର୍ତ୍ତ ବାଢ଼ିଲେ ।

୧ - ନୂଆରାଜା ସମ୍ରାଟଙ୍କ ପ୍ରତି ଆନୁଗତ୍ୟ ରହିବେ ।

୨ - ଅହମ୍ମଦ ବେଗଙ୍କ ପରିବାର କଟକଠାରେ ଅବସ୍ଥାପିତ ହେବେ ।

ଏହି ଦୁଇଟି ସର୍ତ୍ତ ବାଢ଼ିବାର କାରଣ ଥିଲା ଯେ ଯେପରି ବ୍ୟବସ୍ଥା ହେଲେ ଭବିଷ୍ୟତରେ ମୋଗଲ ସରକାର ବିରୋଧରେ ଖୋର୍ଦ୍ଧା ଗଜପତି ବିଦ୍ରୋହ କରିପାରିବେ ନାହିଁ, ଏପରିକି ଅବଜ୍ଞା ମଧ୍ୟ ପ୍ରଦର୍ଶନ କରିବାକୁ ଚିନ୍ତା କରିବେ ନାହିଁ ।

କିନ୍ତୁ ଏହି ସର୍ତ୍ତାବଳୀ ନରସିଂହ ଦେବଙ୍କୁ ଅଡୁଆରେ ପକାଇଦେଲା । ସେ ତତ୍କାଳୀନ ସମ୍ମୁଖ ବିରୋଧ ନ କରି ଖୁବ୍ ସତର୍କତାର ସହ ନିଜ ପରିବାର ନେଇ 'ଗଡ଼-ମାଣିତ୍ରୀ'ଗଡ଼କୁ ସ୍ଥାନାନ୍ତରିତ ହୋଇଗଲେ । ଅହମ୍ମଦ ବେଗ୍ ଯେଥିରେ ନିଜକୁ ଅପମାନିତ ବୋଧ କରି ଆକ୍ରମଣ କଲେ । କିନ୍ତୁ ସେତେବେଳକୁ ନରସିଂହ ଦେବ ସଂଗଠନ ଶକ୍ତି ବଢ଼ାଇବାକୁ ସମୟ ପାଇ ଯାଇଥିଲେ । ଅନେକ ସାମନ୍ତ ରାଜାଙ୍କର ସହାୟତା ଯୋଗାଡ଼ କରି ସାରିଥିଲେ । ତେଣୁ ମୋଗଲ ଆକ୍ରମଣକୁ ପ୍ରତିରୋଧ କରିବାକୁ ସକ୍ଷମ ହୋଇଥିଲେ ।

## ଅହମ୍ମଦ ବେଗ୍‌ଙ୍କ ଦୟନୀୟ ଅବସ୍ଥା :

ଯୁବରାଜ ଶାହାଜାହାନ ପ୍ରଥମରୁ ମୋଗଲ ସରକାରଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରିଥିଲେ । ପ୍ରଥମେ- ଆଗ୍ରା ଆକ୍ରମଣ କରି ବିଫଳ ହୋଇଥିଲେ । ଦ୍ୱିତୀୟରେ- ମହବତ୍ ଖାଁଙ୍କ ଠାରୁ ପରାଜିତ ହୋଇଥିଲେ । ତୃତୀୟରେ- ଅହମ୍ମଦନଗର ନିଜାମସାହୀ ରାଜାଙ୍କ ପ୍ରଧାନମନ୍ତ୍ରୀଙ୍କ ଠାରୁ ସାହାଯ୍ୟ ପାଇବା ପାଇଁ ଦାକ୍ଷିଣାତ୍ୟ ଯାଇ ନିରାଶ ହେଲେ । ପ୍ରଧାନମନ୍ତ୍ରୀ ମାଲିକ ଅମ୍ବର ସମ୍ରାଟ ଜାହାଙ୍ଗୀରଙ୍କୁ ଅସନ୍ତୁଷ୍ଟ କରି ଶାହାଜାହାନଙ୍କୁ ସାହାଯ୍ୟ କରିବାକୁ ଚାହିଁଲେ ନାହିଁ । ଚତୁର୍ଥରେ- ବିଜାପୁର ଅଭିମୁଖେ ଯାତ୍ରା କରି ସେଠାରୁ ଅସଫଳ ହୋଇ ଫେରିଲେ । ପଞ୍ଚମରେ- ଗୋଲକୁଣ୍ଡା ସୁଲତାନ ମଧ୍ୟ ସାହାଯ୍ୟ ଦେଇ ନଥିଲେ । ଯେପରିକି ଯଥାଶୀଘ୍ର ରାଜ୍ୟଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ ଗୋଲକୁଣ୍ଡାର ସୁଲତାନ କୁତବ-ଉଲ୍-ମୁଲକ କିଛି ସାହାଯ୍ୟ ଯୋଗାଇ ଦେଇ ନିଜ ରାଜ୍ୟରୁ ଓଡ଼ିଶା ରାଜ୍ୟକୁ

ନିରାପଦରେ ପହଞ୍ଚାଇ ଦେବାର ବନ୍ଦୋବସ୍ତ କରି ଦେଇଥିଲେ । ଏବଂ ମସୁଲିପଟ୍ଟମ୍‌ଠାରେ ଥିବା ସୀମାନ୍ତ ଅଞ୍ଚଳର ଅଫିସରମାନଙ୍କୁ ସୀମା ପାର କରାଇଦେବା ପାଇଁ ପତ୍ର ଲେଖିଥିଲେ ।

ଓଡ଼ିଶାର ଭୟଙ୍କର 'ଛତ୍ରଦ୍ୱାର ଘାଟି' ଯେଉଁଠି ୫ ଶହ ବନ୍ଧୁକଧାରୀ ୩/୪ ଲକ୍ଷ ସୈନ୍ୟଙ୍କୁ ସାମନା କରି ପାରିବେ ସେହି ଘାଟି ଦେଇ ଶାହାଜାହାନ ୮ ଶହ ହାତୀ, ୧୪ଶହ ଘୋଡ଼ା ଏବଂ ଏକଲକ୍ଷ ପଦାତିକ ସୈନ୍ୟଙ୍କ ସହିତ ଓଡ଼ିଶାରେ ପ୍ରବେଶ କରିଥିଲେ ।

ଶାହାଜାହାନ ଓଡ଼ିଶା ଆଡ଼କୁ ଅଗ୍ରସର ହେଉଛନ୍ତି । ବାସ୍ ଏଇ ସମ୍ବାଦଟି ଅହମ୍ମଦ ବେଗଙ୍କୁ ଆତଙ୍କିତ କରି ଦେଇଥିଲା । ଲୁଟ୍‌ତରାଜ ବନ୍ଦ କରି ପିପିଲିକୁ ପ୍ରତ୍ୟାବର୍ତ୍ତନ କଲେ । ପିପିଲିଠାରେ ତାଙ୍କ ପରିବାର ରହୁଥିଲେ । କିନ୍ତୁ ପିପିଲି ତାଙ୍କୁ ନିରାପଦ ମନେ ହେଲାନାହିଁ । ସେଠାରୁ ସେ କଟକ ପଳାଇଗଲେ । ଭାଗ୍ୟର ବିଡ଼ମ୍ବନା ଶାହାଜାହାନଙ୍କ ଓଡ଼ିଶା ପ୍ରବେଶ ତାଙ୍କୁ ଯେପରି ଭୟଭୀତ କରିଥିଲା ଯେ କଟକଠାରେ ସୈନ୍ୟସଂଗ୍ରହ କରିବା ପରିବର୍ତ୍ତେ ବର୍ଦ୍ଧମାନ ଅଭିମୁଖେ ଯାଇ ଆକ୍‌ବର ନଗରରେ ପହଞ୍ଚିଥିଲେ ।

ଅବଶ୍ୟ ଶାହାଜାହାନ ଓଡ଼ିଶାରୁ ଯାଇ ଆହ୍ଲାବାଦ ଓ ଅଯୋଧ୍ୟା ଅଧିକାର କରି ନ ପାରି ପୁନଃ ଗୋଲକୁଣ୍ଡା ପ୍ରତ୍ୟାବର୍ତ୍ତନ କରିବା ପରେ ଅହମ୍ମଦ ବେଗ୍ ପୁନଃ ଓଡ଼ିଶାର ଗଭର୍ଣ୍ଣର ରୂପେ ନିଯୁକ୍ତ ହୋଇ ୧୬୨୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରହିଥିଲେ ।

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ହୁଏ ଯଦି ସେତେବେଳେ ଓଡ଼ିଶାର ରାଜାମାନେ ଏକତ୍ରୀତ ହୋଇ ସାମାନ୍ୟ ଆକ୍ରମଣ କରିବାର ପଟାଟୋପ ଦେଖେଇଥାନ୍ତେ, ଅହମ୍ମଦ ବେଗ୍ ଭଳି ଛେରୁଆମାନେ ଯେମିତି ପଳାୟନ କରିଥାନ୍ତେ ବଙ୍ଗଳା ଆଡ଼କୁ ।

**ଆକ୍ରମଣ :**

ଅହମ୍ମଦ ବେଗ୍‌ର କୌଣସି ସର୍ତ୍ତରେ ଗଜପତି ରାଜି ନ ହେବାରୁ ସେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଖୋର୍ଦ୍ଧା ଆକ୍ରମଣ କଲା । ଯେ ଆକ୍ରମଣ ନରସିଂହ ଦେବଙ୍କ ସିଂହାସନ ଆରୋହଣର ଏକ ବର୍ଷ ପରେ ସମ୍ଭବ ହୋଇଥିଲା । ଶ୍ରୀ କେଦାରନାଥ ମହାପାତ୍ରଙ୍କ ମତରେ ଏହି ସଂଘର୍ଷ ତା୨୬-୮-୧୬୨୩ରିଖରୁ ତା୧୫-୮-୧୬୨୪ରିଖ ମଧ୍ୟରେ ହୋଇଥିଲା ।

ଜାହାଙ୍ଗୀରଙ୍କ ଆତ୍ମଜୀବନୀରୁ ଜଣାପଡୁଛି ଅହମ୍ମଦ ବେଗ୍ ୧୬୨୨ ଖ୍ରୀ. ରେ ଖୁର୍ଦ୍ଧା ଆକ୍ରମଣ କରିଥିଲେ । "It so happened that at this time Ahmed Beg Khan x x x x had attacked the Zamindars of Khurda. (ପ୍ରଥମ ଭାଗ) ।

ବହିରିସ୍ତାନ-ଇ-ଘାଇବି ଗ୍ରନ୍ଥର ଦ୍ୱିତୀୟ ଭାଗ ପୃଷ୍ଠା ୬୮୮-୬୮୯ରେ ମିର୍ଜାନାଥନ୍ ଲେଖିଛନ୍ତି ଯେ, ଶାହାଜାହାନଙ୍କ ଖୁର୍ଦ୍ଧା ରାଜ୍ୟ ପ୍ରବେଶ ସମୟରେ ପୁରୁଷୋତ୍ତମ ଦେବ ତାଙ୍କୁ ଅଭ୍ୟର୍ଥନା କରିଥିଲେ । କିନ୍ତୁ ଏହି ମତକୁ କେଦାରନାଥ ମହାପାତ୍ର ସମ୍ପୂର୍ଣ୍ଣ ମିଥ୍ୟା ବୋଲି ମତ ଦେଇଛନ୍ତି । (ଖୁର୍ଦ୍ଧା ଇତିହାସ, ପୃ-୫୭) ।

ଶାହାଜାହାନଙ୍କ ଖୁରୁଧା ଆଗମନ ସମୟରେ ପୁରୁଷୋତ୍ତମ ଦେବଙ୍କ ପୁତ୍ର ନରସିଂହ ଦେବ ଖୁରୁଧା ରାଜା ଥିବା ଅଭ୍ରାନ୍ତ ଭାବରେ ପ୍ରମାଣିତ ହୋଇଛି । ତେଣୁ ମିର୍ଜାନାଥନ୍‌ଙ୍କ ବିବରଣୀ ଭ୍ରାନ୍ତ ।

## ମାଦଳାପାଂଜି ମତ :

ଏ ସମ୍ବନ୍ଧରେ ମାଦଳାପାଂଜିରେ ବର୍ଣ୍ଣିତ ଅଛି, "ଏ ମହାରାଜାଙ୍କ ଚାରିଅଙ୍କେ ଅହମ୍ମଦ ବେଗ ବୋଇଲା କୁଟୁମ୍ବ ରାଜାଙ୍କର କଟକ ନେଅ । ଏଥକୁ ରାଜା ଅନ୍ଧାରିମହିମଠାରୁ ଭାଙ୍ଗି ମାଣତ୍ରି କଟକକୁ ବିଜେ କରିଥିଲେ । ତାଙ୍କ ଭିତରୁ ପରମେଶ୍ୱରଙ୍କଠାରୁ ବ୍ରହ୍ମମାନ ମାହାର କରି ଦଇତାପତି ଲୁଗାରେ ପୁରାଇ ମାଣତିର କଟକେ ଶ୍ରୀନଅରେ ବିଜେ କରାଇଲେ । ଏ ମହାରାଜା ଏ ଅହମ୍ମଦ ବେଗକୁ ଦରବନ୍ଧା କରିଥିଲେ । ମଙ୍ଗଳାଯୋଡ଼ିଠାରେ ଦରବନ୍ଧାରୁ ପେଲି ହୋଇ କଟକ ଗଲେ ।"

ଅନେକ ଐତିହାସିକ ସମ୍ଭାବନା କରିଛନ୍ତି ଯେ, ଏଇ ଅହମ୍ମଦ ବେଗଙ୍କ ଶ୍ରୀମନ୍ଦିର ଆକ୍ରମଣ ବେଳେ ଜଗନ୍ନାଥଙ୍କ ବିଗ୍ରହଙ୍କୁ ଶ୍ରୀମନ୍ଦିରରୁ ଯେତେବେଳେ ସ୍ଥାନାନ୍ତରିତ କରା ଯାଇଥିଲା ସେହି ସମୟରେ ଭକ୍ତକବି ସାଲବେଗ ତାଙ୍କର ବିଖ୍ୟାତ ଭଜନ "କେଣେ ଘେନିଯାଉଛ ଜଗନ୍ନାଥଙ୍କୁ, ଆମେ ଦ୍ରଶନ କରିବୁ କାହାକୁ" ରଚନା କରିଥିଲେ । ଏହି ସମ୍ଭାବନା ଯୁକ୍ତିଯୁକ୍ତ ମନେ ହୁଏ । ଯବନ କବି ସାଲବେଗ ସେତେବେଳକୁ ସମ୍ପୂର୍ଣ୍ଣ ରୂପେ ବୈଷ୍ଣବ ଦୀକ୍ଷା ନେଇ ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ହୋଇ ସାରିଥିଲେ । ଶ୍ରୀମନ୍ଦିର ଭିତରକୁ ମଧ୍ୟ ସେ ନିର୍ଦ୍ୱନ୍ଦରେ ପ୍ରବେଶ କରି ପାରୁଥିଲେ (ଦ୍ରଷ୍ଟବ୍ୟ- ଶ୍ରୀଜଗନ୍ନାଥ ଚେତନାର ସମନ୍ୱୟ ଭାବଧାରା, ପୃ- ୧୦୨-୧୦୩ । ଲେ- ଡ଼କ୍ଟର ସୁରେନ୍ଦ୍ର କୁମାର ମିଶ୍ର, ପ୍ରକାଶକ- ଏସ୍‌ବି ପବ୍ଲିକେଶନ୍‌ସ୍, କଟକ-୨) । ତେଣୁ ଦଇତାପତିମାନେ ଶ୍ରୀମନ୍ଦିରରୁ ଶ୍ରୀବିଗ୍ରହଙ୍କୁ ସ୍ଥାନାନ୍ତର କଲାବେଳେ ଭକ୍ତର ହୃଦୟ ବିଗଳିତ ହୋଇଯାଇଛି । ତେଣୁ ଦରଦୀ ଭକ୍ତପ୍ରାଣ ବାହୁନି ଉଠିଛି 'କେଣେ ଘେନିଯାଉଛ ଜଗନ୍ନାଥଙ୍କୁ..... ।"

୧୬୨୪ ଖ୍ରୀଷ୍ଟାବ୍ଦରେ ଶ୍ରୀବିଗ୍ରହଙ୍କୁ ଶ୍ରୀମନ୍ଦିରକୁ ଆଣି ରତ୍ନସିଂହାସନରେ ସ୍ଥାପନା କରିଥିବାର ଜଣାଯାଏ । ଅନ୍ନ ମହାପ୍ରସାଦର ପୁନଃପ୍ରଚଳନ ହୋଇଥିଲା । ଏହା ସମ୍ଭବ ହୋଇଥିଲା ଖୁରମ୍‌ଙ୍କ ବନ୍ଧୁ ରାଜା ଭୀମସିଂହଙ୍କ ସାହାଯ୍ୟରେ (ସାଲବେଗଙ୍କ ସମୟରେ ପୁରୀ ମନ୍ଦିର ଆକ୍ରମଣ, ଲେ- ଡ଼କ୍ଟର ଅମୂଲ୍ୟ କୃଷ୍ଣ ମିଶ୍ର, ଶ୍ରୀଜଗନ୍ନାଥ ପତ୍ରିକା, ପୃ-୧୨୫, ରଥଯାତ୍ରା ବିଶେଷାଙ୍କ - ୧୯୮୮) ।

୧୬୨୫ ଖ୍ରୀ.ରୁ ୧୬୨୮ ଖ୍ରୀ. ପର୍ଯ୍ୟନ୍ତ ମୀର୍ଜା ଅହମ୍ମଦ ବେଗ୍ ଓଡ଼ିଶାରେ ସୁବାଦାର ରୂପେ ପୁନଃନିଯୁକ୍ତ ହୋଇଥିଲେ । ସେତେବେଳକୁ ଶ୍ରୀକ୍ଷେତ୍ରରେ ସାଲବେଗ ଥିଲେ ସର୍ବଜନାଦୃତ । ଯଥେଷ୍ଟ ଖ୍ୟାତି ମଣ୍ଡିତ ହୋଇ ସର୍ବଧର୍ମ-ସମନୀତିର ଜ୍ୱଳନ୍ତ ଉଦାହରଣ ହୋଇ ସାରିଥିଲେ । ସାଲବେଗଙ୍କ ପ୍ରଭାବରେ ଅହମ୍ମଦ ବେଗ ମନ୍ଦିର ଆକ୍ରମଣରୁ ନିବୃତ୍ତ ରହିଥିଲେ, ବୈଷ୍ଣବ ଧର୍ମପ୍ରତି ଆକୃଷ୍ଟ ହୋଇଥିଲେ ।

କେଦାରନାଥ ମହାପାତ୍ର ମତ ଦିଅନ୍ତି ଯେ ଅହମ୍ମଦ ବେଗ୍ ''ସ୍ୱାମୀ-ରସିକାନନ୍ଦ'ଙ୍କ ଦ୍ୱାରା ପ୍ରଭାବିତ ହୋଇ ଉଦାରନୀତି ପ୍ରଦର୍ଶନ କରିଥିଲେ । ସେହିଠାରୁ ସାଲବେଗଙ୍କ ମୃତ୍ୟୁ ପର୍ଯ୍ୟନ୍ତ ପୁରୀ ମନ୍ଦିର ଉପରେ ଆକ୍ରମଣ ହୋଇ ନଥିଲା ।

କିନ୍ତୁ ଫକୀର ହରିଚନ୍ଦନ ''ଅନ୍ଧାରୀ ଓ କୋକଲଗଡ଼ର କ୍ଷମତାଶାଳୀ ଗଡ଼ନାୟକ ଧରମୁରାୟପିତାମ୍ ବଡ଼ଦେଉଳରୁ ଅହମ୍ମଦ ବେଗଙ୍କ ମୋଗଲ ଆକ୍ରମଣକାରୀମାନଙ୍କୁ ତଡ଼ି ଜଗନ୍ନାଥଙ୍କ ମନ୍ଦିରରେ ପୁନଃପ୍ରତିଷ୍ଠା କରିବାରେ ବିଶେଷ ସହାୟତା କରିଥିବା ଚକଡ଼ାପୋଥିରୁ ଜଣାଯାଏ ବୋଲି (ଉଦ୍ଧୃତ ଖୋର୍ଦ୍ଧା ଇତିହାସର ଅନ୍ତରାଳେ, ପୃ-୧୩୬) ମତ ବ୍ୟକ୍ତ କରିଛନ୍ତି ।''

**ଉପସଂହାର :**

ମାଦଳାପାଂଜି ବର୍ଣ୍ଣନା ଦୃଷ୍ଟିରୁ ଅହମ୍ମଦ ବେଗ ଆକ୍ରମଣ ବେଳେ ମହାପ୍ରଭୁଙ୍କ ବିଗ୍ରହ ସ୍ଥାନାନ୍ତର କରାନଯାଇ କେବଳ 'ବ୍ରହ୍ମ'ଙ୍କୁ ସ୍ଥାନାନ୍ତର କରା ଯାଇଥିଲା । ମାଣିତ୍ରୀଗଡ଼ର ଶ୍ରୀନଅରରେ ଗଜପତି ଥିବାରୁ ଦଇତାପତିମାନେ ସେହି ନଅରକୁ ହିଁ 'ବ୍ରହ୍ମ' ସ୍ଥାନାନ୍ତର କରିଥିଲେ । ଯେଥିରୁ ସ୍ପଷ୍ଟ ହେଉଛି ବିଗ୍ରହ ସ୍ଥାନାନ୍ତର ହୋଇପାରି ନାହାଁନ୍ତି । ଯାର ଏକମାତ୍ର କାରଣ ଆମେ ଭାବୁଛୁ ଅହମ୍ମଦ ବେଗ୍ର ପ୍ରବଳ ଆକ୍ରମଣ । ଶ୍ରୀମନ୍ଦିରରୁ ଲୁଣ୍ଠନ କରିବା ତାର ଏକମାତ୍ର ଲକ୍ଷ୍ୟ ଥିବ, ତେଣୁ ବିନା ପ୍ରତିରୋଧରେ ଖୁବ୍ ସହଜରେ ସେ ପୁରୀ ଆକ୍ରମଣ କରିବା ସହ ଶ୍ରୀମନ୍ଦିର ଅଧିକାର କରି ନେଇଥିବ । ଦଇତାପତି ସେବକମାନେ ଯେକି ମହାପ୍ରଭୁଙ୍କ ଅଙ୍ଗରକ୍ଷକ ସେବକ, ସେମାନେ ଅନ୍ୟାନ୍ୟ ସେବକମାନଙ୍କ ସହ ବିଚାରବିମର୍ଷ କରିଥିବେ । ସବୁ ସେବକ-ନିଯୋଗ ବା ସେବକ-ମଣ୍ଡଳୀ (ସଂପ୍ରଦାୟ)ର ମୁଖିଆମାନଙ୍କ ସହ ଆଲୋଚନା କରି ପ୍ରଭୁଙ୍କୁ ଲୁକ୍କାୟିତ ଭାବରେ ଗଜପତି ସପରିବାର ଅବସ୍ଥାନ କରୁଥିବା ଶ୍ରୀନଅରକୁ ସ୍ଥାନାନ୍ତରିତ କରି ନେଇଥିବେ । ତାହା ହିଁ ଜଣାପଡୁଛି 'ଚକଡ଼ାପୋଥି'ରୁ । ଯାହା ଶ୍ରୀଯୁକ୍ତ ହରିଚନ୍ଦନ ଗ୍ରହଣ କରିଛନ୍ତି ।

କୋକଲଗଡ଼ର କ୍ଷମତାଶାଳୀ ଗଡ଼ନାୟକ ଧରମୁରାୟପିତାମ୍ ବଡ଼ଦେଉଳରୁ ଅହମ୍ମଦ ବେଗଙ୍କ ମୋଗଲ ସୈନ୍ୟମାନଙ୍କୁ ତଡ଼ି ଦେଇଥିବାର ଉଲ୍ଲେଖ ମିଳୁଥିବାରୁ ନିଶ୍ଚିତଭାବେ ଅହମ୍ମଦ ବେଗ ଶ୍ରୀମନ୍ଦିର ଦଖଲ କରି ନିଜ ଅକ୍ତିଆରରେ ଅନେକ ଦିନ ରଖିଛି । ଯିଏ ଶ୍ରୀମନ୍ଦିର ନିଜ ଦଖଲରେ ଅନେକ ଦିନ ରଖିଥିଲା ସେ ଯେ ତନ୍ମଧ୍ୟରୁ ଅନେକ ଧନ-ରତ୍ନ ଲୁଣ୍ଠନ କରି ନେଇଥିବ ଯେଥିରେ ସନ୍ଦେହ ନାହିଁ । ଧରମୁରାୟପିତାମ୍ ଆକ୍ରମଣକାରୀଙ୍କୁ ଦେଉଳରୁ ତଡ଼ିବା ପରେ ଶ୍ରୀଜଗନ୍ନାଥ ପୁନଃ ପ୍ରତିଷ୍ଠିତ ହେବାରେ ସେ ସାହାଯ୍ୟ କରିଥିଲେ । ତେଣୁ ମହାପ୍ରଭୁଙ୍କ ବ୍ରହ୍ମପଦାର୍ଥ ପୁନଃ ଗଡ଼ମାଣିତ୍ରୀରୁ ଆସିଥିବ । ନବକଳେବର ହୋଇ ପ୍ରଭୁ ପୁନଃ ପ୍ରତିଷ୍ଠିତ ହୋଇଥିବେ । ତେଣୁ ସେତେବେଳକୁ ଶ୍ରୀମନ୍ଦିରକୁ ସେବକ ବା ଅନ୍ୟମାନେ କେହି ଯାଉ ନଥିବେ ଯେ ପର୍ଯ୍ୟନ୍ତ ମୋଗଲ ସୈନ୍ୟ ଶ୍ରୀମନ୍ଦିରରେ ଥିବେ । ଅତଏବ ଲୁଣ୍ଠିତ ଦ୍ରବ୍ୟର ସଠିକ ବିବରଣୀ ଲୋକଲୋଚନ ଆସି ନଥିବାରୁ ଅନାଲୋଚିତ ରହିଯାଇଛି ।

—●—




# ଅମିର ଫତେ ଖାଁଙ୍କ ଶ୍ରୀମନ୍ଦିର ଲୁଣ୍ଠନ

ଅମିର ଫତେ ଖାଁ ମୁତାକ୍ବାଦ ଖାଁଙ୍କର ସେନାପତି । ମୁତାକ୍ବାଦ ଖାଁଙ୍କର ଅନ୍ୟନାମ ମିର୍ଜ୍ଜା ମକ୍କୀ । ମହମ୍ମଦ ଜମାନଙ୍କ ପରେ ମୁତାକ୍ବାଦ ଖାଁ ଦ୍ୱିତୀୟ ଥର ଲାଗି ଓଡ଼ିଶାର ସୁବାଦାର ନିଯୁକ୍ତ ହୋଇଥିଲେ । ସେ ତା ୨୧-୧୧-୧୬୪୫ ରିଖଠାରୁ ତା ୨୬-୭-୧୬୪୮ ରିଖ ପର୍ଯ୍ୟନ୍ତ ସୁବାଦାର ଥିଲେ । ଖାନ୍-ଇ-ଦୁରାନ୍ ୧୬୬୧ ଖ୍ରୀଷ୍ଟବ୍ଦରେ ଦିଲ୍ଲୀ ଦରବାରକୁ ଏକ ପତ୍ର ଲେଖିଥିଲେ । ଯେଉଁ ପତ୍ରରୁ ଜଣାପଡ଼େ ମୁତାକ୍ବାଦ ଖାଁ ସୁବାଦାର ଥାଇ ଗଜପତି ନରସିଂହ ଦେବଙ୍କୁ ମରାଇଥିଲେ । "When the late Mutaqud Khan was Subahdar he slew Narasingh Dev and made his nephew Gangadhara Rajah. (Studies in Mughal India, by Sir J. N. Sarkar, P-24.)"

ଓଡ଼ିଶା ଇତିହାସରେ ମୁତାକ୍ବାଦ ଖାଁଙ୍କର ସୁବାଦାର ନିଯୁକ୍ତି ବିଷୟ ବିଭିନ୍ନପ୍ରକାର ବର୍ଣ୍ଣିତ ହୋଇଛି । ସେ ପ୍ରଥମେ ୧୬୩୨ ଖ୍ରୀଷ୍ଟାବ୍ଦରେ ସୁବାଦାର ହୋଇ ଆସିଥିଲେ । ୧୬୩୪ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ଥର ପାଇଁ ସୁବାଦାର ନିଯୁକ୍ତ ହୋଇଥିଲେ । ୧୬୪୫ ଖ୍ରୀଷ୍ଟାବ୍ଦରେ ତୃତୀୟ ଥର ପାଇଁ ନିଯୁକ୍ତ ହୋଇଥିଲେ । ଅନେକ ଐତିହାସିକ ଯେଥିରେ ଏକମତ ହୋଇ ନାହାଁନ୍ତି । ସେମାନଙ୍କ ମତରେ ୧୬୪୫ରେ ସେ ୨ୟ ଥର ପାଇଁ ସୁବାଦାର ନିଯୁକ୍ତ ହୋଇଥିଲେ । ତୃତୀୟ ଥର ନୁହେଁ । ହୁଏତ ପ୍ରଥମ ଥର ୨ବର୍ଷ ସୁବାଦାର ରହିବା ପରେ ୧୬୩୪ରେ ତାଙ୍କୁ ପୁନଃ ନିଯୁକ୍ତି ଦିଆ ଯାଇଥିଲା ଯାହାକୁ ଐତିହାସିକମାନେ ଗୋଟିଏ ଥର ବୋଲି ଗ୍ରହଣ କରିଛନ୍ତି ।

କିନ୍ତୁ କେଦାରନାଥ ମହାପାତ୍ର ସ୍ପଷ୍ଟ ଉଲ୍ଲେଖ କରିଛନ୍ତି ମୁତାକ୍ବାଦ୍ ଖାଁ ୧୬୩୨ରୁ ୧୬୪୧ ଖ୍ରୀ. ପର୍ଯ୍ୟନ୍ତ ସୁବାଦାର ଥିଲେ । ତାଙ୍କ ପରେ ସାହ ନଓ୍ୱାଜ ଖାଁ ୧୬୪୧ ରୁ ୧୬୪୨ ଖ୍ରୀ.ପର୍ଯ୍ୟନ୍ତ ଏବଂ ଯୁବରାଜ ମହମ୍ମଦ ସୁଜାଙ୍କ ସହକାରୀ ମହମ୍ମଦ ଜମାନ୍ ତେହରାନି ୧୬୪୨ରୁ ୧୬୪୫ ଖ୍ରୀ. ପର୍ଯ୍ୟନ୍ତ ସୁବାଦାର୍ ଥିଲେ (ଖୁରୁଧା ଇତିହାସ, ପୃ-୭୬) । ତେଣୁ ଯେଥିରୁ ସ୍ପଷ୍ଟ ହୁଏ ଯେ ମୁତାକ୍ବାଦ ଖାଁ ତିନିଥର ନୁହେଁ ଦୁଇଥର ମାତ୍ର ସୁବାଦାର ହୋଇଛନ୍ତି ।

ପ୍ରଥମ ଥର ସୁବାଦାର ଥିବାବେଳେ ସେ ଉଦାରବାଦୀ ଶାସକ ଥିଲେ । କାରଣ ସେତିକିବେଳେ ଥରେ ଶ୍ରୀଜଗନ୍ନାଥ ମନ୍ଦିରର ଜୀର୍ଣ୍ଣ ସଂସ୍କାର କାର୍ଯ୍ୟ ହୋଇଥିଲା (ତତ୍ରୈବ) ।

ଆମ୍ଭେ ଏଠାରେ ମୁତାକ୍ବାଦ ଖାଁଙ୍କ ବିଷୟରେ ସବିଶେଷ ଆଲୋଚନା କରିବାର ଏକ ମାତ୍ର କାରଣ ତାଙ୍କର ପ୍ରଧାନ ସେନାପତି ହିଁ ତାଙ୍କ ଅମଳରେ ଶ୍ରୀମନ୍ଦିର ଏବଂ ପୁରୀ ପୁରୁଣା ଶ୍ରୀନଅର ଲୁଣ୍ଠନର ପ୍ରଧାନ ନାୟକ । ମୁତାକ୍ବାଦଙ୍କର ପରୋକ୍ଷ ସମର୍ଥନରେ ଅହମ୍ମଦ ନଗରର ପରାଜିତ ସୁଲତାନ ମାଲିକ ଅମ୍ବରଙ୍କ ନିଷ୍ଠୁର ପୁତ୍ର ଫତେ ଖାଁ ମନଇଚ୍ଛା ଲୁଣ୍ଠନ କରିଥିଲେ ଶ୍ରୀମନ୍ଦିର ଏବଂ ଶ୍ରୀନଅରର ଭଣ୍ଡାର ଗୃହ ।

କିନ୍ତୁ ଡ଼ଃ ଯଜ୍ଞକୁମାର ସାହୁ ଯେଉଁ ଉଲ୍ଲେଖ କରିଛନ୍ତି ଯେ ୧୬୪୬ ଖ୍ରୀ.ରେ ମୁତାକଦ୍ ଖାଁ (ଫତେ ଖାଁ) ନାମକ ଜଣେ ମୁସଲମାନ ଆତତାୟୀଙ୍କ ହସ୍ତରେ ନରସିଂହ ଦେବ ନିହତ ହେଲେ ତାହା ଠିକ୍ ନୁହେଁ । (ଓଡ଼ିଶା ଇତିହାସ, ଦ୍ୱିତୀୟ ଭାଗ, ପୃ-୫୫) । ସେ ମୁତାକ୍ୱାଦ ଖାଁଙ୍କୁ ଯଦିଓ ମୁତାକଦ୍ ଖାଁ ଲେଖିଛନ୍ତି କିନ୍ତୁ ତାଙ୍କ ସହିତ ଫତେ ଖାଁଙ୍କୁ ଏକାକାର କରିଛନ୍ତି । କାରଣ ମୁତାକଦ୍ ଖାଁ ଲେଖି ତାପରେ ବନ୍ଧନୀ ମଧ୍ୟରେ ଫତେ ଖାଁ ବୋଲି ଲେଖିଛନ୍ତି । ବାସ୍ତବରେ ସେ ଏକ ନୁହଁନ୍ତି । ମୁତାକ୍ୱାଦ ହେଉଛନ୍ତି ସୁବାଦାର ଏବଂ ଫତେ ଖାଁ ହେଉଛନ୍ତି ତାଙ୍କର ସେନାପତି ।

ଫତେ ଖାଁ ଥିଲେ ମାଲିକ ଅମ୍ବରଙ୍କ ପୁତ୍ର । ମାଲିକ୍ ଅମ୍ବର ଅହମଦ ନଗରର ସୁଲତାନ ଥିଲେ । ମାଲିକ୍ ଅମ୍ବରଙ୍କ ମୃତ୍ୟୁ ପରେ ଶାହାଜାହାନଙ୍କ ଅମଳରେ ଅହମଦ୍ ନଗରରେ ସାମନ୍ତବାଦୀ ବିବାଦ ଆରମ୍ଭ ହୋଇଥିଲା । ସେତେବେଳେ ଦରବାରର କେତେକ ଧର୍ମାନ୍ଧ ମୁସଲମାନ 'ଓମରାହ'ଙ୍କ ପ୍ରଭାବରେ ପ୍ରଭାବିତ ହୋଇ ଅହମଦ୍ ନଗରର ତତ୍କାଳୀନ ଶାସକ ତାଙ୍କ ହିନ୍ଦୁ ମରହଟ୍ଟୀ ସେନାଧ୍ୟକ୍ଷମାନଙ୍କୁ ହତ୍ୟା କରିଥିଲେ । ସେତେବେଳେ ଫତେ ଖାଁଙ୍କୁ ମଧ୍ୟ କାରାରୁଦ୍ଧ କରିଥିଲେ ।

ମୋଗଲବାହିନୀ ଅହମଦ୍ ନଗରର ଅନେକ ଦୁର୍ଭେଦ୍ୟଦୁର୍ଗକୁ ଦଖଲ କରିବା ପରେ ଅହମଦ୍ ନଗର ସୁଲତାନ ଫତେ ଖାଁଙ୍କୁ ମୁକ୍ତି ଦେଇଥିଲେ । ତାଙ୍କୁ ପ୍ରଧାନ 'ଉଜିର' ହିସାବରେ ମୋଗଲ ପ୍ରଶାସନ ପକ୍ଷରୁ ନିଯୁକ୍ତି ଦିଆ ଯାଇଥିଲା । ପରେ ଫତେ ଖାଁ ମୋଗଲ ପକ୍ଷରେ ଯୋଗଦେଇ ମୋଗଲମାନଙ୍କ ଅଧୀନରେ ଚାକିରୀ କରିଥିଲେ । ପରବର୍ତ୍ତୀ କାଳରେ ଓଡ଼ିଶାର ସୁବାଦାର ମୁତାକ୍ୱାଦ ଖାଁଙ୍କର ପ୍ରଧାନ ସେନାପତି ରୂପେ ସେହି ଫତେ ଖାଁଙ୍କୁ ନିଯୁକ୍ତ କରା ଯାଇଥିଲା । ଯେ କି ପରବର୍ତ୍ତୀ କାଳରେ 'ଅମୀର ଫତେ ଖାଁ' ବା 'ଅମୀର ନବାବ ଫତେ ଖାଁ' ରୂପେ ଓଡ଼ିଶା ଇତିହାସରେ ପରିଚିତ । ଯେ କି ଥିଲେ ବିଶ୍ୱାସଘାତକତାର ମୂର୍ତ୍ତିମନ୍ତ ପ୍ରତୀକ । ସକଳ ପୈଶାଚିକ ପ୍ରବୃତ୍ତିର ପ୍ରବୁଦ୍ଧ ନାୟକ ।

ତାହା ହିଁ ହେବା ସ୍ୱାଭାବିକ । କାରଣ ସେତେବେଳେ ଦିଲ୍ଲୀରେ ବାଦଶାହା ଥାନ୍ତି ଶାହାଜାହାନ । ବାଦଶାହା ଦୁର୍ଦ୍ଧର୍ଷ ଆକ୍ରମଣ କରି ଲୁଣ୍ଠନ ପ୍ରବୃତ୍ତିରେ ବ୍ୟସ୍ତ ରହିବା ସହିତ ଅକଥନୀୟ ଅତ୍ୟାଚାରରେ ସନ୍ତ୍ରସ୍ତ କରି ରଖିଥାନ୍ତି । ନଚେତ୍ ତାଙ୍କର ୩୦ ବର୍ଷ ଶାସନ କାଳରେ ୪୮ ଥର ଯୁଦ୍ଧ ସଂଗଠିତ ହୋଇ ନଥାନ୍ତା । ହାରାହାରି ବର୍ଷକୁ ଦେଢ଼ଥର ଯୁଦ୍ଧ ଭାଗ ପଡୁଛି । ଯେଥିରୁ ଜଣାଯିବ ବର୍ଷ ସାରା ଶାହାଜାହାନ କେବଳ ଯୁଦ୍ଧ ପ୍ରସ୍ତୁତି ଏବଂ ଆକ୍ରମଣ ତଥା ଲୁଣ୍ଠନରେ ବ୍ୟସ୍ତ ରହୁଥିଲେ । ତାହା ପ୍ରାଦେଶିକ ସୁବାଦାରଙ୍କଠାରେ ପ୍ରତିଫଳିତ ହେବା ସ୍ୱାଭାବିକ । ତେଣୁ ଅମିର ଫତେ ଖାଁ ଓଡ଼ିଶାବାସୀଙ୍କ ପାଇଁ ପାଲଟି ଯାଇଥିଲେ ପୈଶାଚିକ ପ୍ରବୃତ୍ତିର ଲଗାମହୀନ ନାୟକ ।

## ନରସିଂହ ଦେବଙ୍କୁ ହତ୍ୟା :

ମୁତାକ୍ୱାଦ ଖାଁ ଓଡ଼ିଶା ଛାଡ଼ିବା ପୂର୍ବରୁ ଗଙ୍ଗାଧର ଦେବ ରାଜତ୍ୱ କରୁଥିଲେ, ତେଣୁ ୧୬୪୭ଖ୍ରୀ.ରେ ନରସିଂହ ଦେବ ନିହତ ହୋଇଥିଲେ । (ଖୁରୁଧା ଇତିହାସ, ପୃ-୭୦)

ଏହା ମାଦଳାପାଂଜି ସମର୍ଥିତ । ''ଏ ମହାରାଜାଙ୍କ ଅ୩୨ଙ୍କ ମିଥୁନ ୭ ଦିନ ରାତ୍ର ପାହିବାକୁ ନବାବ ମତମତି ଖାଁର ଅମରା ଫତେ ଖାଁ ଆସି ଶ୍ରୀପୁରୁଷୋତ୍ତମ ଦକ୍ଷିଣପାରୁଶ ନଅରେ ରାଜାଙ୍କ ଅନୁରୁଦ୍ଧ ରାୟେ ପିତାମହଙ୍କୁ ସାଙ୍ଗ କରି ରାଜା ଠାକୁରଙ୍କ ମୁଣ୍ଡ କାଟି ଦେଲା । ଶ୍ରୀନଅର ଦ୍ରବ୍ୟଯାକ ନେଲା । ପରମେଶ୍ୱରଙ୍କ ଭଣ୍ଡାର ସବୁ ନେଲା ।''

(ପୃ-୬୭-୬୮) ।

ପାଞ୍ଜିରେ ଉଚ୍ଚାରଣ ଭିନ୍ନ ଦେଖାଯାଉଛି । ଯଥା ମୁତାକ୍ୱାଦ ଖାଁ ଶବ୍ଦ 'ମତମତି ଖାଁ' ଏବଂ ଅମିର ଶବ୍ଦ 'ଅମରା' ବୋଲି ଲେଖା ହୋଇଛି । ପ୍ରାଦେଶିକ ଉଚ୍ଚାରଣଗତ ଶୈଳୀ ଯୋଗୁଁ ଏପରି ଲେଖା ହୋଇଛି ବୋଲି କେଦାରନାଥ ମହାପାତ୍ର ମତ ଦେଇଛନ୍ତି ।

ରାଜାଙ୍କର ୩୨ ଅଙ୍କ ମିଥୁନ ୭ ଦିନ ପଡ଼ିଥିଲା ୧୬୪୭ ଖ୍ରୀଷ୍ଟାବ୍ଦ ଜୁନମାସ ୫ ତାରିଖ ଶନିବାର ଦିନ ।

'ରସବିନୋଦ' ଗ୍ରନ୍ଥାକାର ଦୀନକୃଷ୍ଣ ଦାସ ନରସିଂହ ଦେବଙ୍କ ନାମ ନୃସିଂହଦେବ ଲେଖିବା ସହ ଫତେ ଖାଁ ପଠାଣ ହତ୍ୟା କରିଥିଲା ବୋଲି ଲେଖିଛନ୍ତି ।

(ରସବିନୋଦ - ତହୁଁ ପୁରୁଷୋତ୍ତମ ଗଲେ, ପ୍ରଭୁଙ୍କ ସେବା କରିଥିଲେ ।
ଏମନ୍ତ ଫତେ ଖାଁ ପଠାଣ, ଜାଣିଲା ଓଡ଼ିଶା ଭିଆଣ ॥

x x x x

ଗୁପତେ କଲେ ଯେ ବିଚାର ବୋଇଲେ ନୃପତିକିମାର ।
ଧନଭଣ୍ଡାର ନାଞ୍ଚ ଦେଇ ଥାନରେ ଭେଟାଇଲେ ନେଇ ॥

x x x x

ପୁରୁଷୋତ୍ତମେ ରାଜା ଥିଲେ, ଅଇରି ନେଇ ଭେଟାଇଲେ ।
ତେଣୁ ସେ କୋପଭରେ ଆସି, ରାଜାଙ୍କୁ ପକାଇଲାନାଶି ॥)

(ଉଦ୍ଧୃତ- ଖୁ. ଇ.)

ବାସ୍ତବରେ ସୁବାଦାର ମୁତାକ୍ୱାଦ ଖାଁ ଅତ୍ୟନ୍ତ ଉଦାରବାଦୀ ଥିଲେ । ପ୍ରଥମ ସୁବାଦାର ଥିଲାବେଳେ କୌଣସି କ୍ଷତି କରି ନଥିଲେ । ଶେଷ ଥର ସୁବାଦାର ଥିବାବେଳେ ଏହି ଯେଉଁ ଅଶୋଭନୀୟ ବର୍ବରୋଚିତ ଘଟଣା ଘଟିଗଲା ସେଥିପାଇଁ ମୁତାକ୍ୱାଦ ଖାଁ କେତେଦୂର ଦାୟୀ ତାହା ଗବେଷଣା ସାପେକ୍ଷ । କାରଣ ରାଜପରିବାରର ଆଭ୍ୟନ୍ତରୀଣ ଷଡଯନ୍ତ୍ର ପରବର୍ତ୍ତୀ ଇତିହାସରୁ ସ୍ପଷ୍ଟ ହୋଇଯାଉଛି । ହତ୍ୟାକାଣ୍ଡ ପଛରେ ନରସିଂହ ଦେବଙ୍କ ବୃଦ୍ଧ ପିତାମହ ଚକ୍ରାନ୍ତକାରୀ ଅନୁରୁଦ୍ଧ ରାୟଙ୍କ ହାତ ରହିଥିଲା । (ଉତ୍କଳ ଇତିହାସ, କୃପାସିନ୍ଧୁ ମିଶ୍ର)

ଫତେ ଖାଁ ରାଜାଙ୍କୁ ହତ୍ୟା କରିବା ପରେ ନିଜକୁ ଦିଗ୍‌ବିଜୟୀ ମନେ କରିଛି । ଗୃହଶତ୍ରୁମାନେ ତା ସହିତ ମିଶି ଯାଇଛନ୍ତି । ରାଜ ନଅରକୁ ଲୁଣ୍ଠନ କରିବା ସହିତ ଶ୍ରୀମନ୍ଦିରରେ ପ୍ରବେଶ କରି ମହାପ୍ରଭୁଙ୍କ ଭଣ୍ଡାରକୁ ଲୁଣ୍ଠନ କରିଥିଲା । ମନେହୁଏ ସମସ୍ତ ଲୁଣ୍ଠନ ଫତେ ଖାଁ ଦ୍ୱାରା ହୋଇ ନଥିବ । ଗୃହ ଶତ୍ରୁମାନେ ତା ସହିତ ଯୋଗ ଦେଇଥିବାରୁ ସେମାନେ ମଧ ଲୁଣ୍ଠନ କରିଥିବେ । ଐତିହାସିକ ସୂର୍ଯ୍ୟନାରାୟଣ ଦାସ ମାଦଳାପାଂଜି ବର୍ଣ୍ଣିତ 'ମତମତି ଖାଁ'କୁ 'ମୁତାବତ ଖାଁ' କହିଛନ୍ତି । ମୁତାକ୍ୱାଦ ଖାଁ ବୋଲି ଅନେକ ଐତିହାସିକ ଲେଖିଛନ୍ତି । ଫତେ ଖାଁ ଯେଉଁ ସୁବାଦାରଙ୍କର ସେନାପତି ଥିଲେ ସେ ହେଲେ ମୁତାବାତ ଖାଁ, ମୁତାକ୍ୱାଦ ବା ମତମତି ଖାଁ । ସେ ଜଣେ ଲୋକ । ଆକ୍ରମଣର ବର୍ଣ୍ଣନା ଦୃଷ୍ଟିରୁ ସମାନ ଜଣାଯାଏ । କେବଳ ସମୟ ଗୋଟିଏ ବର୍ଷ ଏପଟସେପଟ ହୋଇଛି । କେଦାରନାଥ ମହାପାତ୍ର ଅଙ୍କ ଗଣନା କରି ୧୬୪୭ ମସିହା ଜୁନ୍ ମାସ ୫ ତାରିଖ ନିର୍ଦ୍ଦିଷ୍ଟ କରିଥିବା ବେଳେ ସୂର୍ଯ୍ୟନାରାୟଣ ଦାସ ୧୬୪୬ ବୋଲି ଲେଖିଛନ୍ତି । ଏବଂ ଫତେ ଖାଁର ନାମ ନ ଲେଖି ମୁତାବତ ଖାଁ ହିଁ ପୁରୁଷୋତ୍ତମଙ୍କ ବିରୁଦ୍ଧରେ ସୈନ୍ୟ ପଠାଇଲେ ଏବଂ ଷଡ଼ଯନ୍ତ୍ର କରି ଗଜପତିଙ୍କର ଅଜା ଅନିରୁଦ୍ଧ ରାୟଙ୍କ ଦ୍ୱାରା ପୁରୀଠାରେ ରାଜାଙ୍କୁ ହତ୍ୟାକଲେ ବୋଲି ଲେଖିଛନ୍ତି ।

## ପୁରୀ ନଅର ଆକ୍ରମଣ :

ପୂର୍ବରୁ କୁହା ଯାଇଅଛି ମୁତାକ୍ୱାଦ ଖାଁ ଓରଫ୍ ମିର୍ଜା ମକ୍କୀ ପ୍ରଥମେ ସୁବାଦାର ହୋଇ ଆସିଥିଲେ ୧୬୩୨ ଖ୍ରୀ.ରେ । ଦ୍ୱିତୀୟବାର ସୁବାଦାର ହୋଇ ଆସିଥିଲେ ୧୬୪୫ ଖ୍ରୀ.ରେ । ଏହି ମୋଗଲ ସୁବାଦାରଙ୍କ ଖୋର୍ଦ୍ଧା ଆକ୍ରମଣ ବେଳଠାରୁ ଆକ୍ରମଣ ପଛରେ ରାଜାଙ୍କ ପାଖ ଲୋକମାନଙ୍କ ଷଡ଼ଯନ୍ତ୍ର କାମ କରୁଥିଲା । ନରସିଂହ ଦେବଙ୍କ ପରେ ନରସିଂହ ଦେବଙ୍କ ଭାଇ ଗୋକୁଳାନନ୍ଦ ରାୟଙ୍କ ପୁତ୍ର ଗଙ୍ଗାଧର ଦେବଙ୍କୁ ମୁତକ୍ୱାଦ ଖାଁ ଖୋର୍ଦ୍ଧା ସିଂହାସନରେ ବସାଇଥିଲେ ।

ଭାଗ୍ୟର ବିଡ଼ମ୍ବନା ଜୁଲାଇ ମାସ ୨୬ ତାରିଖ ଖ୍ରୀ. ୧୬୪୮ରେ ମୁତକ୍ୱାଦଙ୍କୁ କାର୍ଯ୍ୟରୁ ଅନ୍ତର କରା ଯାଇଥିଲା । ଆମେ ପୂର୍ବରୁ ମାଦଳାପାଂଜି ବର୍ଣ୍ଣନାରୁ ଜାଣିଲେ ନରସିଂହ ଦେବଙ୍କ ୩୨ଅଙ୍କ ଅର୍ଥାତ୍ ୧୬୪୭ ଖ୍ରୀଷ୍ଟାବ୍ଦରେ ତାଙ୍କୁ ମାରିଦେବାର ଷଡ଼ଯନ୍ତ୍ର ହୋଇଥିଲା । ସେ ସମୟରେ ସୁବାଦାର ମୁତକ୍ୱାଦ ଖାଁ ନିଜେ ଅମୀର ନବାବ ଫତେ ଖାଁକୁ ପୁରୀ ବାଲିସାହି ରାଜନଅରକୁ ପଠାଇ ଗଜପତିଙ୍କୁ ବିଶ୍ୱାସଘାତକତାରେ ମରାଇ ଥିଲେ । ଯେଥିରେ ଅନିରୁଦ୍ଧ ରାୟ ପିତାମହ ସଂପୃକ୍ତ ଥିଲେ ବୋଲି ଲେଖାଯାଇଛି । ଫକୀର ହରିଚନ୍ଦନ ମହାଶୟ ଏହି ଅନିରୁଦ୍ଧ ରାୟ ପିତାମହଙ୍କୁ 'ଅନିରୁଦ୍ଧ ରାୟପିତାମ୍' ବୋଲି ନିର୍ଦ୍ଦିଷ୍ଟ କରିଛନ୍ତି । ତାଙ୍କ ମତରେ ପାଂଜିରେ ଲେଖା ପ୍ରମାଦ ଯୋଗୁଁ ଯେପରି ହୋଇଛି । ଏହି ଅନିରୁଦ୍ଧ ରାୟପିତାମ୍ ହେଉଛନ୍ତି ଅନ୍ଧାରୀ ଜମିଦାର 'ରାୟପିତାମ' ବଂଶର ବଂଶଧର ବୋଲି ସେ ସମ୍ଭାବନା କରିଛନ୍ତି । ତାଙ୍କ ମତରେ ଅନ୍ଧାରୀ ଜମିଦାରୀ 'ରାୟପିତାମ୍' ବଂଶର ତିନିପୁରୁଷ ଧରି ମୌରସୀ ସଂପତ୍ତି ଥିଲା । ରାଜାଙ୍କ ଯୋଗୁଁ ଏହା ହାତଛଡ଼ା ହୋଇଥିବାରୁ ଗଡ଼କୋକଲ ଖଣ୍ଡାଏତ ରାୟପିତାମ୍

ବଂଶର ରାଜାଙ୍କ ସହ ଗୁପ୍ତ ଶତ୍ରୁତା ଥିଲା । ଧରମୁ ରାୟପିତାମ୍‌ଙ୍କର ପୁତ୍ର କୃଷ୍ଣ ବାହୁବଳେନ୍ଦ୍ରଙ୍କର ଦଶପୁଅ ଥିଲେ (ଚକଡ଼ାପୋଥି, ପୃ-୧୫) ବଡ଼ପୁଅ ଜଗନ୍ନାଥ ବ୍ୟତୀତ ଅନ୍ୟମାନଙ୍କ ନାମ ମିଳୁ ନଥିବାରୁ ଜଣଙ୍କର ନାମ 'ଅନିରୁଦ୍ଧ' ହୋଇଥିବା ସମ୍ଭାବନା ।

କାରଣ ସ୍ୱରୂପ ସେ ନରସିଂହ ଦେବଙ୍କ ପିତାମହ ହେଉଛନ୍ତି ପରଲୋକଗତ ଗଜପତି ରାମଚନ୍ଦ୍ର ଦେବ ବୋଲି ଉଲ୍ଲେଖ କରି ଆଉ କେହି ନଥିଲେ ବୋଲି ସ୍ପଷ୍ଟ କରି ଦେଇଛନ୍ତି ।

ଏହି ଷଡ଼ଯନ୍ତ୍ର ପଛରେ ନରସିଂହ ଦେବଙ୍କ ପୁତୁରା ଗଙ୍ଗାଧର ରାୟଙ୍କର ପ୍ରଚ୍ଛନ୍ନ ହାତ ଥିଲା ବୋଲି ଲେଖକ ମହୋଦୟ ସମ୍ଭାବନା କରିଛନ୍ତି । କାରଣ ନରସିଂହ ଦେବଙ୍କ ପରେ ସେ ୧୬୪୭ ଖ୍ରୀଷ୍ଟାବ୍ଦରେ ରାଜା ହୋଇ ମାତ୍ର ୩ ମାସ ୨୧ ଦିନ ରାଜଗାଦିରେ ଥିଲେ ।

**ରାୟପିତାମ୍ କଅଣ :**

ଏହା ଏକ ମୋଗଲ ସୁବାଦାର ପ୍ରଦତ୍ତ ଉପାଧି । କଳାପାହାଡ଼ ଆକ୍ରମଣ ବେଳେ ଯେଉଁ ଦାନପାତ୍ର ନାମକ ବ୍ୟକ୍ତି ବିଶ୍ୱାସଘାତକତା କରି ଚିଲିକାରେ ଜଗନ୍ନାଥଙ୍କ ରହଣି ସ୍ଥାନ ବିଷୟରେ କଳାପାହାଡ଼କୁ ଜଣାଇ ଦେଇଥିଲା ସେ ହୋଇଥିଲା ଦାନପାତ୍ର ପାହାନ୍ତାସିଂହ ଜାଗିରଦାର । ରାମଚନ୍ଦ୍ରଦେବ (୧ମ) ତାକୁ ପ୍ରାଣଦଣ୍ଡ ଦେଇଥିଲେ ପରବର୍ତ୍ତୀ କାଳରେ । ଯେଥିରେ ୩ ଜଣଙ୍କ ମଧ୍ୟରେ ସରଣିପାତ୍ର ବୋଲି ଜଣେ 'ମଳିପଡ଼ାଗଡ଼'ର ରାଜାଙ୍କୁ ଖୁବ୍ ସହାୟତା କରିଥିଲେ ବିଶ୍ୱାସର ସହ । ପାହାନ୍ତାସିଂହର ଜୀବନ ନାଟକ ଅନ୍ତ କରିବାରେ ଅବଦାନ ଥିଲା ସରଣିପାତ୍ରର ।

ସରଣିପାତ୍ର ପରବର୍ତ୍ତୀ କାଳରେ 'ହରିଚନ୍ଦନ' ଉପାଧିରେ ବିଭୂଷିତ ହୋଇ ହେଲା 'ସରଣି ହରିଚନ୍ଦନ' । କିଛି ଦିନ ପରେ ନରସିଂହ ଦେବଙ୍କ ସହ ମତାନ୍ତର ହେଲା ଯାଙ୍କର । ସଂଘର୍ଷର ରୂପ ନେଲା । ସରଣି ହରିଚନ୍ଦନଙ୍କ ମୃତ୍ୟୁପରେ ପୁରୁଷୋତ୍ତମ ଦେବଙ୍କ ୨୨ ଅଙ୍କ ଅର୍ଥାତ୍ ୧୬୧୬ ଖ୍ରୀଷ୍ଟାବ୍ଦରେ ମକରମ୍ ଖାଁ ଖୋର୍ଦ୍ଧା ଆକ୍ରମଣ କରିଥିଲେ । ଠିକ୍ ସେତିକିବେଳେ ଉତ୍ତରେଶ୍ୱର ଜମିଦାର ଗୋପିନାଥ ପାହାନ୍ତାସିଂହଙ୍କୁ କାଙ୍କପୁରରୁ ଡାକିଆଣି ସେ ଜଣେ ଜମିଦାରଙ୍କ ପୁଅ ବୋଲି ମୋଗଲ ସୁବାଦାରଙ୍କ ସହ ଭେଟ କରାଇ ଦେଇଥିଲେ । ସେତିକିବେଳେ ମକରମ୍ ଖାଁ ଚବିଶିକୁଦ ଦଣ୍ଡପାଟର ଜମିଦାର ପଦରେ ପାହାନ୍ତାସିଂହଙ୍କୁ ବସାଇ ତାକୁ 'ରାୟପିତାମ୍' ଉପାଧି ଦେଇଥିଲେ । ସେହିଦିନ ଠାରୁ ଗୋପିନାଥ ପାହାନ୍ତାସିଂହ ଗୋପିନାଥ ରାୟପିତାମ୍ ନାମରେ ପରିଚିତ ହୋଇଥିଲେ । ସେ ହିଁ ଚବିଶକୁଦ ଜମିଦାର ଭାବରେ ଅତ୍ୟନ୍ତ କ୍ଷମତାଶାଳୀ ହୋଇ ଚିଲିକା ଓ ସମୁଦ୍ର ମଧ୍ୟବର୍ତ୍ତୀ ଗୁଣ୍ଡୁରିପଦାଠାରେ ଅନ୍ଧାରୀଗଡ଼ ପ୍ରତିଷ୍ଠା କରିଥିଲେ । (ଚକଡ଼ାପୋଥି, ପୃ-୧୨, ଉଦ୍ଧୃତ ଖୋ.ଇ.ଅ., ପୃ-୧୩୬) ।

**ଉପସଂହାର :**

ନରସିଂହ ଦେବ ହେଉଛନ୍ତି ଖୋର୍ଦ୍ଧାର ଭୋଇ ରାଜବଂଶର ତୃତୀୟ ଗଜପତି । ଭୋଇ ରାଜବଂଶ ପ୍ରତିଷ୍ଠା କରିଥିଲେ ଜନାର୍ଦ୍ଦନ ବିଦ୍ୟାଧରଙ୍କ ପୁତ୍ର ଗଜପତି ରାମଚନ୍ଦ୍ର ଦେବ (୧୫୬୮

ଖ୍ରୀ.ରୁ ୧୬୦୦ ଖ୍ରୀ.) । ଜନାର୍ଦ୍ଦନ ବିଦ୍ୟାଧର ଥିଲେ ଜଣେ ମନ୍ତ୍ରୀ ଓ ସେନାପତି । ଗୋବିନ୍ଦ ବିଦ୍ୟାଧରଙ୍କ ରାଜତ୍ୱ କାଳରୁ ରଘୁରାମ ଜେନାଙ୍କ ଶାସନକାଳ ପର୍ଯ୍ୟନ୍ତ ଦୀର୍ଘ ୨୫ ବର୍ଷ ସେ ଏହି ପଦବୀରେ ରହିବା ସହିତ ଓଡ଼ିଶାର ଦକ୍ଷିଣସୀମା ଦାୟିତ୍ୱରେ ଥିଲେ । ତାଙ୍କର ଅପରିସୀମ କ୍ଷମତା କେତେକଙ୍କର ଈର୍ଷାର କାରଣ ଥିଲା । ମୁକୁନ୍ଦ ହରିଚନ୍ଦନ ଥିଲେ ସେଥିମଧ୍ୟରୁ ଅନ୍ୟତମ । ଷଡ଼ଯନ୍ତ୍ର ଓ ବିଶ୍ୱାସଘାତକତାରେ ଜନାର୍ଦ୍ଦନ (ଦନେଇ) ବିଦ୍ୟାଧରଙ୍କୁ ପ୍ରଥମେ ବନ୍ଦୀ କରି ହତ୍ୟା କଲେ । ରଘୁରାମ ଜେନାଙ୍କୁ ହତ୍ୟା କରାଗଲା । ମୁକୁନ୍ଦ ହରିଚନ୍ଦନ ଗଜପତି ସିଂହାସନରେ ବସିଥିଲେ । ଜନାର୍ଦ୍ଦନଙ୍କୁ ହତ୍ୟା କରାଯିବା ପରେ ତାଙ୍କ ପୁତ୍ର ରାମଚନ୍ଦ୍ର ବନ୍ଦୀ ହୋଇଥିଲେ ରାଜମହେନ୍ଦ୍ରୀଠାରେ । ୧୫୦୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହି ପରିସ୍ଥିତି କାୟମ୍ ଥିଲା । ମୁକୁନ୍ଦଦେବଙ୍କ ମୃତ୍ୟୁପରେ କେତେକ ସାମନ୍ତ ରାଜାମାନଙ୍କ ସମର୍ଥନରେ ୧୫୭୧-୭୨ରେ ରାମଚନ୍ଦ୍ର ରାଉତରାୟ ମହାପାତ୍ର ଓରଫ୍ ରାମଚନ୍ଦ୍ର ଦେବ ଖୁରୁଧା ରାଜ୍ୟ ପ୍ରତିଷ୍ଠା କଲେ । (ଖୁ.ଇ., ପୃ-୫) । ପ୍ରାୟ ୩୫୦ ବର୍ଷ କାଳ କଟକର ବାରବାଟୀ ଦୁର୍ଗ ରାଜଧାନୀ ରହିବା ପରେ ରାମଚନ୍ଦ୍ର ଦେବ ବରୁଣେଇ ପାହାଡ଼ର ଅରଣ୍ୟ ପରିବେଷ୍ଟିତ ଖୋର୍ଦ୍ଧାଦୁର୍ଗ ପ୍ରତିଷ୍ଠା ଇତିହାସ ଦୃଷ୍ଟିରୁ ସଫଳ ନିଷ୍ପତି ବୋଲି ପ୍ରତୀତ ହୁଏ । ରାମଚନ୍ଦ୍ରଙ୍କ ପରେ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଗଜପତି ହୋଇଥିଲେ । ୧୬୨୧ ଖ୍ରୀ.ରେ ତାଙ୍କର ଦେହାନ୍ତ ହେବାପରେ ତାଙ୍କ ପୁତ୍ର ନରସିଂହ ଦେବ ୧୬୨୧ଖ୍ରୀ.ରୁ ୧୬୪୭ ଖ୍ରୀ. ପର୍ଯ୍ୟନ୍ତ ଗଜପତି ଆସନ ଅଳଙ୍କୃତ କରିଥିଲେ । ଯାଙ୍କରି ଉଦ୍ୟମରେ ଶ୍ରୀମନ୍ଦିର ନିର୍ମାଣ ହେବାର ୫୦୦ ବର୍ଷ ପରେ ପ୍ରଥମଥର ପାଇଁ ଚୂନ ଦିଆ ହୋଇଥିଲା । ଏହାର ସବିଶେଷ ବର୍ଣ୍ଣନା ମାଦଳାପାଂଜିର 'ବଡ଼ଦେଉଳ ଚୂନ ହୋଇବା ଯୋଗେ' ନାମକ ଶୀର୍ଷକରୁ ମିଳେ (ପୃ-୯୦) ।

ଅତଏବ ନରସିଂହ ଦେବ ଆସି ସେତେବେଳେ ଶ୍ରୀମନ୍ଦିରର ଦକ୍ଷିଣ ଦିଗରେ ବର୍ତ୍ତମାନ 'ଶ୍ୟାମାକାଳୀ ମନ୍ଦିର' ନିକଟରେ ଥିବା ଶ୍ରୀନଅରରେ (ରାଜବାଟୀ)ରେ ଅବସ୍ଥାନ କରୁଥିଲେ । ବର୍ତ୍ତମାନ ସେଠାରେ ରାଜବାଟୀର ଚିହ୍ନବର୍ଣ୍ଣ ନାହିଁ । ମାତ୍ର ରାଜପ୍ରତିଷ୍ଠିତ 'ଶ୍ୟାମାକାଳୀ ମନ୍ଦିର'ଟି ବିଦ୍ୟମାନ ଅଛି । ସେହିଠାରେ ଅନ୍ଧାରୀ ଜମିଦାର ରାୟପିତାମ୍ ବଂଶର ବଂଶଧର ଅନିରୁଦ୍ଧ ରାୟପିତାମ୍‌ଙ୍କୁ ଫତେ ଖାଁ କୌଶଳରେ ନିଜପକ୍ଷକୁ ନେଇଯାଇ ଗଜପତିଙ୍କୁ ହତ୍ୟା କରିବାକୁ ଯୋଜନା କରିଥିଲେ । ଅନିରୁଦ୍ଧ ରାୟପିତାମ୍‌ଙ୍କର ତିନି ପୁରୁଷରୁ ଥିବା ମୌରସୀ ସଂପତ୍ତି ଗଜପତିଙ୍କ ଯୋଗୁଁ ହସ୍ତାନ୍ତର ହୋଇ ଯାଇଥିଲା, ତେଣୁ ଜମିଦାରୀ ଉଚ୍ଛେଦର ପ୍ରତିଶୋଧ ନେବାପାଇଁ ସେ ସୁଯୋଗରେ ଥିଲେ । ଫତେ ଖାଁର ଇଙ୍ଗିତରେ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ସେ ଗଜପତିଙ୍କ ବିରୋଧି ଶିବିରରେ ଗୁପ୍ତରେ ଯୋଗ ଦେଇଥିଲେ ।

ସେଣେ ଗଜପତି ନରସିଂହ ଦେବଙ୍କ ପୁତୁରା ଗଙ୍ଗାଧର ରାୟ ରାଜସିଂହାସନ ଅକ୍ତିଆର କରିବାର ଅଭିଳାଷରେ ଥିଲେ । ତେଣୁ ଫତେ ଖାଁ ଓ ଅନିରୁଦ୍ଧ ରାୟପିତାମ୍‌ଙ୍କ ବିଦ୍ରୋହ ଶିବିରରେ ସେ ମଧ୍ୟ ଯୋଗ ଦେଲେ । ତାଙ୍କର ଲକ୍ଷ୍ୟ ଥିଲା ନରସିଂହ ଦେବଙ୍କ ମୃତ୍ୟୁ ପରେ ସିଂହାସନ ପ୍ରାପ୍ତି । ସେ ବି ପରବର୍ତ୍ତୀ କାଳରେ ତାହା ପାଇଲେ । ମାତ୍ର ତିନିମାସ ଏକୋଇଶି ଦିନ ସେ ସିଂହାସନରେ ରାଜତ୍ୱ କରି ପାରିଥିଲେ ।

ଉପରୋକ୍ତ ତିନିଜଣ ଯାକ ଖୁବ୍ ସତର୍କତାର ସହିତ ରାଜବାଟୀର କିଛି ବିଶ୍ୱସ୍ତ କର୍ମଚାରୀଙ୍କୁ ହାତ କରି ନେଇଥିଲେ । ଯାହା ଫଳରେ ରାତ୍ରିର ଶେଷ ପ୍ରହରରେ ସେମାନେ ଆକ୍ରମଣ କରିବାକୁ ଉଚିତ ମନେ କରିଥିଲେ । ଗଜପତି ଯେତେବେଳେ ଗଭୀର ନିଦ୍ରାରେ ଶୟନରତ, ରାଜବାଟୀ ଶୂନଶାନ୍ । ଖୁବ୍ କମ ସଂଖ୍ୟକ ଅଙ୍ଗରକ୍ଷୀ ରାତ୍ରି ଅନିଦ୍ରା ରହି ପାହାନ୍ତା ପହରକୁ କ୍ଲାନ୍ତ, ଠିକ୍ ସେତିକିବେଳେ ଫତେ ଖାଁ ଗଜପତିଙ୍କ ଶୟନକକ୍ଷରେ ପ୍ରବେଶ କରି ଗଜପତିଙ୍କ ମୁଣ୍ଡକୁ ବିଚ୍ଛିନ୍ନ କରିଦେଲା ଦେହରୁ । ତା ପରେ ଯେଉଁ ଗୋଳମାଳିଆ ପରିସ୍ଥିତି ନଅରରେ ସୃଷ୍ଟି ହୋଇଥିବ ତାହା ସହଜରେ ଅନୁମେୟ । ସେଇ ଅଭାବନୀୟ ପରିସ୍ଥିତିର ସୁଯୋଗ ନେଇ ଫତେ ଖାଁ ନିଜ ସେନାମାନଙ୍କ ସହାୟତାରେ ପ୍ରଥମେ ଶ୍ରୀନଅର ଲୁଣ୍ଠନ କରିଛି । ଯେଉଁ କେତେଜଣ ସଚ୍ଚୋଟ ରାଜ କର୍ମଚାରୀ ତାକୁ ବାଧା ଦେଇଥିବେ ସେମାନେ ମୃତ୍ୟୁକୁ ନିମନ୍ତ୍ରଣ କରିଥିବେ ।

ସକାଳୁ ସକାଳୁ ଶ୍ରୀନଅର ଲୁଣ୍ଠନ କରିବା ପରେ ଫତେ ଖାଁ କାଳବିଳମ୍ବ ନକରି ଶ୍ରୀମନ୍ଦିରରେ ପ୍ରବେଶ କରିଛି । କାରଣ ସେତେବେଳକୁ ଗଜପତିଙ୍କ ସେନାମାନେ ପ୍ରତିରୋଧ କରିବାର ଯଦିଓ ସମୟ ପାଇନଥିବେ ତଥାପି ବିଳମ୍ବ କଲେ ପ୍ରତିରୋଧକୁ ସାମନା କରିବାକୁ ପଡ଼ିପାରେ ଏଇ ଆଶଙ୍କାରେ ହିଁ ଫତେ ଖାଁ ସୁଚିନ୍ତିତ ଏବଂ ସୁସଙ୍ଗଠିତ ଭାବେ ଶ୍ରୀମନ୍ଦିରରେ ପ୍ରବେଶ କରି ମାଦଳାପାଂଜି ମତରେ ଭଣ୍ଡାରଘର ଠାରୁ ସମସ୍ତ ଧନ-ରତ୍ନ ନେଇ ପଳାୟନ କରିଛି । ତାହା ହିଁ ସମ୍ଭବ ହୋଇଥିବ । କାରଣ ଖୋଜାଲୋଡ଼ା କରି ଧନ-ରତ୍ନ ଲୁଣ୍ଠନ କରିବାକୁ ତା ପାଖରେ ସମୟ ନଥିବ । ତେବେ ବି ଭଣ୍ଡାରଘରେ ମହାପ୍ରଭୁଙ୍କର ଯେତିକି ସୁନା-ରୂପା, ମୋତି-ମାଣିକ୍ୟ, ହୀରା-ନୀଳା ବ୍ୟବହାର ପାଇଁ ଥାଏ ତାହା କୋଟି କୋଟି ଟଙ୍କାର ।

ସେହି ସମସ୍ତ ଲୁଣ୍ଠିତ ଦ୍ରବ୍ୟକୁ ଖୁବ୍ ଅନାୟାସରେ ସେ ମୁତାକ୍ୱାଦ ଖାଁଙ୍କୁ ଭେଟି ଦେଇଥିବ । ସେଥିରୁ ଏକ ବଡ଼ଭାଗ ଦିଲ୍ଲୀ ଦରବାରରେ ପହଞ୍ଚିଥିବ । ମାତ୍ର ଗଜପତିଙ୍କ ମୁଣ୍ଡକାଟ ପରେ ଶ୍ରୀକ୍ଷେତ୍ରରେ ଯେଉଁ ଅଭାବନୀୟ ପରିବେଶ ସୃଷ୍ଟି ହୋଇଥିବ ଏବଂ ଫତେ ଖାଁର ସୈନିକମାନଙ୍କର ଘୋଡ଼ାଟାପୁ ଓ ରଣହୁଙ୍କାରରେ ଯେଉଁ ଦୟନୀୟ ମାନସିକତା ମନୋବୈଜ୍ଞାନିକ ଦୃଷ୍ଟିକୋଣରୁ ସେବକ ଏବଂ ରାଜକର୍ମଚାରୀଙ୍କୁ ଆଚ୍ଛନ୍ନ କରି ରଖିଥିବ ସେଥିରେ ଲୁଣ୍ଠିତ ଧନରାଶିର ଆକଳନ କେମିତି ବା ସମ୍ଭବ ହୋଇଥାନ୍ତା ! ନିଜର ଗଡ଼ନାୟକ, ନିଜର ରକ୍ତ ସଂପର୍କୀୟମାନଙ୍କର ବିଶ୍ୱାସଘାତକତାରେ ଜଣେ ଗଜପତି କେବଳ ହତ୍ୟା ହେଲେ ନାହିଁ ଏକ ଜାତିର ଦୁର୍ବାର ମାନସିକତାକୁ ହତ୍ୟା କରାଗଲା । ଗୋଟିଏ ଜାତିର ଗଚ୍ଛିତ ଧନ-ରାଶି ହସ୍ତାନ୍ତର ହୋଇଗଲା । ରାଜକୋଷ ଶୂନ୍ୟ ହୋଇଗଲା । ଶୂନ୍ୟ ରାଜକୋଷକୁ ନେଇ ଗଜପତି ଶାସନ କେତେକାଳ ବା ଆଉ ଆଣ୍ଠେଇ ଆଣ୍ଠେଇ ଚାଲିଥାନ୍ତା ! ଯେ ଜାତିର ଦୟନୀୟ ମାନସିକତା ଆଜି ଆମ୍ଭର ଦୃଷ୍ଟିଗୋଚର ହେଉଛି ତାହା ସେହି ୧୬୪୭ ଖ୍ରୀଷ୍ଟାବ୍ଦରୁ ଅୟମାରମ୍ଭ ହୋଇଥିଲା ତାହା ଜଳ ଜଳ ହୋଇ ଦିଶୁଛି ।

–●–




# ଏକରାମ ଖାଁଙ୍କ ଶ୍ରୀମନ୍ଦିର ଆକ୍ରମଣ ଓ ଲୁଣ୍ଠନ

ସମ୍ରାଟ ଆଉରଙ୍ଗଜେବ ବିଜାପୁରରେ ଥିବାବେଳେ ଶ୍ରୀଜଗନ୍ନାଥଙ୍କ ମନ୍ଦିରକୁ ଧ୍ୱଂସ କରିବା ପାଇଁ ଆଦେଶ ଦେଇଥିଲେ । ସେତେବେଳେ ଖୋର୍ଦ୍ଧାର ରାଜା ଥିଲେ ଦିବ୍ୟସିଂହ ଦେବ । ଆଉରଙ୍ଗଜେବଙ୍କ ଆଦେଶକୁ ତାଙ୍କର ବିଶ୍ୱସ୍ତ କର୍ମଚାରୀ ଏକରାମ୍ ଖାଁ କାର୍ଯ୍ୟକାରୀ କରିଥିଲେ । ସେ ୧୬୯୮ ମସିହାରେ ପୁରୀ ଆକ୍ରମଣ କରିଥିଲେ । ସାଙ୍ଗରେ ଥିଲେ ତାଙ୍କର ଭାଇ ମରମସ୍ତ ଖାଁ ଜାମାଉଲା ।

ନବାବ ଏକରାମ୍ ଖାଁ ସିଂହଦ୍ୱାର କବାଟକୁ ଭାଙ୍ଗି ମନ୍ଦିର ଭିତରେ ପଶିଥିଲେ । ତାଙ୍କ ଭାଇ ମରମସ୍ତ ଖାଁ ପ୍ରଥମେ ରତ୍ନସିଂହାସନ ଉପରକୁ ଚଢ଼ି ପ୍ରଭୁଙ୍କୁ ବାହାର କରିଆଣି ନିଜ ସାଙ୍ଗରେ ନେଇ ଚାଲିଗଲେ । ଅନ୍ୟମାନେ ଶ୍ରୀମନ୍ଦିର ମଧ୍ୟରେ ରହି ଭଣ୍ଡାର ଲୁଟପାଟ କଲାବେଳେ ଦିବ୍ୟସିଂହ ଦେବ ପୁରୀରେ ଥାଇ ମଧ୍ୟ ସାମନା ନକରି ଅଜ୍ଞାତବାସରେ ରହିଥିଲେ । ଏକରାମ ଖାଁ ସୈନ୍ୟମାନଙ୍କ ସହିତ ମନ୍ଦିର ମଧ୍ୟରୁ ଅନେକ ଧନସମ୍ପତ୍ତି ଲୁଣ୍ଠନ କରି ନେଇଥିଲେ ।

କିନ୍ତୁ ମାଦଳାପାଂଜି ବର୍ଣ୍ଣନାରୁ ଜଣାପଡୁଛି ଯେ ଏକରାମ ଖାଁଙ୍କ ଶ୍ରୀମନ୍ଦିର ଆକ୍ରମଣ ପୂର୍ବରୁ ଆକ୍ରମଣ ଆଶଙ୍କାରେ ପ୍ରଭୁଙ୍କୁ ବ୍ରହ୍ମଗିରି ଠାରୁ ୧୫ କି.ମି. ଉତ୍ତର ଦିଗକୁ ଭାର୍ଗବୀ ନଦୀ କୂଳରେ ଥିବା କୋକଲଗଡ଼ (ଗଡ଼କୋକଲ)କୁ ନିଆ ଯାଇଥିଲା । ଆମ୍ଭ ମତରେ ପାଂଜି ବର୍ଣ୍ଣନାରେ ସତ୍ୟତା ରହିଛି । ଏକରାମ ଖାଁର ଭାଇ ରତ୍ନସିଂହାସନରୁ ପ୍ରଭୁଙ୍କୁ ନେଇ ଚାଲିଯିବା କଥା ଜଣାପଡୁଛି । ପ୍ରଭୁଙ୍କ ଦାରୁବିଗ୍ରହ ନେଇ ପ୍ରଥମେ ଆକ୍ରମଣ ଶେଷ ପର୍ଯ୍ୟାୟ ପୂର୍ବରୁ ସେ ଚାଲିଯିବା ସମ୍ଭବ ହୋଇ ନଥିବ । ଦାରୁବିଗ୍ରହଙ୍କୁ ମନ୍ଦିରରୁ ବାହାରକୁ ଆଣିବାକୁ ଯଥେଷ୍ଟ ସମୟ ଲାଗିଥିବ । ନେବାପାଇଁ ଯେଉଁ ପ୍ରସ୍ତୁତି ହୋଇଥିବ ସେଥିପାଇଁ ମଧ୍ୟ ସମୟ ଲାଗିଥିବ । ତେଣୁ ସେ ପ୍ରଭୁଙ୍କ ଚଳନ୍ତି ବିଗ୍ରହଙ୍କୁ ଖୁବ୍ ସୁବିଧାରେ ନେଇ ଯାଇଥିବ । ଦାରୁବ୍ରହ୍ମଙ୍କୁ ''ଦୋବନ୍ଧା''ବାଟେ ଭାର୍ଗବୀ ନଦୀ କୂଳକୁ ନିଆଯାଇ ନୌକାଯୋଗେ କୋକଲଗଡ଼କୁ ନିଆ ଯାଇଥିବ । ଦୋବନ୍ଧା ଭାର୍ଗବୀ ନଦୀର ଏକ ଘାଟ । ପୁରୀର ପଶ୍ଚିମ ଉତ୍ତର ଦିଗକୁ ଥିବା 'ପିଳିପିଳା ଶାସନ' ଦେଇ ଗଲେ ଏହି ଘାଟ ପଡ଼େ । ଏହିଠାରୁ ଭାର୍ଗବୀ ନଦୀ ସୁଗଭୀର । ଆଜି ସୁଦ୍ଧା ଦୋବନ୍ଧୀ ଏକ ପେଣ୍ଠ ରୂପେ ପରିଚିତ ।

ଏହି ଘଟଣାକୁ 'ଚକଡ଼ାପୋଥି' (ପୃ-୨୦) ସମର୍ଥନ କରୁଛନ୍ତି । ''ଦିବ୍ୟସିଂହ ଦେବଙ୍କ ୭ମ ଅଙ୍କ (ଖ୍ରୀ.୧୬୯୭) ରଷଭ (୧୭ଦିନ) ଗୁରୁବାରେ ଏକରାମ ଭାଇ ଜମାଲ ଓ ଅବଦୁଲା ଖାଁ ଦୁଇଜଣ ପାଦସାହାଙ୍କ ହଜୁରରୁ ଆସି ରଜାଙ୍କୁ ସଙ୍ଗେ ଘେନି ପୁରୁଷୋତ୍ତମ ପଇଠ ହୋଇଲେ । ଦେଉଳ ମୁଖଶାଳୀ ଭଙ୍ଗାଇ ସିଂହଦ୍ୱାର ମୁଦାଇଲେ । ପରମେଶ୍ୱରଙ୍କ

ସ୍ୱରୂପେ ତିନିମୂର୍ତ୍ତି ଗଢ଼ାଇଲେ । ବଳଭଦ୍ର ସୁଭଦ୍ରାଙ୍କୁ କୋକୋଲୋ ବସାଇଲେ । ଜଗତି ମୂର୍ତ୍ତିକି ଜମାଇଲେକୁ ସମର୍ପି ଦେଲେ । ସେ ଚମଦଉଡ଼ିରେ ବାନ୍ଧି ଗାଡ଼ିରେ ପକାଇ କଟକ ନେଇ ପାଦସାହାଙ୍କ ହଜୁରକୁ ପଠିଆଇ ଦେଲେ । ପରମେଶ୍ୱରଙ୍କୁ ବିମଳାକ୍ଷୀଙ୍କ ବେଢ଼ା ପଶ୍ଚିମେ ରଖିଦେଲେ । ସିଂହାସନେ ବିଜେ କରାଇ ଦକ୍ଷିଣଦ୍ୱାର ଚୋରି କବାଟବାଟେ ଯାଇ ପୂଜା କଲେ ।

ଛତିସା ନିଯୋଗ ବାହାରଭୋଗ ମନା କଲେ । ନିଯୋଗବ୍ରାହ୍ମଣ ୧୭ ଜଣ ଗଣିତା କରି ଛାଡ଼ିଲେ । ନିତ୍ୟ ସାତ କାହାଣ ଭୋଗ ହୋଇ ସେମାନେ ସାରନ୍ତି । ବାହାରକୁ ମହାପ୍ରସାଦ ନ ଆଣନ୍ତି । ଏ ରୂପ ହୋଇଥିଲା । ପାଦସାହାଙ୍କଠାରେ ଓ୍ୟାକା ହୋଇଲା । ଏକଂରାମ ଖାଁ ତଗିର ହୋଇ ସୁବ ନାମଦାର ଖାଁ ଆସିଲେ । ପାତ୍ର ବିଦ୍ୟାଧର ମହାପାତ୍ରେ ସିକାକୋଲଠାରେ ଭେଟି ଘେନି ଆସିଲେ । ମାଣିକପାଟଣା ବନ୍ଦରଠାରେ ରଜାଭେଟି ଓ ପୁରୁଷୋତ୍ତମ ବାଟେ ରଥିପୁର ଆସି ଟ୩୦,୦୦୦ ତିରିଶ ହଜାର ଟଙ୍କାର ଜିନିଷ ବେଭାର ଦେଇ କଟକ ପହଞ୍ଚାଇଲାରୁ ରାଜାଙ୍କର ନବାବଙ୍କର ବଡ଼ ସୁଖ ହୋଇଲା । ଏହା ଦେଖି କପିଳଭ୍ରମରବରେ ପାଦଶାଙ୍କ ହଜୁରକୁ ଗଲେ ।'' (ପ୍ରକାଶକ ଓ ମୁଦ୍ରାକର ଶ୍ରୀସୁଧାକର ପଟ୍ଟନାୟକ, ୧ମ ମୁଦ୍ରଣ-୧୯୫୯, ପୃ-୨୦)

ଅର୍ଥାତ୍ ଏଥିରୁ ଜଣାପଡୁଛି ବଳଭଦ୍ର ଓ ସୁଭଦ୍ରାଙ୍କର ପ୍ରକୃତ ବିଗ୍ରହ କୋକଲଗଡ଼କୁ ସ୍ଥାନାନ୍ତରିତ ହୋଇ ନକଲି ବିଗ୍ରହ ତିଆରି ହୋଇ ମନ୍ଦିରରେ ରଖା ଯାଇଥିଲା । ମହାପ୍ରଭୁଙ୍କ ବିଗ୍ରହଙ୍କୁ ମା ବିମଳାଙ୍କ ମନ୍ଦିର ପଛପଟେ ଲୁକ୍କାୟିତ ଭାବରେ ରଖା ଯାଇଥିଲା । ନକଲି ବିଗ୍ରହଙ୍କୁ ଚମଦଉଡ଼ିରେ ବାନ୍ଧି ଆକ୍ରମଣକାରୀମାନେ କଟକ ନେଇ ବାଦଶାହାଙ୍କ ପାଖକୁ ପଠାଇଦେଲେ । କାରଣ ଚକଡ଼ାପୋଥି ସ୍ପଷ୍ଟ ଲେଖୁଛନ୍ତି 'ବଳଭଦ୍ରେ ସୁଭଦ୍ରାଙ୍କୁ କୋକେଲୋ ବସାଇଲେ ।'' x x x x ପରମେଶ୍ୱରଙ୍କୁ ବିମଳାକ୍ଷୀଙ୍କ ବେଢ଼ା ପଶ୍ଚିମେ ରଖିଦେଲେ x x x x ଦକ୍ଷିଣଦ୍ୱାର ଚୋରିକବାଟ ବାଟେ ଯାଇ ପୂଜା କଲେ x x x x ।

ମୋଗଲ ଯୁଗର ଏକ ଇତିହାସରୁ ଏହି ଆକ୍ରମଣର ବିବରଣୀ ମିଳୁଛି - He (Mir Sayyid Mahmud of Bilgram) was a man held in great respect and served under Nawab Ikram in Orissa. When Aurangzeb had sent orders to the Nawab to destroy the temple of Jagannath, Raja Durup Singh Deo who had the temple under him asked the Mir to introduce him to the Nawab. The Raja promised to break the temple and to send the big idol to the Emperor. He actually did break the statue of Rakas which over the entrance of the temple, and also to battlements over the door. The idol which was made of Sandal wood and which had two valuable jewels set in the eyes, was carried off and sent to Aurangzeb at Bijapur, where it was thrown by order on the steps of the mosque."

(Tabsirat-ul-Naizirin ରାଜେନ୍ଦ୍ରଲାଲ ମିତ୍ରଙ୍କ Antiquities of Orissa Vol-II, 112ରୁ ଉଦ୍ଧୃତ କରିଛନ୍ତି ଖୁରୁଧା ଇତିହାସକାର କେଦାରନାଥ ମହାପାତ୍ର, ପୃ-୧୧୮ ।)

ଅର୍ଥାତ୍ ବିଲଗ୍ରାମବାସୀ ମୀର ସୟଦ୍ ମହାମୁଦ୍ ଜଣେ ସମ୍ମାନାସ୍ପଦ ବ୍ୟକ୍ତି ଥିଲେ ଏବଂ ସେ ଓଡ଼ିଶାର ନବାବ୍ ଇକ୍‌ରାମଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । ଔରଙ୍ଗଜେବ ନବାବଙ୍କ ନିକଟକୁ ଜଗନ୍ନାଥ ମନ୍ଦିର ଧ୍ୱଂସ କରିବା ନିମିତ୍ତ ଆଦେଶ ପଠାଇବାରୁ ମନ୍ଦିର ତତ୍ତ୍ୱାବଧାରକ ରାଜା ଦିବ୍ୟସିଂହ ଦେବ ମିର୍‌ଙ୍କୁ ନବାବଙ୍କ ସହିତ ମୁଲାକାତ୍ କରାଇଦେବା ପାଇଁ ଅନୁରୋଧ କରିଥିଲେ । ଗଜପତି ଶ୍ରୀମନ୍ଦିର ଭାଙ୍ଗି ବଡ଼ମୂର୍ତ୍ତିଟି ବାଦଶାହାଙ୍କ ନିକଟକୁ ପଠାଇବା ପାଇଁ ପ୍ରତିଶ୍ରୁତି ଦେଇଥିଲେ । ସେ ପ୍ରକୃତରେ ମନ୍ଦିରର ପ୍ରବେଶ ଦ୍ୱାର ବୋଧହୁଏ ସିଂହଦ୍ୱାର ଉପରେ ଥିବା ରାକ୍ଷସମୂର୍ତ୍ତି ଓ ଦୁଇଟି (Batllements) (ଗୁମୁଟ) ଭାଙ୍ଗି ପକାଇଲେ । ଚନ୍ଦନ କାଠରେ ନିର୍ମିତ ଓ ନେତ୍ର ଦ୍ୱୟରେ ମୂଲ୍ୟବାନ ରତ୍ନଖଚିତ ଏକ ଦେବବିଗ୍ରହ ବିଜାପୁରରେ ଥିବା ସମ୍ରାଟ୍ ଔରଙ୍ଗଜେବଙ୍କ ନିକଟକୁ ପଠା ଯାଇଥିଲା । ସେଠାରେ ଏହି ବିଗ୍ରହଟି ମସଜିଦ୍‌ର ପାହାଚ ତଳେ ପକା ଯାଇଥିଲା ।'' (ଉଦ୍ଧୃତ ଖୁ.ଇ., ପୃ-୧୧୮)

ଏହି ଆକ୍ରମଣ ସମ୍ବନ୍ଧରେ ମାଦଳାପାଂଜି କହେ - ''ଏ ମହାରାଜା ଅ୭ଙ୍କ ଋଷଭ ଦି୧୮ନ ମୁଗଲ ଗୋଳରେ ଏ ଦିନ ପଳାଉଣି ନିମନ୍ତେ ରାତ୍ର ତିନିପ୍ରହରଂଠାରେ ପରମେଶ୍ୱରେ ଚତୁର୍ଦ୍ଧାମୂରତି ପହଣ୍ଡିବିଜେ କଲେ । ଭିତର ବେଢ଼ାରେ ବିମ୍ୱଳାଇଙ୍କ ପଛଆଡ଼ ବେଢ଼ାରେ ବିଜେକଲେ । ଦକ୍ଷିଣଘରୁ ଦେବତାମାନେ ପୋକଲ (କୋକଲ) ଗଡ଼କୁ ବିଜେକଲେ । ଏଦିନ ପାହାନ୍ତି ଅବକାଶେ ଦୁଇପହର ଧୂପ ବଢ଼ିଲା ଉତ୍ତାରୁ ବଡ଼ଠାକୁରଙ୍କ ବାଡ଼ରୁ ଆଜ୍ଞାମାନ ହୋଇଲେ । ଏ ଦୁଇମାଳି ଘଣ୍ଟା ଛଡ଼ା ନୋହି । ଚନ୍ଦନପୁର ନଅରକୁ ବିଜେ କଲେ । ଋଷଭ ଦି୧୯ନ ହରଣ ଏକାଦଶୀ ଦିନ ପାତିଶ ଆଉରଙ୍ଗ ସାହାଙ୍କ ନବାବ ଏକରାମ ଖାଁ ଏହାଙ୍କଠାରୁ ଅଇଲା । ଏହା ଭାଇ ମରମସ୍ତ ଖାଁ ଜମାଉଲା ଏ ସଙ୍ଗତେ ଇମାମ କୋଲି ଅସୁଆର ଗୋ୫୦ଟା ଘେନି । ରାଜା ଦିବ୍ୟସିଂହଦେବେ ବାରୁ ଲାଗି ହୋଇଥାଇ ସିଂହଦ୍ୱାର ଗୁମୁଟଭାଙ୍ଗିଲେ । ଭୋଗ ମଣ୍ଡପରୁ ଚକ୍ରନେଲେ । କାଠର ଜଗନ୍ନାଥ ପ୍ରତିମାକୁ ମୁଗଲେ ନେଲେ । ଦେଉଳ ସିଘାଂସନ ଉପରକୁ ନବାବ ଭାଇ ଗଲା । ଦେଉଳ ସିଂଘଦ୍ୱାର ଦକ୍ଷିଣଦ୍ୱାର ମୁଦକଲା । ପରମେଶ୍ୱରେ ବିମ୍ୱଳାଇଙ୍କ ପିଠିଆଡ଼ ବେଢ଼ାରେ ବିଜେ କରିଥିଲେ । ବେଳ ଦ୍ୱିପହଙ୍ଗସରିକି ନବାବ ଭାଇ ଜମାଉଲା ମଧ ଗଦାଧର ରାଏଙ୍କ ଉଆସେ ଥିଲେ । ରାଜା ଜଗନ୍ନାଥ ବିଦ୍ୟାଧର ମହାପାତ୍ରଙ୍କ ଉଆସେ ବିଜେ କରିଥିଲେ । ସମସ୍ତେ ବେଳବୁଡ଼ ସରିକି ଚନ୍ଦନପୁର ଗଲେ । (ମାଦଳାପାଂଜି, ପୃ-୭୦-୭୧) ।

ଅର୍ଥାତ୍ ସିଂହଦ୍ୱାର ଗୁମୁଟ ଭଙ୍ଗାଗଲା । ଭୋଗମଣ୍ଡପରୁ ଚକ୍ର ନେଲେ । କାଠର ଜଗନ୍ନାଥ ପ୍ରତିମାକୁ ମୋଗଲ ସେନାପତିଙ୍କୁ ଦିଆଗଲା । ପ୍ରକୃତ ଜଗନ୍ନାଥ ବିଗ୍ରହଙ୍କୁ ପ୍ରଥମେ ବିମଳାଙ୍କ ପଛଆଡ଼ ବେଢ଼ାରେ ଲୁଚାଇ ରଖି ପରେ ସ୍ଥାନାନ୍ତରିତ କରିଥିଲେ । ଦେଉଳର ସିଂହଦ୍ୱାର ଓ ଦକ୍ଷିଣଦ୍ୱାର ବନ୍ଦ କରାଗଲା । ବିଜୟ ପ୍ରତିମା ସମୂହ ଦକ୍ଷିଣଘରୁ କୋକଲଗଡ଼କୁ

ପଠାଇ ଦିଆଗଲା । ପାଂଜିରେ ଦିଆ ଯାଇଥିବା ନବାବଙ୍କ ଭାଇ ସିଂହାସନ ଉପରକୁ ଯାଇଥିଲେ ବୋଲି ପାଂଜିରେ ଯେଉଁ ଉଲ୍ଲେଖ କରାଯାଇଛି ତାହାକୁ କେଦାରନାଥ ମହାପାତ୍ର ନବାବଙ୍କ କର୍ମଚାରୀ ବୋଲି ଲେଖିଛନ୍ତି । ତାଙ୍କ ମତରେ ''ନବାବ୍‌ଙ୍କ କର୍ମଚାରୀ ମୀର ସୟଦ ମହମ୍ମଦ ରତ୍ନସିଂହାସନ ଉପରକୁ ଚଢ଼ିଥିଲେ । ଶ୍ରୀ ମହାପାତ୍ର ମୋଗଲ ବିବରଣ ଅପେକ୍ଷା ପାଂଜିର ବିବରଣକୁ ଅଧିକ ସ୍ପଷ୍ଟ ଓ ଯୁକ୍ତିସଂଗତ ବୋଲି ଲେଖିଛନ୍ତି ।

ସେ 'ମୋଗଲ ଇତିହାସ', ମାଦଳାପାଂଜି ଓ ଚକଡ଼ାପୋଥିର ବିବରଣୀକୁ ଏକ ସୁନ୍ଦର ସମୀକ୍ଷା କରି ମତ ଦେଇଛନ୍ତି ଯେ ''ପାଂଜି ଓ ଚକଡ଼ା ବର୍ଣ୍ଣିତ ନବାବ ଇକ୍‌ରାମ ଖାଁଙ୍କ ଆଦେଶରେ ଜଗନ୍ନାଥ ମନ୍ଦିର ଆକ୍ରମଣ ହୋଇଥିବା ମୋଗଲ ଇତିହାସ ଦ୍ୱାରା ସମର୍ଥିତ ହୁଏ । ମୋଗଲ ଇତିହାସର ମୀର ସୟଦ ମହମୁଦ, ଏକ ପାଂଜିକାର 'ମରମସ୍ତ ଖାଁ' ଓ ଅନ୍ୟ ପାଂଜିକାର 'ସରମସ୍ତ ଖାଁ' ବୋଲି ଲେଖିଛନ୍ତି । ଇମାମ୍ କୋଲିର ଅର୍ଥ ଜଣାଯାଉ ନାହିଁ । ଚକଡ଼ାରୁ ଜମାଲ ଓ ଅବଦୁଲ ଖାଁ ଦୁଇଜଣଙ୍କ ନାମ ମିଳେ । ତିନୋଟିଯାକ ବିବରଣୀରୁ ଜଣାଯାଏ ଯେ ରାଜା ଦିବ୍ୟସିଂହ ଦେବ କୌଣସି ପ୍ରତିରୋଧ କରିନଥିଲେ । ମୋଗଲ ବିବରଣୀ ଅନୁସାରେ ରାଜା ଦେଉଳ ଭାଙ୍ଗିବା ଜବାବ ଦେଇ ସିଂହଦ୍ୱାରରେ ଥିବା ଏକ ରାକ୍ଷସ ମୂର୍ତ୍ତି ଓ ଗୁମୁଟ ଭାଙ୍ଗିଦେଲେ ଏବଂ ଚନ୍ଦନକାଠରେ ତିଆରି ରତ୍ନଖଚିତ ନେତ୍ର ଏକ ବିଗ୍ରହକୁ ମୋଗଲ ସେନାପତିଙ୍କୁ ଦେଲେ । ସେ ଏହାକୁ ବାଦଶାହାଙ୍କ ବିଜାପୁର ମୋଗଲ ସେନାପତିଙ୍କୁ ଦେଲେ । ସେ ଏହାକୁ ବାଦଶାହାଙ୍କ ବିଜାପୁର ମୁକାମକୁ ପଠାଇଦେଲେ । ଉଦ୍ଧୃତ- ଖୋ.ଇ., ୧୨୦ପୃ), (An Indian Ephemeris, by- Pillai, Vol-VI, P-186) ।

ଶ୍ରୀଯୁକ୍ତ ମହାପାତ୍ର ବଳିଷ୍ଠ ପ୍ରମାଣ ସହ ପାଂଜିମତକୁ ସ୍ୱୀକାର କରିଛନ୍ତି । ସେ କୁହନ୍ତି ମୁସଲମାନ ଐତିହାସିକ ଏହି ଆକ୍ରମଣର ସମୟ ଦେଇନାହାଁନ୍ତି । କିନ୍ତୁ ପାଂଜିରେ ଦିଆ ଯାଇଥିବା ଋଷଭ୍ (ବୃଷ) ୧୯ ହରଣ ଏକାଦଶୀ ତିଥି ୧୬୯୨ ମସିହା ମେ ମାସ ୧୬ ତାରିଖ ସହିତ ସଂପୂର୍ଣ୍ଣରୂପେ ମେଳ ଖାଉଛି । ଏ ତାରିଖରେ ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ, ସୋମବାର, ବୃଷ ୧୮ ଦିନ ହୋଇଥିଲା । ପାଂଜିରେ ୧୯ ଦିନ ଥିବାରୁ ଦିନକର ପାର୍ଥକ୍ୟ ଧର୍ତ୍ତବ୍ୟ ନୁହେଁ । ଐତିହାସିକ ସାର ଯଦୁନାଥ ସରକାରଙ୍କ ଇତିହାସରୁ ଜଣାଯାଏ ଯେ ବାଦଶାହା ଔରଙ୍ଗଜେବ ୧୬୯୧ ମାର୍ଚ୍ଚ ମାସରୁ ୧୬୯୨ ମେ ମାସ ପର୍ଯ୍ୟନ୍ତ ବିଜାପୁରରେ ଅବସ୍ଥାନ କରୁଥିଲେ । ତେଣୁ ମେ ମାସରେ କାଠର ଜଗନ୍ନାଥ ପ୍ରତିମାକୁ ତାଙ୍କ ବିଜାପୁର ମୁକାମକୁ ପଠାଇଥିବା ମଧ୍ୟ ପ୍ରମାଣିତ ହୋଇଯାଉଛି । (History of Aurangzeb, Vol-V, P-6)

ଏହି ଆକ୍ରମଣ କାଳରେ ଦୁଇଟି ସ୍ମରଣୀୟ ଘଟଣା ଉଲ୍ଲେଖଯୋଗ୍ୟ ।

୧- ଜଣେ ମୁସଲମାନ ସେନାପତି ପ୍ରଥମଥର ପାଇଁ ସମଗ୍ର ହିନ୍ଦୁ ସମାଜର ପୂଜ୍ୟ ପ୍ରଭୁଙ୍କ ରତ୍ନସିଂହାସନ ଉପରକୁ ଉଠିଯାଇ ସଗର୍ବରେ ଠିଆ ହୋଇ ପାରିଥିଲେ ।

୨- ଏକଛତ୍ରବାଦୀ ଆକ୍ରମଣକାରୀ ଆଉରଙ୍ଗଜେବଙ୍କ ବିରୋଧରେ ଦିବ୍ୟସିଂହ ଦେବ 'ଅସ୍ତ୍ରଧାରଣ କରିବାକୁ ଅସମର୍ଥ ହୋଇ ଯେ ଜାତିର ଆରାଧ୍ୟ ଦେବତାଙ୍କ ପ୍ରତି ସମସ୍ତ

ଅପମାନ ସହ୍ୟ କରି ଯାଇଥିଲେ । ଯାହା ଫଳରେ ଜଗନ୍ନାଥ ମନ୍ଦିର ଧ୍ୱଂସମୁଖରୁ ରକ୍ଷା ପାଇ ଯାଇଥିଲା । ଯେଥିପାଇଁ ଦିବ୍ୟସିଂହ ଦେବଙ୍କ ସହିଷ୍ଣୁତା ହିଁ ମୁଖ୍ୟ ବିଷୟ ।

## ଶ୍ରୀକ୍ଷେତ୍ରର ଆକ୍ରମଣକାଳୀନ ଅବସ୍ଥା :

ଆକ୍ରମଣ ଫଳରେ ଏହି କ୍ଷେତ୍ରରେ ଯେଉଁ ଅଭାବନୀୟ ପରିସ୍ଥିତି ସୃଷ୍ଟି ହୋଇଥିଲା ସେ ବିଷୟ ଜାଣିଲେ ଯେତିକି ବିସ୍ମୟ ଭାବ ଜାତ ହୁଏ ସେତିକି ଦୁଃଖ ମଧ ଉତ୍ପନ୍ନ କରେ ।

ମାଦଳାପାଂଜି ମତରେ :

୧- ଏ ଦିନୁ ଚନ୍ଦନଯାତ୍ରା ନୋହିଲେ - ଅର୍ଥାତ୍ ଆକ୍ରମଣଜନିତ ଭୟାବହ ପରିସ୍ଥିତି ଦୃଷ୍ଟିରୁ ପ୍ରଭୁଙ୍କର ବୈଶାଖମାସ ଅକ୍ଷୟତୃତୀୟା ଠାରୁ ୨୧ ଦିନ ବ୍ୟାପୀ ଅନୁଷ୍ଠିତ ହେଉଥିବା ଚନ୍ଦନ ଯାତ୍ରା ବନ୍ଦ ହୋଇ ଯାଇଥିଲା । ଚନ୍ଦନ ଯାତ୍ରା ଏକ ଗ୍ରୀଷ୍ମକାଳୀନ ଯାତ୍ରା । ଦୁଃଖାଭିଭୂତ ଭକ୍ତସମାଜ ମଉଜ-ମଜଲିସ୍‌ରୁ ଦୂରରେ ରହିଥିଲେ ।

୨- ଏ ଦିନୁ ରୁକ୍ମିଣୀ ହରଣ ନୋହିଲେ- ଶ୍ରୀମନ୍ଦିରରେ ଜ୍ୟେଷ୍ଠମାସ ଶୁକ୍ଳ ଏକାଦଶୀ ତିଥିରେ ବୈଷ୍ଣବୀୟ ଉପାସନାର ଜଗନ୍ନାଥ ରୂପୀ ଶ୍ରୀକୃଷ୍ଣଙ୍କ ପାଇଁ 'ରୁକ୍ମିଣୀହରଣ' ନୀତି ହୋଇଥାଏ । ଦ୍ୱାଦଶୀ ତିଥିରେ ବିବାହ ଅନୁଷ୍ଠିତ ହୁଏ ତାହା ବନ୍ଦ ହୋଇଥିଲା ।

୩- ଏକାଦଶୀ ମହାଦୀପ ନୋହିଲେ- ଶ୍ରୀମନ୍ଦିର ଅଗ୍ରଭାଗ ଦଧିନଉତିକୁ ଯାଇ ପ୍ରତି ଏକାଦଶୀରେ ଏକ ମହାଦୀପ ପ୍ରଜ୍ୱଳନ କରାଯାଏ । ସେଠାରେ ଠାକୁରରାଜାଙ୍କ ପ୍ରଶସ୍ତି ସହ ଜଗତର ମଂଗଳ ପାଇଁ ନୀଳଚକ୍ର ନିକଟରେ ଦୀପ ଦିଆ ଯାଇଥାଏ । ତାହା ବନ୍ଦ ହୋଇ ଯାଇଥିଲା ।

୪- ବିଭାହାଦି ନୋହିଲେ - ବିବାହାଦି ଉତ୍ସବ ଶ୍ରୀମନ୍ଦିରରେ ବନ୍ଦ ହୋଇ ଯାଇଥିଲା ।

୫- ଋଷଭ ଦି୩୧ନ (୨୧ଦିନ ହେବ) ଭିତର ବେଢ଼ାରେ ଉତ୍ତରବାଢ଼େ ଜନମ ଚକଡ଼ାରେ କାଠ ସିଂଘାଂସନରେ ଦେବସ୍ରାହାନ ଯାତ୍ରା ହୋଇଲେ - ଅର୍ଥାତ୍ ଜ୍ୟେଷ୍ଠ ମାସ ପୂର୍ଣ୍ଣିମା (ଦେବସ୍ନାନ ପୂର୍ଣ୍ଣିମା)ରେ ଜଗନ୍ନାଥ ବଳଭଦ୍ର ସୁଭଦ୍ରା ଓ ସୁଦର୍ଶନ ଶ୍ରୀମନ୍ଦିର ଆନନ୍ଦବଜାର ମଧ୍ୟରେ ଥିବା ସ୍ନାନମଣ୍ଡପକୁ ଯିବାପରେ ଦେବସ୍ନାନ ଯାତ୍ରା ହୋଇଥାଏ । ସେ ବର୍ଷ ତାହା ନହୋଇ ରତ୍ନସିଂହାସନ ସାମନାରେ ଥିବା ଗୁମୁଟିର ଉତ୍ତର ପାର୍ଶ୍ୱରେ ଯେଉଁ କାଠସିଂହାସନ ଉପରେ ପ୍ରଭୁଙ୍କର ନବଯୌବନ ବେଶ ହୋଇଥାଏ ସେଇ ସିଂହାସନ ଉପରେ ପ୍ରଭୁଙ୍କର 'ଦେବସ୍ନାନ ଯାତ୍ରା' ସମାପନ ହୋଇଥିଲା । ପ୍ରଭୁ ବାହାର ବେଢ଼ାକୁ ମଧ ଆସିନଥିଲେ ।

୬- ଧୂପମାନଙ୍କରେ ଘଣ୍ଟା ନ ବାଜିଲା - ପ୍ରଭୁଙ୍କର ଭୋଗ ସମୟରେ ଘଣ୍ଟଘଣ୍ଟା ବଜା ନ ଯାଇ ନୀରବରେ ଭୋଗ ନୀତି ସମାପନ ହୋଇଥିଲା ।

୭- ଗୁଣ୍ଡିଚାଯାତ୍ରା ଭୋଗମଣ୍ଡପରେ ହୋଇଲେ - ଅର୍ଥାତ୍ ଆଷାଢ଼ ମାସରେ ବିଶ୍ୱପ୍ରସିଦ୍ଧ ରଥଯାତ୍ରା ବନ୍ଦ ହୋଇ ଯାଇଥିଲା । ଏହି ଯାତ୍ରାରେ ପ୍ରଭୁ ୩ଟି ରଥରେ ଶ୍ରୀମନ୍ଦିରରୁ ବାହାରକୁ ବାହାରି ନବଦିନଯାତ୍ରାରେ ଶ୍ରୀଗୁଣ୍ଡିଚା ମନ୍ଦିରକୁ ଯାଇଥାନ୍ତି । ତାହା ନ ହୋଇ ଗରୁଡ଼ଖମ୍ଭ ପଛପଟ ଭୋଗମଣ୍ଡପକୁ ପ୍ରଭୁଙ୍କ ବିଜେ କରାଯାଇ ଶ୍ରୀଗୁଣ୍ଡିଚା ଯାତ୍ରା ନୀତି ପାଳିତ ହୋଇଥିଲା ।

୮- ଶ୍ରୀମନ୍ଦିରରେ ମହାପ୍ରସାଦ ରନ୍ଧା ଏକାବେଳେକେ ବନ୍ଦ ହୋଇଗଲା (ଚକଡ଼ାପୋଥି)- ଫଳରେ ବିଭିନ୍ନ ପ୍ରାନ୍ତରୁ ଆସୁଥିବା ଯାତ୍ରୀମାନେ ଏଇସବୁ କାରଣରୁ ଶ୍ରୀକ୍ଷେତ୍ରକୁ ଆସିନଥିଲେ । ଶ୍ରୀକ୍ଷେତ୍ରରେ ଶ୍ମଶାନର ନୀରବତା ଆଚ୍ଛାଦିତ କରି ଯାଇଥିଲା ।

ଯେଥିରୁ ଆମେ ଜାଣିଲେ ଶ୍ରୀଜଗନ୍ନାଥଙ୍କ ନୀତି ବନ୍ଦ ହୋଇନଥିଲେ ମଧ୍ୟ ନିରାଡ଼ମ୍ବର ଭାବରେ ଖୁବ୍ ଗୋପନରେ ପାଳିତ ହୋଇଥିଲା । ଯାନିଯାତ୍ରା ସମ୍ପୂର୍ଣ୍ଣ ବନ୍ଦ ହୋଇ ଯାଇଥିଲା ।

**ଶ୍ରୀଜଗନ୍ନାଥଙ୍କ ସ୍ଥାନାନ୍ତର :**

ପୂର୍ବବର୍ଣ୍ଣିତ ସମସ୍ତ ଐତିହାସିକ ତଥ୍ୟକୁ ଆଧାର କରି ଆମେ ଯଦି ଆଲୋଚନା କରିବା ସେଥିରୁ ଜଣାପଡ଼ିବ ଯେ ଆକ୍ରମଣର ଆସନ୍ନତା ଦେଖି ରାତି ତିନି ପ୍ରହରରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ପହଣ୍ଡି କରି ବିମଳା ମନ୍ଦିର ପଛପଟେ ଲୁଚା ଯାଇଥିଲା । ଏବଂ ପ୍ରଭୁଙ୍କର ବିଜେ ପ୍ରତିମାମାନେ ବ୍ରହ୍ମଗିରିଠାରୁ ୧୫ କି.ମି. ଦୂର ଉତ୍ତର ଦିଗରେ ଥିବା ଗଡ଼କୋକଲକୁ ସ୍ଥାନାନ୍ତରିତ ହୋଇଥିଲେ ।

କିନ୍ତୁ ଦିବ୍ୟସିଂହ ଦେବଙ୍କ ପାତ୍ର ଜଗନ୍ନାଥ ବିଦ୍ୟାଧର ମହାପାତ୍ର (ଯାହାଙ୍କ ନାମ ଅନୁସାରେ ପୁରୀର ପଶ୍ଚିମ ଉତ୍ତର କୋଣରେ ଜଗନ୍ନାଥ ବିଦ୍ୟାଧରପୁର ଶାସନ ପିଳିପିଳା ଶାସନ ପ୍ରତିଷ୍ଠିତ ହୋଇଛି)ଙ୍କ ପୁତ୍ର କବି ଲୋକନାଥ ବିଦ୍ୟାଧରଙ୍କ କୃତ 'ସର୍ବାଙ୍ଗସୁନ୍ଦରୀ' କାବ୍ୟରୁ ଜଣାପଡୁଛି ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସେତେବେଳେ ବାଣପୁରକୁ ସ୍ଥାନାନ୍ତର କରା ଯାଇଥିଲା । ସେତେବେଳେ ବାଣପୁରର ରାଜା ଥିଲେ ଜଗନ୍ନାଥ ହରିଚନ୍ଦନ । ବାଣପୁରର ବଙ୍କାଡ଼ଗଡ଼ ନିକଟବର୍ତ୍ତୀ 'ନୀଳାଦ୍ରିପ୍ରସାଦ' ସ୍ଥାନରେ ଚତୁର୍ଦ୍ଧାମୂର୍ତ୍ତି ପୂଜିତ ହେଉଥିଲେ । ଯଥା -

ଯେଉଁ ଜଗନ୍ନାଥ ପଦ ଧ୍ୟାନେ
　　　　ଦେଖିନାହାଁନ୍ତି ଯୋଗୀନ୍ଦ୍ର ଜନ,
ଯେଉଁ ବାଣପୁର ନୃପ ପରସାଦେ
　　　　ଦେଖିଲେ ସକଳ ଜନ ହୋ ସୁଜନେ ।

ଶ୍ରୀଯୁକ୍ତ କେଦାରନାଥ ମାହାପାତ୍ରଙ୍କ ମତରେ କେତେଦିନ ବାଣପୁରଠାରେ ଚତୁର୍ଦ୍ଧାମୂର୍ତ୍ତି ରହିଥିଲେ ଜଣା ପଡୁନଥିଲେ ମଧ୍ୟ ୧୬୯୮ ଜୁନ୍ ମାସରେ ଏକରାମ ଖାଁ ସୁବାଦାର ପଦରୁ

ବିଦାୟ ନେବା ପରେ ୨୭-୮-୧୬୯୯ ମସିହା ସୁନିଆ ଦିନ ଦିବ୍ୟସିଂହ ଦେବଙ୍କ ୧୪ ଅଙ୍କ ଆରମ୍ଭ ପୂର୍ବରୁ ଚତୁର୍ଦ୍ଧାମୂର୍ତ୍ତି ଶ୍ରୀମନ୍ଦିରକୁ ଫେରି ଆସିଥିବେ ।

### ଶ୍ରୀଜଗନ୍ନାଥଙ୍କ ଶ୍ରୀକ୍ଷେତ୍ର ଆଗମନ :

୧୭୦୭ ମସିହା ଫେବୃୟାରୀ ୨୦ ତାରିଖରେ ଆଉରଙ୍ଗଜେବଙ୍କ ମୃତ୍ୟୁ ହେଲା । ତାଙ୍କ ମୃତ୍ୟୁପରେ ଦିବ୍ୟସିଂହ ଦେବ ଅଠର ଗଡ଼ଜାତ ରାଜାଙ୍କୁ ମେଳାଇ ମୋଗଲ ସେନାଙ୍କୁ ଓଡ଼ିଶାରୁ ତଡ଼ି ଦେଇଥିଲେ । ତାପରେ ପୁନଃ ଶ୍ରୀଜଗନ୍ନାଥଙ୍କର ଯାନିଯାତ୍ରା ପ୍ରଚଳିତ ହୋଇଥିଲା । ପାଂଜି ମତରେ -

''ଅ୨୪ଙ୍କେ ନବାବ ସୁଜା ଖାଁ ସଙ୍ଗେ ଗୋଳ କରି ଲାଢ଼ାଇ କଲେ । ଅ୨୫ଙ୍କେ କନ୍ୟା ଦି୧୦ନ କୃଷ୍ଣ ଏକାଦଶୀ ଗୁରୁବାର ଏ ମହାରାଜାଙ୍କ ଆଜ୍ଞାପ୍ରମାଣେ ଗ୧୮ଡ଼ ଖଣ୍ଡାଏତଙ୍କୁ ଘେନାଇ ଅରାରାମ ପିତାମହ (?) ଆସି ବଡ଼ଦେଉଳ ସିଂହଦ୍ୱାର ଫିଟାଇ ଦେଲା । ପଥରବାହି ମୁହଁ ଭାଙ୍ଗି ପକାଇଲା । ଏ ଦିନ ପୁରୁଷୋତ୍ତମ ବଲ୍ଲଭ ଅବକାଶ ବେଶ ବଢ଼ିଲା ଉତ୍ତାରୁ ପରମେଶ୍ୱରଙ୍କ ବାଡୁ ଆଜ୍ଞାମାନ ହୋଇଲେ । ଏ ଦିନ ସଞ୍ଜ ଧୂପରେ ଘଣ୍ଟ ବାଜିଲା । ବଡ଼ଦେଉଳ ଉପରେ ମହାଦୀପ ଜଳିଲା । ଏ ଅଙ୍କେ ଗୁଣ୍ଡିଚା ଯାତ୍ରା ହୋଇଲେ ।'' (ମା.ପା., ପୃ-୭୧)

ନିଷ୍କର୍ଷ - ଏଥିରୁ ଜଣାପଡୁଛି

(୧) ସୁଜାଖାଁ ହେଉଛନ୍ତି ୧୭୦୬ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ନାଏବନାଜିମ ସୁଜାଉଦ୍ଦିନ ମହମ୍ମଦ ଖାଁ । (History of Orissa Vol.-II, by R.D. Banerjee, P-71-72)

(୨) ସେ ଦିନ ଥିଲା କନ୍ୟା ଦି୧୦ନ ଆଶ୍ୱିନ କୃଷ୍ଣ ଏକାଦଶୀ । (An Indian Ephemeries, Vol-VI, P-217)

(୩) ଦିବ୍ୟସିଂହ ଦେବ ୧୮ ଗଡ଼ ରାଜାଙ୍କୁ ମିଳାଇ ମୋଗଲ ଅତ୍ୟାଚାର ବିରୋଧରେ ବିଦ୍ରୋହ କରିଥିଲେ ।

(୪) ଏକରାମ ଖାଁଙ୍କ ଅମଳରୁ ବନ୍ଦ ଥିବା ସିଂହଦ୍ୱାର ଖୋଲିଦେଲେ ।

(୫) ଆଉରଙ୍ଗଜେବଙ୍କ ଆଦେଶରେ ନିଷିଦ୍ଧ ହୋଇଥିବା ମହାପ୍ରଭୁଙ୍କ ରୀତିନୀତି ପୂଜାଦି ଯଥାବିଧି ପାଳିତ ହେଲା ।

(୬) ପୂଜା ସମୟରେ ଘଣ୍ଟଘଣ୍ଟା ବାଜିଲା ।

(୭) ପୂର୍ବପରି ଶ୍ରୀମନ୍ଦିରରେ ପ୍ରତି ଏକାଦଶୀ ଦିନ ମହାଦୀପ ମନ୍ଦିର ଉପରକୁ ଉଠିଲା ।

(୮) ଶ୍ରୀଜଗନ୍ନାଥଙ୍କ ଗୁଣ୍ଡିଚା ଯାତ୍ରା ପାଳିତ ହେଲା ।

(୯) ପାଂଜିରେ "ଅରାରାମ ପିତାମହ ୧୮ ଗଡ଼ ଖଣ୍ଡାଏତଙ୍କୁ ଘେନାଇ ବଡ଼ଦେଉଳ ସିଂହଦ୍ୱାର ଫିଟାଇଦେଲା....." ଇତ୍ୟାଦିର ଯେଉଁ ବର୍ଣ୍ଣନା ରହିଛି ସେ ସମ୍ବନ୍ଧରେ ଫକୀର ହରିଚନ୍ଦନ ଏକ ସୁନ୍ଦର ମତ ଦେଇଛନ୍ତି । ବାସ୍ତବରେ ଅରାରାମ ପିତାମହଙ୍କ ପରିଚୟ ଇତିହାସରୁ ମିଳୁନାହିଁ । ତେଣୁ ସେ କହନ୍ତି - ନରସିଂହ ଦେବଙ୍କ ହତ୍ୟା ଷଡ଼ଯନ୍ତ୍ରକାରୀର ନାମ 'ଅନିରୁଦ୍ଧ ରାୟପିତାମ୍' ସ୍ଥାନରେ ଯେପରି ଲିପିକାର ଦୋଷ ହେତୁ ଅନିରୁଦ୍ଧରାୟ ପିତାମହ ହୋଇଛି, ଏଠାରେ ସେହିପରି ଅରୀ ବା ଅରୀରାୟ ପିତାମ୍ ସ୍ଥାନରେ ଅରାରାମ ପିତାମହ ହୋଇଛି । ତାଙ୍କ ମତରେ ଅରୀରାୟ ପିତାମ୍ ନିଶ୍ଚିତଭାବରେ ଅନ୍ଧାରୀ ବା କୋକଲଗଡ଼ର ଖଣ୍ଡାଏତ ଏବଂ ସେ ଅନ୍ଧାରୀର ୮ ଗଡ଼ ସହ ପାଖାପାଖି ଖୋର୍ଦ୍ଧା ଇଲାକାର ଆଉ ୧୦ ଗଡ଼ର ଏପରି ୧୮ ଗଡ଼ର ଖଣ୍ଡାଏତଙ୍କୁ ନେଇ ବଡ଼ ଦେଉଳ ସିଂହଦ୍ୱାର ଫିଟାଇଥିବା ସମ୍ଭବପର । (ଖୋର୍ଦ୍ଧା ଇତିହାସର ଅନ୍ତରାଳେ, ପୃ-୧୦୭-୧୦୮)

ବାସ୍ତବରେ ଆଉରଙ୍ଗଜେବ୍ ଆଦେଶ ଦେଇଥିଲେ ବିଲଗ୍ରାମର ମିର୍ ସୟଦ୍ ଅହମ୍ମଦଙ୍କୁ ଜଗନ୍ନାଥ ମନ୍ଦିର ଭାଙ୍ଗି ବିଗ୍ରହମାନଙ୍କୁ ନଷ୍ଟ କରିଦେବାକୁ । ସଂଯୋଗକୁ ଏକରାମ ଖାଁ ଥିଲେ ସେତେବେଳେ ଓଡ଼ିଶାର ସୁବାଦାର । ଦିବ୍ୟସିଂହ-ଦେବ ରାଜା ହୋଇଥିଲେ ୧୬୯୩ ଖ୍ରୀ.ରୁ ୧୭୨୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ । ଦିବ୍ୟସିଂହ ଦେବ ରାଜା ହେବାର ୫ ବର୍ଷ ପରେ ଏକରାମ୍ ଖାଁ ଆଉରଙ୍ଗଜେବଙ୍କ ଆଦେଶକୁ କାର୍ଯ୍ୟକାରୀ କରିଥିଲା ।

ଏକରାମ ଖାଁର ଆକ୍ରମଣ ସମୟ ଚକଡ଼ାପୋଥି ଯାହା ପ୍ରଦତ୍ତ କରିଛନ୍ତି ଏବଂ ଡ଼ଃ ମହତାବ ତାକୁ ସମର୍ଥନ କଲାପରି ମନେ ହେଉଛି । ଡ଼ଃ ମହତାବଙ୍କ ମତରେ ଏହି ଘଟଣା ଘଟିଥିଲା ୧୬୯୭ ଖ୍ରୀଷ୍ଟାବ୍ଦ ମେ ମାସ ୧୭ ତାରିଖ ଦିନ । ସେତେବେଳକୁ ଦିବ୍ୟସିଂହ ଦେବ ଜଗନ୍ନାଥ ମନ୍ଦିର ତତ୍ତ୍ୱାବଧାରକ ଥିଲେ । ଦିବ୍ୟସିଂହ ଦେବ କାଷ୍ଠ ମୂର୍ତ୍ତିଙ୍କୁ ସୟଦ ମହମ୍ମଦଙ୍କୁ ସମର୍ପଣ କରିଥିଲେ (ମହତାବ) । ସେହି ମୂର୍ତ୍ତିମାନଙ୍କୁ ଆଉରଙ୍ଗଜେବଙ୍କ ରହଣିସ୍ଥଳ ବିଜାପୁରକୁ ପଠା ଯାଇଥିଲା ।

ଯେଥିରୁ ଜଣାପଡୁଛି ଏକରାମ ଖାଁ ସହିତ ମନ୍ଦିର ଲୁଣ୍ଠନ ବେଳେ ବିଲଗ୍ରାମର ମିର୍-ସୟଦ-ଅହମ୍ମଦ ମଧ୍ୟ ଥିଲେ । ଯାହାଙ୍କୁ କି ଆଉରଙ୍ଗଜେବ ଜଗନ୍ନାଥ ମନ୍ଦିର ଭାଙ୍ଗିଦେବାକୁ ଆଦେଶ ଦେଇଥିଲେ ।

କିନ୍ତୁ ମାଦଳାପାଂଜିକାର ଜଗନ୍ନାଥଙ୍କୁ ସ୍ଥାନାନ୍ତର କରା ଯାଇଥିବା କଥା ଲେଖିଥିବା ବେଳେ ଡ଼ଃ ମହତାବ ବିଗ୍ରହଙ୍କୁ ଅହମ୍ମଦଙ୍କୁ ହସ୍ତାନ୍ତର କରା ଯାଇଥିଲା ବୋଲି ଲେଖିଛନ୍ତି ।

ନବାବ ଏକରାମ ଖାଁଙ୍କ ବିଷୟ କଟକ ବାଲୁବଜାର ମସଜିଦ୍‌ରେ ଥିବା ଏକ ପାର୍‌ସି ଲେଖାରୁ ଜଣାଯାଏ । ଏଥିରେ ଲେଖାଅଛି ଯେ 'ଆଲମଗିର' (ଆଉରଙ୍ଗଜେବ)ଙ୍କ

ରାଜତ୍ୱରେ ନୈଷ୍ଠିକ ମୁସଲମାନ ଓଡ଼ିଶାର ନାଜିମ ନବାବ ଏକରାମ ଖାଁ ଖାଁନ୍-ଇ-ଖାନନ୍ ବାଲୁବଜାରରେ ଥିବା ମସଜିଦ୍ ୧୬୦୨ ହିଜିରା ସନରେ ସାହାଜାଦା ବେଗମ୍ (ଜେବୁନିସା)ଙ୍କ ନାମରେ ଉତ୍ସର୍ଗ କରିଥିଲେ । ତେଣୁ ଏପରି ବିଶ୍ୱସ୍ତ କର୍ମଚାରୀଙ୍କ ଉପରେ ଜଗନ୍ନାଥ ମନ୍ଦିର ଭାଙ୍ଗିବା ଭାର ଦିଆଗଲା । (ଉଦ୍ଧୃତ- ଖୁର୍ଦ୍ଧା ଇତିହାସ, ପୃ-୧୧୭) (Notices of some Parsian inscriptions in Orissa, O.H.R.J. Vol-VI, No.4, PP-285-286)

ଇତିହାସ କହେ ଆଉରଙ୍ଗଜେବଙ୍କର ଅନ୍ୟନାମ ଥିଲା 'ଆଲମଗିରି' । ଅର୍ଥାତ୍ ପୃଥ୍ୱୀବିଜେତା । ଇସ୍‌ଲାମ ଧର୍ମପ୍ରତି ତାଙ୍କର ଅନେକ ଶ୍ରଦ୍ଧା ଥିବାରୁ ମୁସଲମାନମାନେ ତାଙ୍କୁ 'ଆଲମ୍‌ଗିର' ଜିନ୍ଦାପୀର ବା ଜୀବିତସନ୍ଥ ବୋଲି ବିବେଚନା କରୁଥିଲେ ।

**ଆଉରଙ୍ଗଜେବଙ୍କ ଅଦେଶନାମା** (ମୁରକଦ-ଇ-ଅବଦୁଲହସନ୍, ପୃ-୨୦୨) :

ମେଦିନୀପୁରଠାରୁ କଟକ ଏବଂ ସୀମାନ୍ତବର୍ତ୍ତୀ ଅଞ୍ଚଳର ସମସ୍ତ ଥାନାର ଫୌଜଦାର ପ୍ରଶାସନିକ ଅଧିକାରୀ ଜାଗିରଦାରଙ୍କ ପ୍ରତିନିଧି କୋରରୀ ଏବଂ ଅମଲାମାନଙ୍କୁ ଅସଦଖାନ ଖଜଣା ପ୍ରଦାନକାରୀଙ୍କ ଦ୍ୱାରା ସମ୍ରାଟଙ୍କ ଆଦେଶ ଅନୁଯାୟୀ ନିର୍ଦ୍ଦେଶ ପ୍ରେରଣ କରାଗଲା ଯେ ମେଦିନୀପୁରର ତିଲକୁଟି ଗ୍ରାମରେ ଗୋଟିଏ ମନ୍ଦିର ନିର୍ମାଣ କରାଯାଇଅଛି । ଏଣୁ ସମ୍ରାଟ ବାହାଦୁରଙ୍କ ବଳବତ୍ତର ଆଦେଶ- ଏହାକୁ ଧ୍ୱଂସ କର । x x x x ଏବଂ କଟକ ସମେତ ସୀମାନ୍ତ ଅଞ୍ଚଳରେ ବିଧର୍ମୀମାନଙ୍କ ଦ୍ୱାରା ନିର୍ମିତ ମନ୍ଦିରଗୁଡ଼ିକୁ ଭଗ୍ନକର । ତେଣୁ ତୁମକୁ ଶୀଘ୍ରାତିଶୀଘ୍ର ଜଣାଇ ଦିଆଯାଉଛି ଯେ ଏହି ଆଦେଶନାମା ପ୍ରାପ୍ତିମାତ୍ରେ ଉପରୋକ୍ତ ମନ୍ଦିରଗୁଡ଼ିକୁ ଧ୍ୱଂସ କର । ଗତ ୧୦/୧୨ ବର୍ଷ ମଧ୍ୟରେ ମାଟି କିମ୍ବା ଇଟା ନିର୍ମିତ ମନ୍ଦିରସବୁ ବିଳମ୍ବ ନ କରି ଧ୍ୱଂସ କର । x x x x ବିଧ୍ୱଂସିତ ମନ୍ଦିରଗୁଡ଼ିକର ତାଲିକା ସବୁ କାଜିଙ୍କ ସ୍ୱାକ୍ଷର ଏବଂ ପବିତ୍ର ଶେଖଙ୍କ ଅନୁମୋଦନ ଲାଭ କରିବାପରେ ରାଜଦରବାରକୁ ଗୋଚରାର୍ଥେ ପ୍ରେରଣ କରିବ । (ଉଦ୍ଧୃତ- କୋରାନ ଓ କାଫିର, ପୃ-୧୪୨)

**ଉପସଂହାର :**

ଆଉରଙ୍ଗଜେବଙ୍କ ନିଷ୍ଠୁର ଆଦେଶନାମା ଆମକୁ ଜଣାଇଦେଉଛି କିପରି 'ଭୟାଭୟ ଆକ୍ରମଣ ପାଇଁ ଆଦେଶ ମିଳୁଥିଲା ସୁବାଦାରମାନଙ୍କୁ । ପୂର୍ବରୁ କହିଛୁ ନିଜର କ୍ଷମତା ଏବଂ ପ୍ରତିପତ୍ତି ବୃଦ୍ଧି କରିବା ପାଇଁ ମୋଗଲ ଶାସନର ଅଧସ୍ତନ କର୍ମଚାରୀମାନେ 'ଧ' କହିଲେ ବାନ୍ଧି ଆଣୁଥିଲେ । ତେଣୁ ଆକ୍ରମଣ କିପରି ହୋଇଥିବ ଅନୁମେୟ । ଆଶ୍ଚର୍ଯ୍ୟର କଥା ଶ୍ରୀମନ୍ଦିର ନଭାଙ୍ଗି ରହିଥିଲା କିପରି ? ଗଜପତିମାନେ କେତେ କଳ-ବଳ-କୌଶଳ ଦେଖାଇ କେତେବେଳେ ହାରିଛନ୍ତି, ନିଜ କନ୍ୟା, ଭଗ୍ନିମାନଙ୍କୁ ହରାଇବାକୁ ପଡ଼ିଛି ତ କେତେବେଳେ ହାତୀ, ଘୋଡ଼ା, ସୁନା-ରୂପା, ରତ୍ନ-ଅଳଙ୍କାର ନିଃଶଙ୍କୋଚରେ ଆକ୍ରମଣକାରୀଙ୍କ ଅଣ୍ଟିକି ଟେକି ଦେଇଛନ୍ତି । ଧନ ଯାଉ, ମାନ ଯାଉ କିପରି ପ୍ରଭୁ ମୋର ରକ୍ଷା ପାଇଯାନ୍ତୁ । ପ୍ରଭୁଙ୍କ

ଶ୍ରୀମନ୍ଦିର ଅକ୍ଷୁର୍ଣ୍ଣ ରହିଯାଉ । ଯେ ଜାତିର ପରିଚୟ ବଞ୍ଚିଯାଉ । ଭାରତ ଇତିହାସରେ ଏକ ଜାତିର ପରିଚୟକୁ ଜାହିର କରିବା ପାଇଁ ଜାତିର ଇଷ୍ଟ ଦେବତାଙ୍କ ପାଇଁ ସବୁକିଛି ତ୍ୟାଗ କରି ଦେଉଥିବା ରାଜାଙ୍କର ଇତିହାସ ବିରଳ । ଖୋର୍ଦ୍ଧାର ଗଜପତି ବଂଶ ଯେଥିରେ ଅନନ୍ୟ ।

ପ୍ରଭୁଙ୍କ 'ରତ୍ନସିଂହାସନ' ନାମ ହିଁ ଏକରାମ ଖାଁଙ୍କୁ ପାଗଳ କରିଛି । ଭାଇ ତାର ଖୋଜିଛି ସିଂହାସନ ଉପରକୁ ଉଠିଯାଇ ରତ୍ନ କାହିଁ । ପାଇନି, ଭେଟି ନେଇଛି ଚନ୍ଦନକାଷ୍ଠର ବିଗ୍ରହ । ଯାହାଙ୍କର ଚକ୍ଷୁ ଦୁଇଟି ନିର୍ମିତ ଦୁର୍ମୂଲ୍ୟ ରତ୍ନରେ । ସେତିକିରେ ଫେରି ଯାଇଥିବ କ'ଣ ସେ ? ପୁଣି ସାଙ୍ଗରେ ଅଛି ବିଲଗ୍ରାମର ମିର-ସୟଦ-ଅହମ୍ମଦ ? ପୂର୍ବରୁ ଜାଣିଲେ ଆମେ ଆକ୍ରମଣ ବେଳେ ଶ୍ରୀକ୍ଷେତ୍ରର ଦୟନୀୟ ଅବସ୍ଥା । ବର୍ଷ ବର୍ଷ ଧରି ଶ୍ରୀମନ୍ଦିରର ରୀତି-ନୀତି-ଉତ୍ସବ-ଯାତ୍ରାରେ ବ୍ୟତିକ୍ରମ । ତେବେ ଆକ୍ରମଣ କେଡ଼େ ଭୟଙ୍କର ହୋଇଥିବ ଅନୁମେୟ । ଯେଥିରେ ଭେଟି ନେଇଥିବା ବିଗ୍ରହଟି କଥା ସମସ୍ତେ ଜାଣିଲେ ଲୁଟିନେବା କଥା କିଏ କହିବ ? ରତ୍ନସିଂହାସନ ଉପରକୁ ଯିଏ ଉଠିପାରିଲେ ସେ ଯେ କେତେ ଦ୍ରବ୍ୟ ଲୁଟି ନେବାରେ ସକ୍ଷମ ହୋଇଥିବ, କିଏ କହିବ ? ଇତିହାସ ନୀରବ ।






## ମହମ୍ମଦ ତକି ଖାଁଙ୍କ ଶ୍ରୀମନ୍ଦିର ଆକ୍ରମଣ ଓ ଲୁଣ୍ଠନ

ସୁଜାଉଦ୍ଦିନ ମହମ୍ମଦ ଖାଁ ୧୭୨୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ସୁବାଦାର ହୋଇଥିଲେ । ଇତିହାସରେ ସେ ସୁଜା-ଉଦ୍-ଦୌଲା ଅସଦ୍-ଜଙ୍ଗ ନାମରେ ପରିଚିତ ଥିଲେ । ଏହା ଥିଲା ତାଙ୍କର ଏକ ଉପାଧି । ଏହି ଉପାଧି ବ୍ୟତୀତ ସେ ମୋତିମଦ୍-ଉଲମୁଲ୍କ ଉପାଧିରେ ମଧ୍ୟ ଭୂଷିତ ହୋଇଥିଲେ ।

ସେ ଥିଲେ ତୁର୍କ ବଂଶୋଦ୍ଭବ । ଯେମାନେ ପର୍ଶିଆର ଖୁରସାନ ପ୍ରଦେଶର ଆଦିମ ଜାତି । କିନ୍ତୁ ସୁଜାଉଦ୍ଦିନ୍‌ଙ୍କର ଜନ୍ମ ଦାକ୍ଷିଣାତ୍ୟର ବର୍‌ହାନପୁରଠାରେ । ହାଇଦରାବାଦ ଦିୱାନ ମୁର୍ଶିଦ୍ କୁଲି ଖାଁ (୧ମ)ଙ୍କର କନ୍ୟା 'ଜିନାତ୍-ଉନ-ନିଶା' ବେଗମ୍‌ଙ୍କୁ ବିବାହ କରିଥିଲେ । ଯାଙ୍କ ଗର୍ଭରୁ ଜନ୍ମ ହୋଇଥିଲେ ସରଫ୍‌ରାଜ ଖାଁ ।

ବଙ୍ଗଳାକୁ ମୁର୍ଶିଦ କୁଲି ଖାଁ ଯିବାପରେ ନିଜ ଜ୍ୱାଇଁଙ୍କୁ ବଙ୍ଗଳାରେ ରହି ଯେପରି ଓଡ଼ିଶା ଶାସନ କରିହେବ ସେଥିପାଇଁ ଓଡ଼ିଶାର ଡେପୁଟି ଭାବରେ ନିଯୁକ୍ତି ଦେଇଥିଲେ । ପରବର୍ତ୍ତୀ କାଳରେ ସୁଜାଉଦ୍ଦିନ୍ ଓଡ଼ିଶା ଓ ବଙ୍ଗଳାର ନବାବ ହେବାପରେ ସାନପୁଅ ତକି ଖାଁଙ୍କୁ ଓଡ଼ିଶାର ନାଏବ ନାଜିମ୍ ରୂପେ ନିଯୁକ୍ତି ଦେଇଥିଲେ ।

କିନ୍ତୁ ବିଳାସପ୍ରିୟ ସୁଜାଉଦ୍ଦିନ ବଙ୍ଗଳାର ମୁର୍ଶିଦାବାଦଠାରେ ରହିବା ଦ୍ୱାରା ଓଡ଼ିଶା ଶାସନ ପ୍ରତି ଦୃଷ୍ଟି ଦେଇ ପାରିନଥିଲେ । ଫଳରେ ମହମ୍ମଦ ତକି ଖାଁ ହେଲେ ଓଡ଼ିଶା ଶାସନକ୍ଷେତ୍ରରେ ସର୍ବେସର୍ବା । ତକି ଖାଁ ଥିଲେ ପ୍ରବଳ ହିନ୍ଦୁ ବିଦ୍ୱେଷୀ । ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ଖୋର୍ଦ୍ଧା ରାଜାଙ୍କୁ ବ୍ୟତିବ୍ୟସ୍ତ କରାଇ ଶ୍ରୀମନ୍ଦିର ଆକ୍ରମଣ କରିବା । ସେଥିପାଇଁ ଐତିହାସିକମାନେ ସ୍ୱୀକାର କରନ୍ତି ତକି ଖାଁଙ୍କର ବିଶେଷତ୍ୱ ହେଉଛି ଖୋର୍ଦ୍ଧାରାଜ୍ୟ ଉପରେ ଲଗାତାର ଆକ୍ରମଣ ।

### ଖୋର୍ଦ୍ଧା ଆକ୍ରମଣ :

୧୭୩୧ ଖ୍ରୀଷ୍ଟାବ୍ଦରେ ପ୍ରଥମକରି ତକି ଖାଁ ଖୋର୍ଦ୍ଧା ଆକ୍ରମଣ କରିଥିଲେ । ଏହି ଅଭିଯାନ ପିପିଲି ବାଟ ଦେଇ ନ କରି ଅର୍ଥାତ୍ ଗତାନୁଗତିକ ଅଭିଯାନ ନ କରି ଅତର୍କିତ ଥିଲା । ସେ ହଠାତ୍ ଆକ୍ରମଣ କରି ଧଉଳି ଦୁର୍ଗ ଏବଂ ଶିଶୁପାଳ ଦୁର୍ଗକୁ ଦଖଲ କରି ନେଇଥିଲେ । ଏହାପରେ ଦୟାନଦୀ ଅତିକ୍ରମ କରି ରଥୀପୁର ଦୁର୍ଗକୁ ଆକ୍ରମଣ କରିଥିଲେ । ଏହି ଦୁର୍ଗରେ ରାଜାଙ୍କ ବକ୍‌ସି ବେଣୁ ଭ୍ରମରବର ରାୟ ଓ ତାଙ୍କ ପୁତ୍ର ନୀଳାମ୍ବର ହରିଚନ୍ଦନଙ୍କ ଦ୍ୱାରା ସୁରକ୍ଷିତ ଥିଲା । ବିଧିର ବିଡ଼ମ୍ବନା ରଥୀପୁର ଦୁର୍ଗରେ ବିଶୃଙ୍ଖଳା ରହି ଆସିଥିବାରୁ ଯୁଦ୍ଧ କରିବାକୁ ବକ୍‌ସିଙ୍କର ସାହସ ନଥିଲା । ଫଳରେ ସହଜରେ ଦୁର୍ଗ ଅଧିକାର ହେଲା ।

ଖୋର୍ଦ୍ଧା ଆକ୍ରମଣ ପାଇଁ ଏହି ଦୁର୍ଗକୁ ତକି ଖାଁ ଏକ ପ୍ରଧାନ ଘାଟିରେ ପରିଣତ କରି ଦେଇଥିଲେ । ଖୋର୍ଦ୍ଧା ରାଜଧାନୀକୁ ପ୍ରବେଶ ପାଇଁ ଗଙ୍ଗପଡ଼ା ଗଡ଼ ପ୍ରବେଶ ପଥକୁ ସୈନ୍ୟ ପ୍ରେରଣ କଲେ । ଗୋଟିକ ପରେ ଗୋଟିଏ ଦୁର୍ଗ ପତନ ପରେ ରାଜା ଆତଙ୍କିତ ହୋଇପଡ଼ି ଶାନ୍ତି ପ୍ରସ୍ତାବ ଆଗତ କରାଇଥିଲେ । କିନ୍ତୁ ତକି ଖାଁ ଏହି ପ୍ରସ୍ତାବକୁ ସେତେବେଳେ ଗୁରୁତ୍ୱ ଦେଇ ନଥିଲେ ।

ପୂର୍ବରୁ ବକ୍‌ସି ବେଣୁ ଭ୍ରମରବର ରାୟ ଓ ଦିୱାନ ନୀଳାମ୍ବରଙ୍କ ମୁଣ୍ଡକାଟି ତକି ଖାଁ ତା୨୦-୧୨-୧୭୩୧ ରିଖରେ ନବାବଙ୍କ ନିକଟକୁ ପଠାଇଥିଲେ (ଖୃ.ଇ., ପୃ-୧୮୩) । ତେଣୁ ନିଜକୁ ସର୍ବଶକ୍ତିମାନ ମନେ କରି ଗଜପତିଙ୍କୁ ଗୁରୁତ୍ୱ ଦେଇ ନଥିଲେ ।

## ଖୋର୍ଦ୍ଧା ରାଜ୍ୟ ଉପରେ ଅବିଚ୍ଛିନ୍ନ ଆକ୍ରମଣର କାରଣ :

ତକି ଖାଁଙ୍କ ରାଜତ୍ୱରେ ଖୋର୍ଦ୍ଧାରାଜା ରାମଚନ୍ଦ୍ର ଦେବ (୨ୟ)ଙ୍କ ସହିତ ନିରବଚ୍ଛିନ୍ନ ସଂଗ୍ରାମ ଲାଗି ରହିଥିଲା । ଯଦିଓ ଯେ ତିକ୍ତ ସମ୍ପର୍କ ସୃଷ୍ଟିର କାରଣ ଐତିହାସିକମାନେ ଆଜି ସୁଦ୍ଧା ନିର୍ଣ୍ଣୟ କରିପାରି ନାହାଁନ୍ତି ତଥାପି କେତୋଟି ସମ୍ଭାବନା ମାତ୍ର କରିଛନ୍ତି । ଡ଼ଃ ଭବାନୀ ରାୟଙ୍କ ମତରେ -

(୧) ରାଜାଙ୍କର ତକି ଖାଁ ପ୍ରତି ଅବାଧ ଆଚରଣ ଏବଂ ଓଡ଼ିଶାରେ ନିଜକୁ ସ୍ୱାଧୀନ ରାଜା ରୂପେ ପ୍ରତିଷ୍ଠିତ କରିବାର ମନୋବୃତ୍ତି ।

(୨) ଏହା ବି ହୋଇପାରେ ଓଡ଼ିଶାରେ ଆଉରଙ୍ଗଜେବଙ୍କ ରାଜତ୍ୱ କାଳରେ ଖୋର୍ଦ୍ଧା ରାଜାଙ୍କ ଆଉରଙ୍ଗଜେବଙ୍କ ପ୍ରତି ଅବଜ୍ଞା, ମୋଗଲ ସରକାରଙ୍କ ସଙ୍ଗେ ସଂଘର୍ଷ ଏବଂ ମୋଗଲ ବିରୋଧୀ କାର୍ଯ୍ୟ ତକି ଖାଁଙ୍କ ମନରେ ଥିବ ।

(୩) ମୁର୍ଶିଦ କୁଲି ଖାଁ (୧ମ)ଙ୍କ ଦ୍ୱାରା ଅନୁସୃତ ଅପେକ୍ଷାକୃତ ଉଦାର ଶାସନ ନୀତି ଖୋର୍ଦ୍ଧା ରାଜାଙ୍କୁ ପୂର୍ବ ସମ୍ମାନ ଏବଂ ସ୍ୱାଧୀନତା ଫେରି ପାଇବା ପାଇଁ ସୁବର୍ଣ୍ଣ ସୁଯୋଗ ଦେଇଥିବ ।

ଏହା ତକି ଖାଁଙ୍କୁ ଅସହ୍ୟ ହୋଇଥିବ ।

## ବିଶ୍ୱାସଘାତକତା :

ରାମଚନ୍ଦ୍ର ଦେବ ଖୁବ୍ ଦୂରଦୃଷ୍ଟି ସମ୍ପନ୍ନ ଗଜପତି ଥିଲେ । ଶ୍ରୀମନ୍ଦିର ଏବଂ ଜନସାଧାରଣଙ୍କୁ ସମ୍ଭାବ୍ୟ ବିପଦରୁ ରକ୍ଷା କରିବା ପାଇଁ ସେ ତା୩-୧-୧୭୩୨ ରିଖରେ ନିଜେ ତକି ଖାଁଙ୍କୁ ଭେଟିଥିଲେ । କିନ୍ତୁ ଧର୍ମାନ୍ଧ ବେଇମାନ୍ ତକି ଖାଁ ବିଶ୍ୱାସଘାତକତା କଲା । ଗଜପତି, ଦିୱାନ ଓ ବକ୍‌ସିଙ୍କୁ ଅଟକ ରଖିଲା । ଅଟକ ରଖିବାର ପରଦିନ ରାମଚନ୍ଦ୍ର ଦେବଙ୍କ ପୁତ୍ର କୃଷ୍ଣରାୟ ଜେନା ବିଦ୍ରୋହୀ ହୋଇ ଉଠିଲେ । 'ନାଉସିଂହ ଗଡ଼'ରେ ରହି ମନ୍ତ୍ରଣା ଜାରି ରଖିଲେ । ଏହା ମଧ୍ୟରେ ଖୁରୁଧା ଗଡ଼ ତକି ଖାଁ ଦ୍ୱାରା ଅଧିକୃତ ହେଲା । ତକି ଖାଁ

ତା-୨୮-୩-୧୭୩୨ ରିଖରେ ଯୁବରାଜ କୃଷ୍ଣରାୟ ଜେନାଙ୍କୁ ପରାଜିତ କରିବା ପାଇଁ 'ନାଉସିଂହ ଗଡ଼'କୁ ଯୁଦ୍ଧଯାତ୍ରା କଲେ । ସେତେବେଳକୁ ଯୁବରାଜ କୋଦଳା ଆଠଗଡ଼ ରାଜ୍ୟର ରାଜଧାନୀକୁ କୌଶଳରେ ବିଦ୍ରୋହୀମାନଙ୍କୁ ନେଇ ସ୍ଥାନାନ୍ତରିତ ହୋଇ ଯାଇଥିଲେ । ତକି ଖାଁ ବିଫଳ ହୋଇ ବାଣପୁର ପର୍ଯ୍ୟନ୍ତ ଅଧିକାର କରି ଯାଇଥିଲା । ବାଧ ହୋଇ ସେଠାରୁ ଫେରିଲା । କ୍ରୋଧରେ ରାମଚନ୍ଦ୍ର ଦେବଙ୍କୁ ରଥିପୁର ଗଡ଼ଦୁର୍ଗରୁ ନେଇ ବାରବାଟୀ ଦୁର୍ଗରେ ବନ୍ଦୀ କରି ରଖିଲା । ସେ ଦିନଟି ହେଉଛି ତା ୨୩-୫-୧୭୩୨ ରିଖ ।

## ମୋଗଲ ସେନାଙ୍କ ପରାଜୟ :

ଏହାପରେ ରାମଚନ୍ଦ୍ର ଦେବଙ୍କ ଅନ୍ୟତମ ପୁତ୍ର ଆଟରାଜା ଭାଗୀରଥି କୁମାର ଆଠଗଡ଼ ରାଜାଙ୍କଠାରୁ ସୈନ୍ୟସାହାଯ୍ୟ ଆଣି ପୁରୀ ଓ ଖୋର୍ଦ୍ଧାରୁ ମୋଗଲ ସୈନ୍ୟମାନଙ୍କୁ ତଡ଼ିଦେବାରେ ସକ୍ଷମ ହୋଇଥିଲେ । ଯେ ଖବର ତକି ଖାଁ ପାଖରେ ପହଞ୍ଚିବାରୁ ସେ ୧୭୩୨ ମସିହା ନଭେମ୍ବର ମାସରେ ବିଶାଳ ସୈନ୍ୟବାହିନୀ ସଙ୍ଗରେ ଆଣି ଆକ୍ରମଣ ପାଇଁ ପହଞ୍ଚିଲେ । କିନ୍ତୁ ସଂଗରେ ବନ୍ଦୀ ଗଜପତି ରାମଚନ୍ଦ୍ର ଦେବଙ୍କୁ ମଧ ଆଣିଥିଲେ । ଯୁଦ୍ଧଭୂମିରେ ରାମଚନ୍ଦ୍ର ଦେବଙ୍କ ଉପସ୍ଥିତି ଏକ ଅକଡ଼ିଆ ପରିସ୍ଥିତି ସୃଷ୍ଟି କଲା । ତକି ଖାଁର କୂଟନୀତି ସଫଳ ହେଲା । ଯୁବରାଜ ପରାସ୍ତ ହୋଇ ଦଶପଲ୍ଲା ରାଜ୍ୟକୁ ପଳାଇଗଲେ । ରାମଚନ୍ଦ୍ର ଦେବ ଖୋର୍ଦ୍ଧାଗଡ଼ରେ ନଜରବନ୍ଦୀ ହେଲେ । ଖୋର୍ଦ୍ଧା ସମସ୍ୟା ତକି ଖାଁଙ୍କ ସମ୍ମୁଖରେ ମୁଖ୍ୟ ସମସ୍ୟା ହୋଇ ଠିଆ ହେଲା । ସମାଧାନ ଯେତେ ସହଜ ନଥିଲା । ବାରମ୍ବାର ଖୋର୍ଦ୍ଧା ଆକ୍ରମଣ କରି ଲୁଣ୍ଠନ ଅତ୍ୟାଚାର କରି ମଧ ଖୋର୍ଦ୍ଧାରେ ଶାସନ ପ୍ରତିଷ୍ଠା କରିବା ସମ୍ଭବପର ହେଉ ନଥାଏ । ଖୋର୍ଦ୍ଧା ରାଜ୍ୟର ସମସ୍ତ ଦୁର୍ଗକୁ ଧୂଳିସାତ୍ କରି ଶାରୀରିକ, ଆର୍ଥିକ ଏବଂ ମାନସିକ ଅତ୍ୟାଚାର କରି ନଗରଠାରୁ ଗ୍ରାମ ପର୍ଯ୍ୟନ୍ତ ଲୁଣ୍ଠନ କରି ମଧ ଶାସନ ପ୍ରତିଷ୍ଠା କରିବା ସମ୍ଭବପର ହେଉନାହିଁ ! ଏୟା ହିଁ ତାଙ୍କୁ ବିଚଳିତ କଲା । ରାଜପୁତ୍ରଙ୍କର ପଡ଼ୋଶୀ ରାଜ୍ୟକୁ ପଳାୟନ ପୁନଃ ତକି ଖାଁଙ୍କୁ ବିରୋଧ କରିବାର ପୂର୍ବାଭାସ ବୋଲି ତାଙ୍କର ପ୍ରତ୍ୟୟ ହେଲା । ଯେପରି ପରିସ୍ଥିତିରେ କାହାରିକୁ ବିଶ୍ୱାସକୁ ନେଇ ନପାରି ଶେଷରେ ଅନନ୍ୟ ଉପାୟ ନ ପାଇ ରାମଚନ୍ଦ୍ର ଦେବଙ୍କ ଶାନ୍ତି ପ୍ରସ୍ତାବକୁ ସ୍ମରଣ କରିବାକୁ ବାଧ୍ୟ ହେଲେ । ରାମଚନ୍ଦ୍ର ଦେବଙ୍କୁ ମୁକ୍ତ କରି ଖୋର୍ଦ୍ଧା ସିଂହାସନରେ ପୁନଃ ଅଧିଷ୍ଠିତ କରାଇବାକୁ ବାଧ ହେଲେ ।

କିନ୍ତୁ ରାଜା ତାଙ୍କର ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ ନ କରି ଶ୍ରୀଜଗନ୍ନାଥଙ୍କ ଗୁଣ୍ଡିଚା ଯାତ୍ରାରେ ଯୋଗଦେବା ପାଇଁ ପୁରୀ ଚାଲିଯାଇ ଥିବାରୁ ନିଜକୁ ଅପମାନିତ ମନେ କରି ତକି ଖାଁ ପୁଣି ଖୋର୍ଦ୍ଧା ଅଭିଯାନ କଲେ । ରାଜା ସେଠାରୁ ଖସି ନୟାଗଡ଼ ପରେ ଖଣ୍ଡପଡ଼ା ଏବଂ ବୋଲଗଡ଼ ପଳାଇ ଯାଇଥିଲେ ।

ଶେଷକୁ ଖୋର୍ଦ୍ଧା ରାଜ ପରିବାରରେ ଭେଦନୀତି ପୁରାଇ ଭାଗୀରଥି କୁମାରଙ୍କୁ ନିଜପକ୍ଷକୁ ଆଣି ଖୋର୍ଦ୍ଧାର ରାଜା ଘୋଷଣା କଲେ । ମାତ୍ର ସେ ଦୀର୍ଘଦିନ ଶାସନ କରିପାରିଲେ

ନାହିଁ । ଏପରି ଭାବେ ସେ ରାଜା ହୋଇଥିବାରୁ ଲୋକପ୍ରିୟତା ହରାଇଥିଲେ । ପୁନଃ ରାଜା ଏଇ ସୁଯୋଗରେ ବୋଲଗଡ଼ରୁ ଆସି ଖୋର୍ଦ୍ଧାର ରାଜା ହେଲେ । ଭାଗୀରଥି କୁମାର ପିତାଙ୍କର ଲୋକପ୍ରିୟତାରେ ନିଷ୍ପ୍ରଭ ହୋଇପଡ଼ି ମୁସଲମାନ ସୈନ୍ୟମାନଙ୍କ ସହିତ କଟକ ପଳାଇଗଲେ ।

ପୁନଃ ତକି ଖାଁ ମୁର୍ଶିଦାବାଦରୁ ଫେରି ଖୋର୍ଦ୍ଧା ଆକ୍ରମଣ କରିଥିଲେ । ୧୭୩୪ ଖ୍ରୀଷ୍ଟାବ୍ଦରେ କଟକଠାରେ ତକି ଖାଁ ପ୍ରାଣତ୍ୟାଗ କରିଥିଲେ । କେଦାରନାଥ ମାହାପାତ୍ରଙ୍କ ମତରେ ୧୭୩୪ ମସିହା ମଇ ମାସରୁ ୧୭୩୫ ମସିହା ମଇ ମାସ ମଧ୍ୟରେ ତକି ଖାଁ ପ୍ରାଣତ୍ୟାଗ କରିଥିଲେ । କଟକର କଦମ-ଇ-ରସୁଲ ହତା ମଧ୍ୟରେ ତାଙ୍କୁ କବର ଦିଆଯାଇ ଥିଲା ।

୧୭୩୧ ଖ୍ରୀ.ରୁ ୧୭୩୩ ଖ୍ରୀ. ପର୍ଯ୍ୟନ୍ତ ତିନିବର୍ଷ ଧରି ଖୋର୍ଦ୍ଧା ରାଜା ଓ ତକି ଖାଁଙ୍କ ମଧ୍ୟରେ ନିରବଚ୍ଛିନ୍ନ ଯୁଦ୍ଧ ଚାଲିବା ଫଳରେ ପୁରୀରେ ତାହାର ପ୍ରଭାବ ଅନୁଭୂତ ହୋଇଥିଲା । ସେବା ପୂଜାରେ ଘୋର ବିଶୃଙ୍ଖଳା ସୃଷ୍ଟି ହେବା ସହିତ ମହାପ୍ରଭୁଙ୍କୁ ବାରମ୍ବାର ସ୍ଥାନାନ୍ତର କରିବାକୁ ପଡ଼ିଥିଲା । ପ୍ରଥମେ ପୁରୀର ଉତ୍ତରପଶ୍ଚିମ କୋଣରେ ଥିବା ଭାର୍ଗବୀ ନଦୀକୂଳରେ ଦୋବନ୍ଧା ପେଣ୍ଠରୁ ନୌକାରେ ମହାପ୍ରଭୁଙ୍କୁ ବାଣପୁର ନିଆ ଯାଇଥିଲା ।

ଜଗନ୍ନାଥଙ୍କ ସ୍ଥାନାନ୍ତକରଣ ଜାଣି ୧୭୩୩ରେ ତକି ଖାଁ ଆକ୍ରମଣ କଲେ । ରାମଚନ୍ଦ୍ର ଦେବ ଖୋର୍ଦ୍ଧାରୁ ପଳାଇଯାଇ ଜଗନ୍ନାଥଙ୍କୁ ଖଲିକୋଟ ସୀମା ଟିକିଲିଠାରେ ରଖାଇଥିଲେ । ଏହା ମହାପ୍ରଭୁଙ୍କର ଦ୍ୱିତୀୟ ଥର ଅପସାରଣ ତକି ଖାଁ ଅମଳରେ ।

ଏଣେ ତକି ଖାଁ ଭାଗୀରଥି କୁମାରଙ୍କୁ ଖୋର୍ଦ୍ଧାର ରାଜା କରି କଟକ ଫେରିଗଲେ । ମାତ୍ର ରାମଚନ୍ଦ୍ର ଦେବ ବୋଲଗଡ଼କୁ ଫେରି ଖୋର୍ଦ୍ଧା ଅଧିକାର କରିବାରୁ ତାଙ୍କ ପୁଅ ଭାଗୀରଥି ମୋଗଲ ଫୌଜ ନେଇ କଟକ ପଳାଇଲେ । ରାମଚନ୍ଦ୍ର ଦେବ ଟିକିଲିଠାରୁ ଜଗନ୍ନାଥଙ୍କୁ ଆଣି ୨-୭-୧୭୩୩ରେ ଗୁଣ୍ଡିଚା ଯାତ୍ରା କରିଥିଲେ ।

ସୁଜାଉଦ୍ଦିନଙ୍କ ରାଜତ୍ୱ କାଳରେ ମହମ୍ମଦ ତକି ଖାଁଙ୍କ ଦ୍ୱାରା ଓଡ଼ିଶା ସୁବାରୁ ୧୧ କୋଟି ୩୧ ଲକ୍ଷ ୪୦ ହଜାର ୩ଶହ ୩୮ ଟଙ୍କା ୧୪ ଅଣା ୮ ପାହି ଖଜଣା ଅସୁଲ ହୋଇଥିଲା । ଯେଥିରୁ ଦିଲ୍ଲୀକୁ ପଠା ଯାଇଥିଲା ୧୧,୧୧,୮୫,୧୪୫,୮ଅଣା.୯ ପାହି । ଲୁଣ୍ଠିତ ଦ୍ରବ୍ୟର ବିବରଣୀ ଜଣା ପଡୁନାହିଁ । କିନ୍ତୁ ରାମଚନ୍ଦ୍ର ଦେବ ବାରବାଟୀ ଦୁର୍ଗରେ ବନ୍ଦୀ ଥିବାବେଳେ ଶ୍ରୀମନ୍ଦିର ସମ୍ପୂର୍ଣ୍ଣ ମୋଗଲମାନଙ୍କ ଅଧୀନରେ ଥିଲା । ପ୍ରଭୁ ସ୍ଥାନାନ୍ତରିତ ହୋଇ ଯାଇଥିଲେ । ମନ୍ଦିରର ରୀତିନୀତି ବନ୍ଦ ଥିଲା । ମୋଗଲ ସୈନ୍ୟଙ୍କ ସ୍ୱେଚ୍ଛାଚାରରେ ସେବକ ସମ୍ପ୍ରଦାୟ ଅତିଷ୍ଠ ହୋଇ ପଡ଼ିଲେ । ଶ୍ରୀମନ୍ଦିରରୁ ସମସ୍ତ ମୂଲ୍ୟବାନ ଦ୍ରବ୍ୟ ମୋଗଲ ସୈନ୍ୟ ଲୁଟିନେଇ ତକି ଖାଁ ପାଖକୁ ପଠାଇଦେବା ସହ ସାଧାରଣ ସ୍ଥାନରୁ ମଧ୍ୟ ମାଡ଼ପିଟ୍ କରି ଲୁଣ୍ଠନ କରିଥିଲେ । ଏହା ଦୀର୍ଘଦିନ ଧରି ଚାଲିଥିଲା । ଯେତେବେଳେ ଭାଗୀରଥି କୁମାର ଆଠଗଡ଼ ରାଜାଙ୍କଠାରୁ ସୈନ୍ୟ ଆଣି ପୁରୀରୁ ମୋଗଲ ସୈନ୍ୟଙ୍କୁ ତଡ଼ି ଦେଇଥିଲେ ସେତେବେଳେ

ଯାଇ ଶ୍ରୀମନ୍ଦିର ମୋଗଲ ସେନାଙ୍କଠାରୁ ମୁକ୍ତ ହୋଇଥିଲା । ମାତ୍ର ମୋଗଲ ସେନାମାନେ ଶ୍ରୀମନ୍ଦିରରେ ଥିବା ବେଳେ ତାଙ୍କ ଭୟରେ କେହି ମନ୍ଦିରକୁ ଯାଉ ନଥିବାରୁ ଲୁଣ୍ଠିତ ଧନରାଶିର ସବିଶେଷ ତାଲିକା ଜାଣିବା ସମ୍ଭବ ନଥିଲା । ଆଜି ମଧ୍ୟ ଏହା ଗବେଷଣାକୁ ଅପେକ୍ଷା ରଖିଛି ।

**ଉପସଂହାର :**

ରାମଚନ୍ଦ୍ର ଦେବ ଥିଲେ ଭୋଇ ରାଜବଂଶର ୯ମ ରାଜା । ସେ ଦ୍ୱିତୀୟ ରାମଚନ୍ଦ୍ର ଦେବ ନାମରେ ଓଡ଼ିଶା ଇତିହାସରେ ପ୍ରସିଦ୍ଧ । ତାଙ୍କର ରାଜତ୍ୱକାଳ ୧୭୨୭ ଖ୍ରୀଷ୍ଟାବ୍ଦରୁ ୧୭୩୬ ଖ୍ରୀଷ୍ଟାବ୍ଦ । ତାଙ୍କର ଦୁଇଜଣ ରାଣୀ ଥିଲେ । କଳାବତୀ ଓ ଲଳିତା । ମାଦଳାପାଂଜିରୁ ଜଣାପଡୁଛି ସେ କଟକରେ ଥିବାବେଳେ ନବାବଙ୍କ ଝିଅ ପ୍ରେମରେ ପଡ଼ିଥିଲେ । ବାସ୍ତବରେ ମୁର୍ଶିଦ କୁଲି ଖାଁଙ୍କ କନ୍ୟା 'ସୌରିୟା'ଙ୍କ ସହ ଅବାଧ ମିଳନର ସୁଯୋଗ ଦେଇ ଗଜପତିଙ୍କୁ ମୁସଲମାନ ଧର୍ମରେ ଦୀକ୍ଷିତ କରାଇବା ପାଇଁ ଚେଷ୍ଟା ହୋଇଥିବ । କିନ୍ତୁ ସେ ଇସଲାମ୍ ଧର୍ମ ଗ୍ରହଣ କରିଥିବାର କୌଣସି ପ୍ରମାଣ ନାହିଁ । ପରନ୍ତୁ ୧୭୩୩ ଖ୍ରୀ. ରେ ସେ କଟକରୁ ମୁକ୍ତିଲାଭ କରି ଜୀବନର ଶେଷ ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥଙ୍କ ସୁରକ୍ଷା ପାଇଁ ଯେପରି ଅଶେଷ ନିର୍ଯ୍ୟାତନା ଭୋଗ କରିଥିଲେ ତାହା ତାଙ୍କର ପ୍ରଗାଢ଼ ଧର୍ମନିଷ୍ଠାର ପରିଚାୟକ । କିନ୍ତୁ ରକ୍ଷଣଶୀଳ ହିନ୍ଦୁମାନେ ତାଙ୍କୁ ଘୃଣା କରିବାରୁ ସେ ଶ୍ରୀମନ୍ଦିର ଭିତରେ ପ୍ରବେଶ ନ କରି ସିଂହଦ୍ୱାରରେ 'ପତିତପାବନ'ଙ୍କୁ ଦର୍ଶନ କରି ନିଜ ଅଭିଳାଷ ପୂରଣ କରିଥିଲେ ।

ମୋଗଲ ଶାସକମାନଙ୍କୁ ବିରୋଧ କରିବାରୁ ଗଜପତିଙ୍କୁ ଶେଷ ଜୀବନରେ ସିଂହାସନ ହରାଇବାକୁ ପଡ଼ିଥିଲା । ଓଡ଼ିଶାରେ ମୋଗଲ ଶାସନ ପକ୍ଷରେ ପ୍ରଧାନ କଣ୍ଟକ ଏବଂ ହିନ୍ଦୁଧର୍ମର ପ୍ରଧାନ ରକ୍ଷକ ଖୁରୁଧା ରାଜବଂଶକୁ ନିର୍ମୂଳ କରିବା ପାଇଁ ମୁର୍ଶିଦ କୁଲି ଖାଁର ଚତୁର ମନ୍ତ୍ରୀ ମୀର ହବିବ୍ ଏହି ପନ୍ଥା ଅବଲମ୍ବନ କରିଥିଲେ । ପରିଣାମରେ ରାଜ୍ୟଭ୍ରଷ୍ଟ ରାମଚନ୍ଦ୍ର ଦେବ ସ୍ୱୀୟ ସାମନ୍ତ ନରସିଂହପୁର ରାଜାଙ୍କ ନିକଟରେ ଆଶ୍ରୟ ନେଇଥିବା ସମୟରେ ପ୍ରାଣତ୍ୟାଗ କରିଥିଲେ । (ପୃ- ୧୮୮-୧୮୯)



# ସହାୟକ ଗ୍ରନ୍ଥସୂଚୀ

## ସଂସ୍କୃତ-ଓଡ଼ିଆ ଏବଂ ହିନ୍ଦୀ ଗ୍ରନ୍ଥ


ଆଉରଙ୍ଗଜେବ - ଅଧ୍ୟାପକ ବିଜୟ କୁମାର ମହାପାତ୍ର, ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର ।

ଇନ୍ତଖାବ-ଏ-ଜହାଙ୍ଗୀରଶାହୀ - (ହିନ୍ଦି ଅନୁବାଦ)

ଉତ୍କଳ ଇତିହାସ - କୃପାସିନ୍ଧୁ ମିଶ୍ର

ଉତ୍କଳ ସାହିତ୍ୟ-୧୯୨୧ (ଉଦ୍ଧୃତ)

ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ - ଚକ୍ରଧର ମହାପାତ୍ର

ଓଡ୍ରଦେଶ ରାଜବଂଶାବଳୀ - ସଂପାଦନା ଡ଼ଃ କାହ୍ନୁଚରଣ ମିଶ୍ର, ୧୯୮୩

ଓଡ଼ିଶାର ସାଂସ୍କୃତିକ ଇତିହାସ - ଡ଼ଃ ସତ୍ୟନାରାୟଣ ରାଜଗୁରୁ

ଓଡ଼ିଶା ଇତିହାସ (୨ୟ ଭାଗ) - ଡ଼ଃ ଯଜ୍ଞକୁମାର ସାହୁ, ନାଳନ୍ଦା, କଟକ-୧୯୮୮

ଓଡ଼ିଶା ଇତିହାସ - ଡ଼ଃ ହରେକୃଷ୍ଣ ମହତାବ

ଓଡ଼ିଶାର କିମ୍ବଦନ୍ତୀ - ଡ଼ଃ ପ୍ରସନ୍ନ କୁମାର ମିଶ୍ର

ଓଡ଼ିଶାର ଇତିହାସ (୧ମ ଭାଗ) - ଡ଼ଃ ସତ୍ୟନାରାୟଣ ରାଜଗୁରୁ

କୋରାନ ଓ କାଫିର (ଅନୁବାଦ) - ଶ୍ରୀ ଗୌରୀଶଙ୍କର ରାୟ, ବାଲେଶ୍ୱର

ଖଣ୍ଡପଡ଼ା ଇତିହାସ - ଉଦୟନାଥ ଦାସ, ୧୯୮୪

ଖଣ୍ଡପଡ଼ା ଇତିହାସ ଓ ପ୍ରଜାମଣ୍ଡଳ ଆନ୍ଦୋଳନ - ସ୍ୱାଧୀନତା ସଂଗ୍ରାମୀ ସମିତି, ଖଣ୍ଡପଡ଼ା, ୧୯୯୦

ଜଗତ ଦର୍ଶନରେ ଜଗନ୍ନାଥ - ଶ୍ରୀ ଗୁରୁଚରଣ ପଟ୍ଟନାୟକ

ତବାକତ ନାସରି - ଲେ-ମହାସିରାଜ ମୀନାହାସ ସିରାଜ

ତାରୀଖେ-ଫିରୋଜ ଶାହୀ - ହିନ୍ଦୀ ସାହିତ୍ୟ ସଦନ, ନୂଆଦିଲ୍ଲୀ ଲେଖକ- ଶମ୍‌ସେ ଶୀରାଜ ଅଫୀଫ

ଧଉଳିର ଇତିହାସ - ଶ୍ରୀ କେଦାରନାଥ ମହାପାତ୍ର

ଖୁରୁଧା ଇତିହାସ - ଶ୍ରୀ କେଦାରନାଥ ମହାପାତ୍ର, ୧ମ ସଂସ୍କରଣ-୧୯୬୯

ଦକ୍ଷିଣ କୋସଲ କ୍ଷେତ୍ର କା ଭୌଗଲିକ ଇତିହାସ - ଲକ୍ଷ୍ମୀଶଙ୍କର ନିଗମ

ଦକ୍ଷିଣ କୋସଲ କେ କଲଚୁରି - ଦିଲ୍ଲୀ

ଚକଡ଼ାପୋଥି - ପ୍ରଥମ ମୁଦ୍ରଣ-୧୯୫୯, ଶ୍ରୀ ସୁଧାକର ପଟ୍ଟନାୟକଙ୍କ ମୁଦ୍ରିତ

ଖୋର୍ଦ୍ଧା ଇତିହାସର ଅନ୍ତରାଳେ - ଶ୍ରୀ ଫକୀର ହରିଚନ୍ଦନ
ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ - ଡ଼ଃ ଯଜ୍ଞକୁମାର ସାହୁ
ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର
ପ୍ରଶଂସା କୀ ଅବିରାମ ଧାରା - ଶମ୍‌ଶ-ଏ-ସିରାଜ ଅଫୀଫ୍
ପ୍ରାଚ୍ୟ ବିଦ୍ୟା ମହାର୍ଣ୍ଣବ - ଶ୍ରୀ ନଗେନ୍ଦ୍ରନାଥ ବସୁଙ୍କ ବିଶ୍ୱକୋଷ, ବଙ୍ଗଳା
ପଦ୍ମପୁରାଣମ୍ - ମୋତିଲାଲ ବନାରସୀ ଦାସ
ପ୍ରାଚୀନ ଉତ୍କଳ - ଶ୍ରୀ ଜଗବନ୍ଧୁ ସିଂହ, ଓଡ଼ିଶା ସାହିତ୍ୟ ଏକାଡ଼େମୀ
ପ୍ରଚୀନ ରାଜବଂଶ ଔର ବୌଦ୍ଧଧର୍ମ - ଡ଼ଃ ଅଚ୍ୟୁତାନନ୍ଦ ଘିଲ୍‌ଡ଼ିୟାଲ୍
ପୁରାତନ କଳିଙ୍ଗର
ସାମାଜିକ ଇତିବୃତ୍ତି - ଡ଼ଃ ବେଣୀମାଧବ ପାଢ଼ୀ, ଗ୍ରନ୍ଥମନ୍ଦିର-୧୯୯୨
ଦାରୁଦେବତା - ଡ଼ଃ ବେଣୀମାଧବ ପାଢ଼ୀ, କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର
ପୂର୍ବ ମଧ୍ୟକାଳୀନ ଭାରତ - ଡ଼ଃ ମହାରାଜ କୁମାର ରଘୁବୀର ସିଂହ
ତୁଜୁକ୍-ଇ-ଜାହାଁଙ୍ଗିର
ଫତେପୁର ସୀକରୀ
ଏକ ହିନ୍ଦୁ ନଗର - ପୁରୁଷୋତ୍ତମ ନାଗେଶ ଓକ୍, ହିନ୍ଦୀ ସାହିତ୍ୟ ସଦନ, ଦିଲ୍ଲୀ
ଲଖନଊ କେ ଇମାମବାଡ଼େ
ହିନ୍ଦୁ ରାଜଭବନ - ,, ,, ,, ,,
ଭାରତ ଇତିହାସ - ପ୍ରଗତି ପ୍ରକାଶନ, ମସ୍କୋ, ୧୯୮୪
ଭାରତୀୟ ସଂସ୍କୃତିର
ବେଢ଼ା ପରିକ୍ରମା - ଡ଼ଃ ସତ୍ୟବାଦୀ ମିଶ୍ର, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ
ଭଗବାନ ପରଶୁରାମ - କେ. ଏମ୍, ମୁନ୍‌ସୀ
ଭାରତୀୟ ଇତିହାସ କୋଶ - ସଚ୍ଚିଦାନନ୍ଦ ଭଟ୍ଟାଚାର୍ଯ୍ୟ, ଉତ୍ତରପ୍ରଦେଶ
ଭାରତ ମେଁ ମୁସ୍‌ଲିମ୍ ସୁଲତାନ ୧ମ, ୨ୟ - ଲେଖକ - ପୁରୁଷୋତ୍ତମ ନାଗେଶ ଓକ୍
ହିନ୍ଦୀ ସାହିତ୍ୟ ସଦନ, ନୂଆଦିଲ୍ଲୀ-୧୯୯୮
ମୁଗଲ ବାଦଶାହୋଁ କୀ କହାନୀ
ଉନକୀ ଜବାନୀ - ଅଯୋଧ୍ୟା ପ୍ରସାଦ ଗୋୟଲୀ;
ବିଶ୍ୱବିଦ୍ୟାଳୟ ପ୍ରକାଶନ, ବାରାଣାସୀ
ମତ୍ସ୍ୟପୁରାଣମ୍ - ନାଗ ପ୍ରକାଶନ
ମହାଭାରତମ୍ - ଗୀତାପ୍ରେସ
ମୋଗଲ ଓଡ଼ିଶା ଇତିହାସ
ଓ ସଂସ୍କୃତି - ଡ଼ଃ ଭବାନୀଚରଣ ରାୟ, ବିଦ୍ୟାପୁରୀ
ମାଦଳାପାଂଜି - ସଂପାଦନା- ମୃତ୍ୟୁଂଜୟ ନାୟକ

ମାଦଳାପାଂଜି - ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି
ଉତ୍କଳ ବିଶ୍ୱବିଦ୍ୟାଳୟ, ୧୯୬୯
ରଘୁବଂଶମ୍ - ସାଂବିଦୀ ପ୍ରକାଶନ, ପୁରୀ
ଲିଙ୍ଗ ପୁରାଣମ୍ - ନାଗ ପ୍ରକାଶନ
ବିଷ୍ଣୁ ପୁରାଣମ୍ - ଗୀତା ପ୍ରେସ୍
ବାୟୁ ପୁରାଣମ୍ - ନାଗ ପ୍ରକାଶନ
ବାଲ୍ମୀକି ରାମାୟଣମ୍ - ଗୀତାପ୍ରେସ୍
ବୃହଦ୍ ନାରଦୀୟ ପୁରାଣମ୍ - ବଂଗବାସୀ
ବ୍ରହ୍ମ ପୁରାଣମ୍ - ନାଗ ପ୍ରକାଶନ
ବ୍ରହ୍ମାଣ୍ଡ ପୁରାଣମ୍ - ନାଗ ପ୍ରକାଶନ
ଶବ୍ଦକଳ୍ପଦ୍ରୁମଃ
ଶିବ ପୁରାଣମ୍ - ନାଗ ପ୍ରକାଶନ
ଶ୍ରୀମଦ୍ ଭାଗବତ - ଅତିବଡ଼ି ଜଗନ୍ନାଥ ଦାସ,
ଓଡ଼ିଶା ସାହିତ୍ୟ ଏକାଡେ଼ମୀ
ଶ୍ରୀମଦ୍ ଭାଗବତମ୍ - ଗୀତାପ୍ରେସ୍
ସ୍କନ୍ଦ ପୁରାଣମ୍ - ଖେମରାଜ ଶ୍ରୀକୃଷ୍ଣ ଦାସ, ମୁମ୍ବାଇ
ସମ୍ବଲପୁର ଇତିହାସ - ଶ୍ରୀ ଶିବପ୍ରସାଦ ଦାସ, ୨ୟ ମୁଦ୍ରଣ, ୧୯୬୯
ବିଶ୍ୱଭାରତୀ ପ୍ରେସ, ମୋଦିପଡ଼ା, ସମ୍ବଲପୁର
ସୋନପୁର ଇତିହାସ - ୧ମ ଖଣ୍ଡ - ଶ୍ରୀ ସଦାନନ୍ଦ ଅଗ୍ରଓ୍ୱାଲା
ଆତ୍ମପ୍ରକାଶନୀ, ବଲାଙ୍ଗୀର - ୧୯୮୮
ଶ୍ରୀଜଗନ୍ନାଥ ଚେତନାର ସମନ୍ୱୟ ଭାବଧାରା - ଡ଼ଃ ସୁରେନ୍ଦ୍ର କୁମାର ମିଶ୍ର
ପ୍ରକାଶକ - ଏସ୍‌ବି ପବ୍ଲିକେଶନ୍‌ସ, କଟକ-୨
ଶ୍ରୀଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ - ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
ନାଥଧର୍ମର କ୍ରମବିକାଶ - ଡ଼ଃ ଦୋଳଗୋବିନ୍ଦ ଶାସ୍ତ୍ରୀ
ହରିବଂଶମ୍ - ଗୀତା ପ୍ରେସ


## ଦ୍ୱିତୀୟ ଆଧାର :


ଲକ୍ଷ୍ନୌ ଗେଜେଟିୟର - ଭାଗ - ୨
ଭାରତୀୟ ଔର ପୂର୍ବ ବାସ୍ତୁକଲା କା ଇତିହାସ - ଭାଗ-୨
ବହିରିସ୍ତାନ-ଇ-ଘାଇବି - ମିର୍ଜାନାଥନ୍ (ଉଦ୍ଧୃତ)
ଅଓ୍ୱଧ କେ ପ୍ରଥମ ଦୋ ନବାବ - ଶ୍ରୀ ଆଶୀର୍ବାଦୀ ଲାଲ ଶ୍ରୀବାସ୍ତବ
ତବକାତେ ଅକବରୀ - ଖ୍ୱାଜା ନିଜାମୁଦ୍ଦୀନ ଅହମଦ

ହୁମାୟୂନ୍ ନାମା - ଗୁଲବଦନ ବେଗମ୍-୧୯୦୨
ମହାରାଷ୍ଟ୍ରୀୟ ଜ୍ଞାନକୋଶ -
ଫତେହପୁର ସୀକ୍ରୀ କୀ ମାର୍ଗଦର୍ଶିକା
ବାଦଶାହନାମା - ଅବ୍‌ଦୁଲ ହମୀଦ ଲାହୋରୀ
ମୀର-ତେ-ଅହମଦୀ - ଅଲ୍ଲୀ ମୁହମ୍ମଦ ଖାଁ, ବଡ଼ୌଦା - ୧୯୬୫

**ପତ୍ରପତ୍ରିକା :**

ଶ୍ରୀମନ୍ଦିର
ଉତ୍କଳ ପ୍ରସଙ୍ଗ
ପ୍ରଜାତନ୍ତ୍ର ସାପ୍ତାହିକୀ (ଡ଼ଃ ଜଗନ୍ନାଥ ପଟ୍ଟନାୟକ, ଇତିହାସ ପୃଷ୍ଠା)
ଉତ୍କଳ ଦୀପିକା
ଉତ୍କଳିକା - ଦୈନିକ ସମ୍ବାଦପତ୍ର
ସମାଜ - ସହସ୍ରାବ୍ଦ ସଂଖ୍ୟା

**ENGLISH -**

An Indian Ephemeris, by- Pillai, Vol-VI
Antiquities of Orissa - Vol-II, R.L. Mitra
Aine-i-Akbari, by- Abul Fazal
Chatesvara Inscription, I.O. Vol-V, Pt.i, P-51-56
Cultural Relations between India and South-East
Asian Countries, 1915, by Dr. H. B. Sarkar
J.A.H. R.S. Vol-VII, Pt-IV, P-232
J.B.O.R.S. Vol-XIV, PP-202-306 FF
Chronology of the Bhaumakaras and the Somavamsis of Orissa
Outlines of the History of Kalinga- by R.C. Majumdar
Inscriptions of the Kalchuri Chedi Ara.
History and Culture of the Indian People- Vol-I, VIII
Medieval Andhra - P-264
History of Bengal
Nepal Inscription of Jayadeva
History of the Afgans, by- Dorn
Orissa under the Bhauma King

History of Aurangzeb
History of Orissa, by- R. D. Banerjee, Vol-II
Muslim Administration in Orissa- Dr. M.A.Haque, Punthi Pustak-Calcutta-1980
Studies in Mughal India, by- Sir J. N. Sarkar
Sagara and the Haihayas - Pargiter
Studies in the society and administration of ancient and mediaval India.
The Sanskrit Buddhist Literature of Nepal, R. L. Mitra
The Dynastic History of Northen India, H. C. Ray



## ଖୋର୍ଦ୍ଧା ରାଜବାଟୀର ସାମରିକ ଉପାଧି

ଉତ୍ତର କବାଟ
କୁଅଁର
କୁଅଁରଗୁରୁ
ଗଡ଼ନାୟକ
ଗଜେନ୍ଦ୍ର
ଗୁମାନସିଂହ
ଚମୂପତି
ଚମ୍ପତି
ଚମ୍ପତିରାୟ
ଚହଟରାୟ
ଚୂଡ଼ାମଣି
ଛୁଆଲସିଂହ
ଛୋଟରାୟ
ଜଗଦ୍ଦେବ
ଜଗଦ୍ଦେବରାୟ
ଜେନା
ଜେନାମଣି
ଝପଟସିଂହ
ଦଳବେହେରା
ଦଳେଇ
ଦକ୍ଷିଣ କବାଟ
ନରେନ୍ଦ୍ର
ନାୟକ
ପଟ୍ଟନାୟକ
ପଶ୍ଚିମ କବାଟ
ପାଇକ
ପାତ୍ର
ପାଇକରାୟ
ପାଲଟାସିଂହ
ପାହାଡ଼ସିଂହ
ପେଷ୍ଟାଇ
ପାହାନ୍ତାସିଂହ

| | |
|---|---|
| ବକ୍ସି | ରଣସିଂହ |
| ବଡ଼ଜେନା | ରଣବୀରସିଂହ |
| ବଳବନ୍ତରାୟ | ରାଉତରାୟ |
| ବଳ | ରାଉଳ |
| ବଳବନ୍ତସିଂହ | ରାୟ |
| ବରାଳ | ରାୟପିତାମ୍ |
| ବାହୁବଳେନ୍ଦ୍ର | ରାୟବିଧାର |
| ବଳିଆରସିଂହ | ରାୟସିଂହ |
| ବାହିନୀପତି | |
| ବିଶ୍ୱାଳ | ସାମନ୍ତ |
| ବୈରିଶଲ୍ୟ | ସାମନ୍ତରାୟ |
| ଭୂଜବଳ | ସାମନ୍ତସିଂହାର |
| ଭୋଳ | ସାମଲ |
| ମତ୍ତଗଜସିଂହ | ସେନାପତି |
| ମଙ୍ଗରାଜ | ସିଂହ |
| ମହାନାୟକ | ସିଂହସାମନ୍ତ |
| ମହାରଥା | ସନ୍ଧିବିଗ୍ରହ |
| ମହାପାତ୍ର | |
| ମହାରଥୀ | ଶତ୍ରୁଶଲ୍ୟ |
| ମାନସିଂହ | |
| ମାନଧାତା | ହରିଚନ୍ଦନ |

## ଓଡ଼ିଶାର ରାଜୋପାଧି :

| | |
|---|---|
| ଦେବ | - ପୁରୀ, ଆଳି ଓ ପଟିଆ ରାଜାଙ୍କର |
| ଭଂଜ ଏବଂ ଭଂଜଦେଓ | - ନୀଗବଂଶର ରାଜାମାନେ ବ୍ୟବହାର କରୁଥିଲେ । ପ୍ରାଚୀନ ବିନ୍ଧ୍ୟାଟବୀ ରାଜ୍ୟ ଅର୍ଥାତ୍ ବର୍ତ୍ତମାନର ବୌଦ, ମୟୁରଭଂଜ, କେନ୍ଦୁଝର, ଦଶପଲ୍ଲା, କନିକା ଘୁମୁସର, ମେଦିନୀପୁର, ମାନଭୂମ, ବାଙ୍କୁଡ଼ାରେ ଏହି ପଦବୀ ରହିଥିଲା । |
| ଧୀରନରେନ୍ଦ୍ର ବାହାଦୂର | - ମଧୁପୁର ରାଜା |
| ମାନସିଂହ ଭ୍ରମରବର ରାୟ | - ଡ଼ମପଡ଼ା ରାଜା |
| ନରେନ୍ଦ୍ର ମହାପାତ୍ର | - ରଗଡ଼ି, ପଞ୍ଚକୋଟ |

| | | |
|---|---|---|
| ନରେନ୍ଦ୍ର | - | କେନ୍ଦ୍ରାପଡ଼ା ରାଜା |
| ଧୀରବୀରବର ହରିଚନ୍ଦନ ମହାପାତ୍ର | - | ବଳରାମପୁର ରାଜା |
| ମାନସିଂହ ହରିଚନ୍ଦନ ମର୍ଦ୍ଦରାଜ ଭ୍ରମରବର ରାୟ | - | ପାରିକୁଦ ରାଜା |
| ମର୍ଦ୍ଦରାଜ ହରିଚନ୍ଦନ | - | ନୀଳଗିରି ରାଜା |
| ମହୀନ୍ଦ୍ରପ୍ରତାପ ବାହାଦୂର | - | ଢ଼େଙ୍କାନାଳ ରାଜା |
| ଭାଗୀରଥି ବେବର୍ତ୍ତା ପଟ୍ଟନାୟକ | - | ଆଠଗଡ଼ ରାଜା |
| ବଜ୍ରଧର ନରେନ୍ଦ୍ର ମହାପାତ୍ର | - | ରଣପୁର ରାଜା |
| ଦେଓସାମନ୍ତ | - | ଆଠମଲ୍ଲିକ ରାଜା |
| କ୍ଷତ୍ରିୟ ବୀରବର ଚମ୍ପତିସିଂହ ମହାପାତ୍ର | - | ତିଗିରିଆ ରାଜା |
| ମର୍ଦ୍ଦରାଜ ଜଗଦ୍ଦେବ | - | ହିନ୍ଦୋଳ ରାଜା |
| ମର୍ଦ୍ଦରାଜ ଭ୍ରମରବର ରାୟ | - | ଖଣ୍ଡପଡ଼ା ରାଜା |
| ବୀରବର ହରିଚନ୍ଦନ ମହାପାତ୍ର | - | ତାଳଚେର ରାଜା |
| ଦେଓ | - | କଳାହାଣ୍ଡି ଓ ଜୟପୁର ରାଜା |
| ରାଜେନ୍ଦ୍ରଦେବ | - | ଚିକିଟି ରାଜା |
| ରାଜମଣି ରାଜଦେଓ | - | ମଂଜୁଷା ରାଜା |
| ମର୍ଦ୍ଦରାଜ | - | ଖଲ୍ଲିକୋଟ ରାଜା |
| ସିଂହଦେଓ | - | ଷଢ଼େଇକଳା ଓ ପାଟଂଣା ରାଜା |
| ହରିଚନ୍ଦନ | - | ବାଣପୁର ରାଜା, ଆଠଗଡ଼ ଓ ଗଂଜାମ ଜିଲ୍ଲାର ରାଜାଙ୍କ ଉପାଧି ମଧ୍ୟ ଥିଲା । |
| ସିଂହ | - | ସମ୍ବଲପୁର ଓ ଖଡ଼ିଆଳ ରାଜା |
| ଷଣ୍ଢ | - | କୁଜଙ୍ଗ ରାଜା |
| ସାଏ | - | ହୀରାଖଣ୍ଡ ରାଜା |
| ତୁଙ୍ଗ | - | ତିଗିରିଆ ରାଜା |
| ମହାରାଜ | - | ଭାରତରେ ସର୍ବପ୍ରଥମେ ଚେଦି ବଂଶର ଖାରବେଳ (୧ମ ଶତାବ୍ଦୀ) ଏହି ପଦବୀରେ ଭୂଷିତ ହୋଇଥିଲେ । |
| ପରମଦୈବତ | - | ମାଠର ବଂଶୀୟ ରାଜା ଚଣ୍ଡବର୍ମନ ନିଜକୁ ଏହି ଉପାଧିରେ ଭୂଷିତ କରିଥିଲେ । |
| ସକଳ କଳିଙ୍ଗାଧିପତି | - | କଳିଙ୍ଗର ମାଠର ବା ପିତୃଭକ୍ତ ବଂଶର ଶକ୍ତିବର୍ମନଙ୍କ ପୁତ୍ର ପ୍ରଭଂଜନବର୍ମନ ବ୍ୟବହାର କରୁଥିଲେ । |
| ବପ୍ପଭଟ୍ଟାରକ ପାଦଭକ୍ତ | - | ମାଠର ବଂଶ ସମୟରେ |
| ପିତୃପାଦ ଭକ୍ତ | - | ” |

ପରମଦୈବତ - ମାଠର ବଂଶ ସମୟରେ ସୂର୍ଯ୍ୟନାରାୟଣ ଉପାସକ
ପରମଭାଗବତ - ” ” ” ” ”
ଭଗବଦ୍ ସ୍ୱାମୀ ନାରାୟଣ ପାଦଭକ୍ତ - ” ” ” ” ”
ପରମମାହେଶ୍ୱର - ମାଠର ବଂଶର ଅନନ୍ତବର୍ମନ ବ୍ୟବହାର କରୁଥିଲେ
(ଭୌମକର ବଂଶର ପ୍ରଥମ ଶାନ୍ତିକର ଦେବ ଏହି ଉପାଧି ପ୍ରଥମେ ବ୍ୟବହାର କରିଥିଲେ ।)
ମହାସାମନ୍ତ - ବିଗ୍ରହ ରାଜବଂଶର ରାଜା ଶ୍ରୀଲୋକବିଗ୍ରହ ତୋଷାଳୀରେ ଏହି ଉପାଧି ଭୂଷିତ ହୋଇ ତୋଷାଳୀ ରାଜ୍ୟ ଶାସନ କରୁଥିଲେ ।
ଅଭୀତ - ବୋଧହୁଏ ଅଭୟରୁ ଶବ୍ଦରୁ ସୃଷ୍ଟି । କୋଙ୍ଗଦର ଶୈଳୋଦ୍ଭବ ରାଜାମାନେ ବ୍ୟବହାର କରୁଥିଲେ ।
ତିମିଳବର-ଶୋଷଣ-ପ୍ରତ୍ୟନ୍ତଭୈରବ- କୁଦାଳ ବଂଶୀୟ ରାଜା ଶ୍ରୀ ଲକ୍ଷ୍ମଣ ରାମଦେବଙ୍କ ଉପାଧି ଥିଲା ।
ରାଣକ - କଦମ୍ବବଂଶ ରାଜାଙ୍କର ଉପାଧି
ବିଷୟାଧିପତି - କଦମ୍ବବଂଶ ରାଜାଙ୍କର ଉପାଧି
ପରମ ସୌଗତ - ଭୌମ ବଂଶର ରାଜା ଶୁଭାକରଦେବ (୨ୟ)ଙ୍କ ଉପାଧି
ପରମ ଭଟ୍ଟାରକ - ” ” ”
ପରମ ମାହେଶ୍ୱର - ” ” (୩ୟ) ”

## ପ୍ରାଚୀନ ଓଡ଼ିଶାର କର୍ମଚାରୀମାନଙ୍କ ଉପାଧି :

### କଳିଙ୍ଗର ମାଠରବଂଶ ପ୍ରଦତ୍ତ ଉପାଧି-

୧- ଆଜ୍ଞାଭୋଗିକ
୨- ଦେଶାକ୍ଷପଟଳ - ଅମାତ୍ୟ
୩- ଲେଖକ
୪- ଆଜ୍ଞା
୫- ଦଣ୍ଡନାୟକ
୬- ଦୂତକ - କୁମାରାମାତ୍ୟ
୭- ମହାବଳାଧିକୃତ
୮- ଦଣ୍ଡନେତା

୯- ଅମାତ୍ୟ
୧୦- ମହାପ୍ରତିହାର
୧୧- ରହସିକ - ପ୍ରାଇଭେଟ୍ ସେକ୍ରେଟାରୀ- ବ୍ୟକ୍ତିଗତ ସହାୟକ
ନଳବଂଶ ସମୟର । ଭବଦତ୍ତବର୍ମନଙ୍କ ଅମଳରେ ।

**ଗଙ୍ଗାବଂଶୀୟ ରାଜକର୍ମଚାରୀଙ୍କ ସଂଜ୍ଞା (ଉପାଧି):**

୧- ସନ୍ଧି.ବିଗ୍ରହ - ତାମ୍ରଶାସନ ମଧ୍ୟ ଲେଖି ପାରୁଥିଲେ ।
୨- ରହସିକ - ,, ,,
୩- ଅକ୍ଷଶାଳୀ - ,, ,,
୪- ଅମାତ୍ୟ - ,, ,,
୫- ଲେଖକ -
୬- ମହାମହତ୍ତର ବା ମହତ୍ତର -
୭- ସର୍ବାଧିକୃତ - ତାମ୍ରଶାସନ ମଧ୍ୟ ଲେଖି ପାରୁଥିଲେ
୮- ହସ୍ତ୍ୟଧକ୍ଷ - ,, ,,
୯- ଅଧିକୃତ - ଏହି ଶବ୍ଦରୁ ଓଡ଼ିଶାରେ ଅଧିକାରୀ ସଂଜ୍ଞାର ସୃଷ୍ଟି
୧୦- ସ୍ଥାନାଧିକୃତ
୧୧- ପୁରୋହିତ
୧୨- ଶ୍ରୀ ସାମନ୍ତ - ତାମ୍ରଶାସନ ମଧ୍ୟ ଲେଖି ପାରୁଥିଲେ
୧୩- ସାମନ୍ତ
୧୪- ମନ୍ତ୍ରୀ
୧୫- ମହାସନ୍ଧିବିଗ୍ରହ - ତାମ୍ରଶାସନ ମଧ୍ୟ ଲେଖି ପାରୁଥିଲେ
୧୬- ଅକ୍ଷଶାଳି - ଏକ ପ୍ରକାର ଲେଖକ
୧୭- ଦଣ୍ଡନାୟକ - Judge (N.G. Majumdar-Inscriptions of Bengal)
୧୮- ମହାଦଣ୍ଡନାୟକ - ସାମରିକ ଅଧିନାୟକ

**ସ୍ୱେତକ-ଗଙ୍ଗମାନଙ୍କ ରାଜକର୍ମଚାରୀଙ୍କ ସଂଜ୍ଞା (ଉପାଧି):**

୧- ଦୂତକ
୨- ମହାସନ୍ଧି ବିଗ୍ରହକ
୩-ସାମନ୍ତ
୪- ଶ୍ରୀସାମନ୍ତ
୫- ମହାସାମନ୍ତ
୬- ରାଜନକ
୭- ରାଜପୁତ୍ର
୮- କୁମାର
୯- ଅମାତ୍ୟ
୧୦- ପ୍ରତିହାର
୧୧- ଉପରିକ
୧୨- ଦଣ୍ଡନାୟକ
୧୩- ବିଷୟପତି
୧୪- ଗ୍ରାମପତି
୧୫- ଚାଟ
୧୬- ଭଟ୍ଟ

ଭୌମରାଜବଂଶର ରାଜକର୍ମଚାରୀ ସଂଜ୍ଞା (ଉପାଧି) :

୧- ଦୂତକ - ଦୂତ, ମୌଖିକ, ଲିଖିତ ଆଦେଶ ବହନକାରୀ
୨- ମହାକ୍ଷ-ପଟଳ - କର ସଂଗ୍ରାହକ, ଭଣ୍ଡାର ରକ୍ଷକ
୩- ଅଧିକରଣ
୪- ଅଧିକୃତ
୫- ମହାସାମନ୍ତ - ଅଧୀନସ୍ଥ ରାଜାଙ୍କ ପଦବୀ
୬- ମହାରାଜ - ସାମନ୍ତ ରାଜାମାନଙ୍କ ପଦବୀ
୭- ରାଜପୁତ୍ର - ନିଜ କୁଳୋଦ୍ଭବ
୮- ଅନ୍ତରଙ୍ଗ - ବିଶ୍ୱସ୍ତ ସାମନ୍ତ ରାଜ୍ୟ
୯- କୁମାର - ରାଜାଙ୍କ ପ୍ରତିନିଧି
୧୦- ଉପରିକ - ଅନୁପସ୍ଥିତିରେ କାର୍ଯ୍ୟ ଚଳାଇବେ
୧୧- ବିଷୟପତି - ଜିଲ୍ଲା ଅଧକ୍ଷ
୧୨- ଅଯୁକ୍ତକ - ଦେବତାଙ୍କ ଆରାଧନା, ପୂଜାକର୍ମ
୧୩- ଦଣ୍ଡପାଶିକ - ରାଜ୍ୟ ପୁଲିସ ଅଧକ୍ଷ
୧୪- ସ୍ଥାନାନ୍ତରିକ - ଜିଲ୍ଲାଗସ୍ତ ଅଡ଼ିଟର, କାର୍ଯ୍ୟ ପରିଦର୍ଶନ ଓ ରାଜାଙ୍କୁ ଖବର ଦେବେ ।
୧୫- ଭୋଗୀ - ପଞ୍ଚାୟତ ମାମଲତକାର, ରାଜାଙ୍କ ପକ୍ଷରୁ ଗ୍ରାମର ଭଲମନ୍ଦ ବୁଝିବେ ।
୧୬- ମହାମହତ୍ତର - ପଞ୍ଚାୟତ ଚେୟାରମ୍ୟାନ କାର୍ଯ୍ୟ ଅସ୍ଥାୟୀ ଭାବେ କରିବେ ।
୧୭- ପୁସ୍ତକପାଳ - ଜିଲ୍ଲାର ଦଲିଲପତ୍ର ସଂରକ୍ଷକ
୧୮- ସାଧାଧିକରଣ - ଦୁର୍ନୀତି ଉପଦ୍ରବ ନିବାରକ ପୁଲିସ
୧୯- ବୃହଦ୍‌ଭୋଗୀ - ପଞ୍ଚାୟତ ମାମଲତକାର
୨୦- ସନ୍ଧିବିଗ୍ରହୀ - ବୈଦେଶିକ ନୀତି
୨୧- ପେଟପାଳ - ଧାତୁ ନିର୍ମାଣ କାର୍ଯ୍ୟ
୨୨- ତଟ୍‌ଠକାର - ” ”
୨୩- ଚାର୍ଟ - ପ୍ରଜାମାନଙ୍କୁ ପୀଡ଼ାଦେବା କାର୍ଯ୍ୟରେ ନିଯୁକ୍ତ
୨୪- ଭଟ୍ଟ - ” ” ”

ସୋମବଂଶର ରାଜକର୍ମଚାରୀ ସଂଜ୍ଞା (ଉପାଧି) :

୧- ମନ୍ତ୍ରୀ
୨- ମହାସନ୍ଧି ବିଗ୍ରହିକ

୩- କୁମାରାଧିରାଜ - ରାଜପୁତ୍ରଙ୍କୁ ଦିଆ ଯାଉଥିଲା । ରାଜାଙ୍କ ଅଧୀନରେ ଶାସନ ସଂକ୍ରାନ୍ତୀୟ କାର୍ଯ୍ୟରେ ନିଯୁକ୍ତ ।

୪- ମହାକ୍ଷପଟଳ - ମୁଖ୍ୟ କିରାଣୀ

୫- ନିଯୁକ୍ତାଧିକାରୀ

୬- ଦଣ୍ଡପାଣିକ

୭- ପିଶୁନ-ବେତ୍ରିକ - ଅପରାଧୀଙ୍କୁ ନିଷ୍ଠୁର ପ୍ରହାର ଯିଏ କରନ୍ତି

୮- ଅବରୋଧଜନ - ରାଜଅନ୍ତଃପୁର ରକ୍ଷାକାର୍ଯ୍ୟରେ ନିଯୁକ୍ତ

୯- ରାଜବଲ୍ଲଭ - ରାଜାଙ୍କ ଦୟାରେ ଯେ କୌଣସି ସମୟରେ ରାଜାଙ୍କୁ ପରାମର୍ଶ କିମ୍ବା ଖବର ଦିଅନ୍ତି ।

୧୦- ଭୋଗୀଜନ - ପଞ୍ଚାୟତ ସଭ୍ୟରୂପେ ଗ୍ରାମର ଭଲମନ୍ଦ ବୁଝନ୍ତି

୧୧- ମଣ୍ଡଳପତି

୧୨- ଖଣ୍ଡପତି

୧୩- ବିଜୟପତି

୧୪- ଗ୍ରାମପତି

୧୫- ସାମାହର୍ତ୍ତୃ - ଜିଲ୍ଲା କଲେକ୍ଟର, ପ୍ରଜାଙ୍କଠାରୁ ରାଜ କର ସଂଗ୍ରହକାରୀ

୧୬- ସନ୍ନିଧାତୃ - ଟ୍ରେଜେରୀ ବା ରାଜକୋଷ ସଂରକ୍ଷକ

୧୭- ନିଯୁକ୍ତାଧିକାରୀ - ରାଜକର୍ମଚାରୀମାନଙ୍କୁ ଯଥାବିହିତ କର୍ମରେ ସେ ନିଯୁକ୍ତ କରୁଥିଲେ ।

୧୮- ଦଣ୍ଡପାଶିକ - ପୁଲିସ ଅଫିସର, ଅନ୍ୟ ମତରେ ଚୌକିଦାର । ଓଡ଼ିଶାରେ 'ଦଣ୍ଡାସୀ' ନାମକ ଜାତି ଏହି କାର୍ଯ୍ୟରେ ନିଯୁକ୍ତ ଥିଲେ ।

୧୯- ରାଣକ - ଜମିଦାର ଶ୍ରେଣୀୟ ହୋଇ ରାଜାଙ୍କର ଯେ ଅନୁଗତ ହୋଇଥାନ୍ତି ।

୨୦- ଅକ୍ଷପଟଳ - ରାଜକୀୟ କାଗଜାତ୍ ଯାହା ଦାୟିତ୍ୱରେ ରହେ

୨୧- ମହାକ୍ଷପଟଳାଧିକୃତ - କାର୍ଯ୍ୟାଳୟ ଅଧୀକ୍ଷକ



## ଓଡ଼ିଶା ଇତିହାସର ଐତିହାସିକ

୧- ଆଂଡ୍ରୁ୍ୟ ଷ୍ଟାର୍ଲିଂ (Andrew Stirling) - ୧୮୨୨
ଉଦୟଗିରିସ୍ଥ ହାତୀଗୁମ୍ଫା ଶିଳାଲିପିର ସନ୍ଧାନ ସର୍ବପ୍ରଥମେ ୧୮୨୫ ରେ ଦେଇଥିଲେ Asiatic Researches.

୨- ହଣ୍ଟର - ୧୮୭୨ - Orissa under foreign Governors.

୩- ଫ୍ଲିଟ୍

୪- ପ୍ରିନ୍‌ସେପ ଓ କିଟୋ (Prinsep and Kittoe) - ୧୮୩୮ରେ ଓଡ଼ିଶାର ୨ଟି ବ୍ରାହ୍ମୀଲିପିକୁ ''ଏସାଆଟିକ୍ ସୋସାଇଟି'' ପତ୍ରିକାରେ ମୁଦ୍ରିତ କରାଇଥିଲେ । ପ୍ରିନ୍‌ସେପଙ୍କର କିଟୋ ସହକର୍ମୀ ଥିଲେ ।

୫- ପାଂର୍ଗୁସନ- ୧୮୩୭ରେ ଓଡ଼ିଶାର ସ୍ଥାପତ୍ୟ ବିଷୟରେ ପ୍ରକାଶ କରାଇଥିଲେ ।

୬- ଜନ୍ ବୀମସ୍ - ୧୮୭୧ରେ ତମ୍ବାପଟା ପ୍ରକାଶ କରାଇଥିଲେ ।

୭- ଭବାନୀଚରଣ ବନ୍ଦୋପାଧ୍ୟାୟ -

୮- ରାଜେନ୍ଦ୍ରଲାଲ ମିତ୍ର - Antiquities of Orissa.

୯- ନଗେନ୍ଦ୍ର ନାଥ ବସୁ - Orissa and her Remains.

୧୦- ମନମୋହନ ଚକ୍ରବର୍ତ୍ତୀ

୧୧- ବିଜୟ ଚନ୍ଦ୍ର ମଜୁମଦାର

୧୨- ମନମୋହନ ଗାଂଗୁଲୀ - Orissa & her Remains.

୧୩- ରମା ପ୍ରସାଦ ଚନ୍ଦ

୧୪- ରାଖାଲଦାସ ବାନାର୍ଜୀ

୧୫- ରଂଗଲାଲ ବନ୍ଦୋପାଧ୍ୟାୟ - ୧୮୭୬ରେ 'ଇଣ୍ଡିଆନ୍ ଏଣ୍ଟିକ୍ୱେରୀ'ରେ ଓ ୧୮୭୭ରେ 'ଏସିଆଟିକ ସୋସାଇଟି' ପତ୍ରିକାରେ ସୋମବଂଶୀ ୨ଟି ତମ୍ବାପଟା ପ୍ରକାଶ କରିଥିଲେ ।

୧୬- ପ୍ୟାରୀମୋହନ ଆଚାର୍ଯ୍ୟ - ୧୮୭୫

୧୭- ତାରିଣୀ ଚରଣ ରଥ

୧୮- ସଦାଶିବ ମିଶ୍ର କାବ୍ୟକଣ୍ଠ

୧୯- କୃପାସିନ୍ଧୁ ମିଶ୍ର

୨୦- ଜଗବଂଧୁ ସିଂହ

୨୧- ପରମାନନ୍ଦ ଆଚାର୍ଯ୍ୟ

୨୨- ସବୁରାଓ - Gajapati Kings of Orissa.

୨୩- ଆର୍ତ୍ତବଲ୍ଲଭ ମହାନ୍ତି

୨୪- ଡ଼ଃ ହରେକୃଷ୍ଣ ମହତାବ

